ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ) – ୧୪

# ଅନୁରାଗ କଳ୍ପଲତା

( ଦ୍ୱିତୀୟ ଭାଗ )

ରଚନା :

ଗଜପତି ଶ୍ରୀ ଶ୍ୟାମସୁନ୍ଦର ଦେବ

ସଂପାଦନା :

ଶ୍ରୀମତୀ ପ୍ରମିଳା ମିଶ୍ର, ଏମ୍. ଏ.

ସଂପାଦିକା,

ରାଜ୍ୟ ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ

( ସାଂସ୍କୃତିକ ଶାଖା )

ଭୁବନେଶ୍ୱର - ୨

ପ୍ରକାଶକ :

ରାଜ୍ୟ ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ
(ସାଂସ୍କୃତିକ ଶାଖା)
ଭୁବନେଶ୍ୱର-୭

ପ୍ରଥମ ପ୍ରକାଶନ — ୧୦୦୦
୧୯୭୪

ମୁଦ୍ରାକର :

ଶ୍ରୀ ପ୍ରସନ୍ନ କୁମାର ମହାପାତ୍ର, ବି. ଏ. (ଅନର୍ସ)
ଶ୍ରୀ ଶାରଦା ପ୍ରେସ୍,
ଭୁବନେଶ୍ୱର - ୨

ମୂଲ୍ୟ —

THE ORISSAN ORIENTAL TEXT SERIES (ORIYA) - XIV

# ANURAGA KALPALATA

## PART — II

BY :

GAJAPATI SRI SHYAMASUNDAR DEV

*Edited by :*

SMT. PRAMILA MISHRA, M.A.

*Editor,*

DIRECTORATE OF TOURISM & CULTURAL AFFAIRS
( CULTURAL WING )

BHUBANESWAR - 6

# — ସୂଚନା —

କବି ଶ୍ରୀ ଶ୍ୟାମସୁନ୍ଦର ଦେବଙ୍କ 'ଅନୁରାଗ କଳ୍ପଲତା' କାବ୍ୟର କଳେବର ବୃହଦାକାର ହୋଇଥିବା ହେତୁ ଏହାକୁ ଦୁଇଭାଗରେ ପ୍ରକାଶ କରାଯିବାର ପରିକଳ୍ପନା କରାଯାଇ ଏହାର ପ୍ରଥମ ଭାଗ (ପ୍ରଥମରୁ ଚତୁର୍ଥ ସ୍ତବକ) ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା ଓଡ଼ିଆ – ୨୧ ରୂପେ ପ୍ରକାଶ ପାଇସାରିଛି । ଦ୍ୱିତୀୟ ଭାଗ (ପଞ୍ଚମରୁ ଅଷ୍ଟମ ସ୍ତବକ) ଉକ୍ତ ଗ୍ରନ୍ଥମାଳାର ଚତୁର୍ଦ୍ଦଶ ଖଣ୍ଡ ରୂପେ ଆତ୍ମପ୍ରକାଶ କରୁଛି । ପ୍ରଥମ ଭାଗର ମୁଖବନ୍ଧରେ କବି ଓ କାବ୍ୟ ସମ୍ବନ୍ଧରେ ଯଥାସମ୍ଭବ ଆଲୋକପାତ କରାଯାଇ ଥିବାରୁ ଦ୍ୱିତୀୟ ଭାଗରେ ଅଧିକ ଆଲୋଚନାର ଆବଶ୍ୟକତା ଅନୁଭୂତ ହୁଏନାହିଁ ।

କବି ଶ୍ରୀ ଶ୍ୟାମସୁନ୍ଦର ଦେବ ବିଭିନ୍ନ ପ୍ରାଚୀନ ସଂସ୍କୃତ ଗ୍ରନ୍ଥରୁ ବହୁ ଶ୍ଳୋକ ଉଦ୍ଧାର କରି ଏହି କାବ୍ୟରେ ଉଲ୍ଲେଖ କରିଛନ୍ତି । ତନ୍ମଧ୍ୟରୁ କେତେକ ଶ୍ଳୋକାଂଶର ଶୁଦ୍ଧ ପାଠୋଦ୍ଧାର ସମ୍ଭବ ହୋଇ ନ ଥିବାରୁ ଏବଂ ଅନ୍ୟ କେତେକ ଅସଂପୃକ୍ତ ମନେ ହେଉଥିବାରୁ ସେଗୁଡ଼ିକ ଅବିକଳ ରୂପେ ପାଦଟୀକାରେ ପ୍ରଦତ୍ତ ହୋଇଛି । ସବୁ ପ୍ରକାର ଚେଷ୍ଟା ସତ୍ତ୍ୱେ ଏଥିରେ କେତେକ ମୁଦ୍ରଣ ପ୍ରମାଦ ରହିଯାଇଛି । ତନ୍ମଧ୍ୟରୁ କେତୋଟି ବର୍ଣ୍ଣ ଓ ଅର୍ଥଗତ ତ୍ରୁଟିର ଶୁଦ୍ଧିପତ୍ର ଗ୍ରନ୍ଥ ଶେଷରେ ଦିଆଯାଇଛି । ସୁଧୀ ସହୃଦୟବର୍ଗ କୃଷ୍ଣ କାବ୍ୟର ଉପାଦେୟତା ତଥା ସାହିତ୍ୟିକ ପରିପ୍ରେକ୍ଷୀରେ ମୁଦ୍ରଣ ଦୋଷ ପ୍ରତି ଦୃଷ୍ଟି ନ ଦେଇ ଉଦାର ଭାବରେ କାବ୍ୟରସ ଆସ୍ୱାଦନ କରିବାକୁ ଅନୁରୋଧ ।

ସଂପାଦିକା

ତା ୧୮ । ୧୦ । ୭୪

# - ବିଷୟ ସୂଚୀ -

## ଅଷ୍ଟମ ସ୍ତବକ (୩୩୧ - ୪୫୬)

॥ ଓଁ ଶ୍ରୀ ଗଣେଶାୟ ନମଃ ॥

# ଅନୁରାଗ କଳ୍ପଲତା

## ପଞ୍ଚମ ସ୍ତବକ

### — ପ୍ରଥମ କୁସୁମ —

## ଶ୍ରୀ ଚୈତନ୍ୟଦେବ ସ୍ତୁତି

( ରାଗ – ଆଶାବରୀ )

( ସାଗରୁ ଅଇଲା ବାଳ ସାଗରିକା ନାମ ଯେ ବାଣୀରେ )

ରୂପକ ଶ୍ଳେଷ —

ଅଚିନ୍ତ୍ୟ ନଦିଆ ନବଦ୍ୱୀପ କ୍ଷୀରାର୍ଣ୍ଣବ
ଆପେ ଶ୍ରୀ ଚୈତନ୍ୟ ଚନ୍ଦ୍ର ଯହିଁରୁ ସମ୍ଭବ ଯେ ॥ ୧ ॥

ଆଦ୍ୟ କଳି ଜୀବ ତାପ ନ ସହି ମେଦିନୀ
ଅତି ଭୟ ଯୁକ୍ତମୟ ଚଳ ବଳେ ଜନ ଯେ ॥ ୨ ॥

ଅନ୍ତରତ ରାଧା ଧ୍ୟାନ ବଶେ ନିଃସନ୍ଦେହ
ଅରୂପ ଅମ୍ବରେ ଯୁକ୍ତ ଗଉର ବିଗ୍ରହ ଯେ ॥ ୩ ॥

ଅନେକ ପାରିଷଦ ତାରକାରେ ଶୋଭନ
ଅନ୍ଧ ତମସ ପାଷାଣ୍ଡ ତମ ବିଚ୍ଛେଦନ ଯେ ॥ ୪ ॥

ଆଚଣ୍ଡାଳ ବ୍ରହ୍ମ ହରି ନାମ ପ୍ରବର୍ତ୍ତାଇ
ଅଘ ଜନ ତାପ ହରି ଅମୃତକୁ ଦେଇ ଯେ ॥ ୫ ॥

ଆଖଣ୍ଡଳ ଦିଗ ପୂର୍ଣ୍ଣ ରୂପେ ଉଦେ ହୋଇ
ଅବାଚ ଆଶ୍ର ତେ ପ୍ରଷ୍ଟରୀକ ପୁନ ଯାଇ ଯେ ॥ ୬ ॥

ଅନନ୍ତ ସାଧୁ ହୃଦୟ ଚକୋରକୁ ତୋଷି
ଅଧିକରେ ବୈକୁଣ୍ଠ ବେଳ କୁମୁଦ ପ୍ରକାଶି ଯେ ॥ ୭॥

ଅତ୍ର ସବ ପୁରାଣେ ପ୍ରମାଣ ସ୍ପେ ଉପର
ଅଶ୍ରପ୍ତ କଳିଯୁଗରେ ହରିନାମ ସାର ଯେ ॥ ୮ ॥
ଅନାୟାସେ ଭବବନ୍ଧୁଂ ହୋଇବେ ମୁକତ
ଅନ୍ୟ ହରିନାମ ବିନା ନାହିଁ ନାହିଁ ଗତି ଯେ ॥ ୯ ॥

— ଶ୍ଳୋକ —

ଶ୍ରୀ ଭାଗବତେ—

କୃତେ ଯଃ ଧ୍ୟାୟତେ ବିଷ୍ଣୁଂ ତ୍ରେତାୟାଂ ନାମତୋ ମଖୈଃ
ଦ୍ୱାପରେ ପରିଚର୍ଯ୍ୟାୟାଂ କଲୌ ତଦ୍ଧରିକୀର୍ତ୍ତନାତ୍ । ° ॥

ଆଧ୍ୟାତ୍ମ ରାମାୟଣେ—

ହରି ନାମୈବ ମୁକ୍ତି ସ୍ୟାତ୍ କଲୌ ନାନ୍ୟନ୍ତୁ କୁତ୍ରଚିତ୍ ।

ତଥାଚ ପୁରାଣେ—

ହରେର୍ନାମୈବ ନାମୈବ ନାମୈବ ଶରଣଂ ପରଂ
କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା । ° ।

— ଗୀତ —

ଅଧର୍ମକାଶ ବିନାଶି ଧର୍ମ ସଂସ୍ଥାପନ
ଅବତୀର୍ଣ୍ଣ ଯୁଗେ ଯୁଗେ ଶ୍ରୀମୁଖ ବଚନ ଯେ ॥ ୧୦ ॥
ଅଙ୍ଗୀକାର କାରଣରୁଂ ଶ୍ରୀକୃଷ୍ଣ ଚୈତନ୍ୟ
ଅବତୀର୍ଣ୍ଣ ହୋଇ ପ୍ରବର୍ତ୍ତାଇ ନାମ ଧନ୍ୟ ଯେ ॥ ୧୧ ॥
ଆଗତ କଳିରେ ବର୍ଣ୍ଣାଶ୍ରମ ଧର୍ମ ଲୋପ
ଅଜ୍ଞାନ ମଜ୍ଜନ ଜନ ମୋହ ଅନ୍ଧ କୂପ ଯେ ॥ ୧୨ ॥
ଅନୁକମ୍ପା କରି ଭକ୍ତିମାର୍ଗ ଉପଦେଶ
ଅବଲମ୍ବ କରି ତାରିବାରେ ସର୍ବଦେଶ ଯେ ॥ ୧୩ ॥
ଅପବର୍ଗର ସୋପାନ ଆଉ ହରିନାମ
ଆସ୍ୱାଦନ କରି ନ ତରନ୍ତି ଅଜ୍ଞତମ ଯେ ॥ ୧୪ ॥
ଆଦ୍ୟରେ ନଦୀୟା ନବଦ୍ୱୀପ ଲୋକ ତାରି
ଆଗତ ଭକ୍ତ ସହିତ ହୋଇ ମିଳଗିରି ଯେ ॥ ୧୫ ॥

ଅବାଚି ଗମନ ରାମେଶ୍ୱର ସେତୁବନ୍ଧ
ଅତି ପତିତଙ୍କୁ କରି ମୁକ୍ତ ଭବବନ୍ଧ ଯେ ॥ ୧୬ ॥

ଆସି ନୀଳାଚଳେ ପୁନ ବୃନ୍ଦାବନ ଗତି
ଅଶେଷେ ବ୍ରଜବାସୀଙ୍କ ଭକ୍ତି ରତ୍ନ ଦତ୍ତ ଯେ ॥ ୧୭ ॥

ଆପଣେ ଜନନୀ ବାକ୍ୟେ ନୀଳାଚଳେ ରହି
ଅନଦ୍ଭୁତ ଚୈତନ୍ୟ ଚରିତାମୃତ ସେବି ଯେ । ୧୮ ।

ଅଗ୍ରଜ ଶ୍ରୀ ନିତ୍ୟାନନ୍ଦ ଶ୍ରୀକୃଷ୍ଣ ଚୈତନ୍ୟ
ଆଲୋକନ କଲେ କଳିଯୁଗ ଜନେ ଧନ୍ୟ ଯେ ॥ ୧୯ ॥

ଆପଣେ ନନ୍ଦ ଯଶୋଦା କଥମାପ୍ୟ ଭୁବି
ଅଟନ୍ତି ସେ ଜଗନ୍ନାଥ ମିଶ୍ର ଶଚୀଦେବୀ ଯେ ॥ ୨୦ ॥

ଆତ୍ମଜ ଶଙ୍କରାନନ୍ଦ ଶ୍ରୀ ଗଉରଚନ୍ଦ୍ର
ଅଦ୍ୱୈତ ଆଚାର୍ଯ୍ୟ ଆଜ ଜସ୍ତ ଭକ୍ତବୃନ୍ଦ ଯେ ॥ ୨୧ ॥

ଅଟନ୍ତି ସେ ହାଡ଼ିଇ ପଣ୍ଡିତ ପଦ୍ମାବତୀ
ଆସି ବସୁଦେବ ଦେବକୀପ୍ୟେ ଉତ୍ପତ୍ତି ଯେ ॥ ୨୨ ।

ଆପେ ବଳଦେବ ନିତ୍ୟାନନ୍ଦ ଯା ସନ୍ତତି
ଅଟେ ପୂର୍ଣ୍ଣମାସୀ ସେ ଈଶ୍ୱର ପୁରୀ ଖ୍ୟାତି ଯେ ॥ ୨୩ ॥

ଅଟେ ରାଧା ଗୁଣ ସୀମା ଗଦାଧର ସ୍ୱାମୀ
ଆପେ ସତ୍ୟା ରୁକ୍ମିଣୀ ସେ ବିଷ୍ଣୁପ୍ରିୟା ଲକ୍ଷ୍ମୀ ଯେ ॥ ୨୪ ॥

ଅବନୀ ଜାହ୍ନବୀ ପ୍ୟେ ଯେ ରେବତୀ ପ୍ରତକ୍ଷ
ଅଧିକ ମହିମା ବୀରଭଦ୍ର ଗୁଣେ ଦକ୍ଷ ଯେ ॥ ୨୫ ॥

ଆନ ପର ବାସୀ ଆଦି ଯେ ମଞ୍ଜରୀଗଣେ
ଅବତୀର୍ଣ୍ଣ ନମାମି ସେମାନଙ୍କ ଚରଣ ଯେ ॥ ୨୬ ॥

ଅଟେ ସେ ପ୍ରତାପରୁଦ୍ର ଦେବ ଗଜପତି
ଅବତୀର୍ଣ୍ଣ ରୁଦ୍ର ହୋଇଥିଲେ ପ୍ୟେ ନୃପତି ଯେ ॥ ୨୭ ॥

ଅବନୀ ବିପ୍ର ବଚନେ କଲେ ମହାରାଜ
ଆପେ ଶ୍ରୀକୃଷ୍ଣ ଚୈତନ୍ୟ ହେଲେ ଷଡ଼ଭୁଜ ଯେ । ୨୮ ।

---

୧ । ଷାଢ଼ (ପୋଥିପାଠ)

ଆମ୍ଭଭୂ ଯେ ହରିଦାସ ଠାକୁର ବନ୍ଦିତ
ଅଦ୍ୱୈତ ଆଚାର୍ଯ୍ୟ ମହା ବିଷ୍ଣୁ ସେ ସାକ୍ଷାତ ଯେ ॥ ୨୯ ॥

ଆପେ ଜଗଦାନନ୍ଦ ପଣ୍ଡିତ ସରସ୍ୱତୀ
ଅଟେ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ବୃହସ୍ପତି ଯେ ॥ ୩୦ ॥

ଆପେ ବେଦବ୍ୟାସ ବୃନ୍ଦାବନ ଦାସ ସ୍ୱାମୀ
ଅଜସ୍ର ବିଦ୍ୟାନିଧି ପଣ୍ଡିତଙ୍କୁ ନମାମି ଯେ ॥ ୩୧ ॥

ଅବତାର ଶୁକଦେବ ଅଟେ ସେ ସାକ୍ଷାତ
ଅଟନ୍ତି ନାରଦ ସେ ଶ୍ରୀନିବାସ ପଣ୍ଡିତ ଯେ ॥ ୩୨ ॥

ଅବତାର ସାନ୍ଦିପନି କେଶବ ଭାରତୀ
ଅଗଣିତ ବିଷ୍ଣୁଭକ୍ତ କେ କରିବ ଖ୍ୟାତି ଯେ ॥ ୩୩ ॥

ଆଦ୍ୟ ବନ୍ଧୁ ରୂପ ସନାତନ ଗୋସ୍ୱାମୀରେ
ଆଚାର୍ଯ୍ୟାଂ ଯେନ ଶ୍ରୀଚୈତନ୍ୟ ପ୍ରଭୁଙ୍କର ଶିରେ ଯେ ॥ ୩୪ ॥

ଅତି ଗୁପ୍ତ ବ୍ରଜକେଳି ରାଧାମାଧବର
ଅଶେଷରେ ଖ୍ୟାତିଂ କଲେ କରି ଗ୍ରନ୍ଥବର ଯେ ॥ ୩୫ ॥

ଆପେ ଶ୍ରୀ ଚୈତନ୍ୟ ପ୍ରଭୁ ହୃଦୟରେ ରହି
ଅଲକ୍ଷ ଲକ୍ଷ ସଂଖ୍ୟାରେ ଭକ୍ତି ଗ୍ରନ୍ଥ କହି ଯେ ॥ ୩୬ ॥

ଅପ୍ରକଟ କରିଥିଲେ ଯାହା ବେଦବ୍ୟାସ
ଅନୁକ୍ରୋଶ କରି ଜନେ କଲେ ତା ପ୍ରକାଶ ଯେ ॥ ୩୭ ॥

ଅଟେ ବୃନ୍ଦାବନ ଦାସ କୃଷ୍ଣ କବିରାଜ
ଅଧିକରେ ଲୀଳା ଗ୍ରନ୍ଥ ରଚନେ ବିରାଜ ଯେ ॥ ୩୮ ॥

ଅଶନି ସେ ପାଷଣ୍ଡ ଧର୍ମ ଆଦରେ ଦରି
ଅବମାର-ପାପ ଭାର କରାଇଲେ ଦୂର ଯେ ॥ ୩୯ ॥

ଅନୁଗ୍ରହ ଶ୍ରୀ ଗଉର ବିଗ୍ରହ ମୋହରେ
ଅନ୍ଧ କୂପ ରୂପେ ବିଶ୍ୱେ ପତିତ ମୋହରେ ଯେ ॥ ୪୦ ॥

ଅବଲମ୍ବି କରି ରାଧା-କୃଷ୍ଣ ବ୍ରଜକେଳି
ଅନାୟାସେ ତରିବାକୁ ମନୋରଥ କଳି ଯେ ॥ ୪୧ ॥

---

୧। ଷାଠ (ପେ.ଥିପ.ଠ)

ଅନନ୍ତ ଯେ ବକ୍ରେଶ୍ୱର ପଣ୍ଡିତ ଗୋସ୍ୱାମୀ
ଆମ୍ବର ଯେ ସଖ୍ୟ ସଖୀ ଉପାସନା ପ୍ରେମୀ ଯେ ।। ୪୨ ।।

ଆବୃତ ହରପାଦର ଶଙ୍ଖକେ ଶୋଭିତ
ଅତି ଉଗ୍ର କାଳଦଣ୍ଡ ଦଣ୍ଡକୁ ଅଭିତ ଯେ ।। ୪୩ ।।

ଅଷ୍ଟ ଚତୁଃଷଷ୍ଟୀ ଯେ ମହାନ୍ତ ବିଦ୍ୟମାନ
ଆହୁର ଦ୍ୱାଦଶ ଗୋପାଳଙ୍କୁ ମୋର ମାନ୍ୟ ଯେ ।। ୪୪ ।।

ଆଳ ରୂପ ଦାମୋଦର ସ୍ୱରୂପ ରାମାନନ୍ଦ
ଆହୁରି ସେ ଶିବାନନ୍ଦ ବସୁ ରାମାନନ୍ଦ ଯେ ।। ୪୫ ।।

ଆପେ ଶ୍ରୀ ଗୋବିନ୍ଦ ଘୋଷ ବାସୁଦେବ ଘୋଷ
ଅଟେ ମୁଁ ବକ୍ରେଶ୍ୱର ପଣ୍ଡିତ ସ୍ୱାମୀ ଦାସ ଯେ ।। ୪୬ ।।

ଆହୁର ମୁକୁନ୍ଦ ଦାସ ଯେନ ଲଳିତାଦି
ଅଷ୍ଟସଖୀ ରାଧାକୃଷ୍ଣ ପ୍ରେମ ଅନୁବାଦୀ ଯେ ।। ୪୭ ।।

ଅଟେ ରତ୍ନାଚାର୍ଯ୍ୟ ରତ୍ନଗର୍ଭ ଯେ ବିଶେଷ
ଆଚାର୍ଯ୍ୟ ଚନ୍ଦ୍ରଶେଖର ସେ ଗୋବିନ୍ଦ ଦାସ ଯେ ।। ୪୮ ।।

ଆଚାର୍ଯ୍ୟ ମୁକୁନ୍ଦ ଯେ ଗରୁଡ଼ ଦତ୍ତ ନାମ
ଅନନ୍ତ ସେ ଦାମୋଦର ପଣ୍ଡିତ ଉତ୍ତମ ଯେ ।। ୪୯ ।।

ଅଟେ କୃଷ୍ଣାନନ୍ଦ ଦାସ କୃଷ୍ଣାନନ୍ଦାଚାର୍ଯ୍ୟ
ଆଚାର୍ଯ୍ୟ ମାଧବ ପାଦୋରଜ ଶିରୋଧାର୍ଯ୍ୟ ଯେ ।। ୫୦ ।।

ଆପଣ ଯେ ମାଳାମ୍ବର ଚକ୍ରବର୍ତ୍ତୀ ଖ୍ୟାତ
ଅଟେ ରାମଚନ୍ଦ୍ର ଦତ୍ତ ବାସୁଦେବ ଦତ୍ତ ଯେ ।। ୫୧ ।।

ଆଦ୍ୟ ଶଙ୍କର ସୁନ୍ଦର ଠାକୁରଙ୍କୁ ବନ୍ଦ
ଅଷ୍ଟଶମ୍ଭୁ[୧] ଅନୁଚର ସୁବୁଦ୍ଧି ମିଶ୍ରାଦି ଯେ ।। ୫୨ ।।

ଅନନ୍ତ ନନ୍ଦନାଚାର୍ଯ୍ୟ ଶ୍ରୀରାମ ପଣ୍ଡିତ
ଆଦ୍ୟ ଗୋପୀନାଥ ଭଟ୍ଟାଚାର୍ଯ୍ୟ ପାଦେ ରତ ଯେ ।। ୫୩ ।।

---

୧ । ଅଷ୍ଟଶମ୍ଭୁ (ଖୋଥପାଠ)

ଆଦ୍ୟ ବନ୍ଦନାସ୍ତୁ ସଦାଶିବ କବିରାଜ
ଅନନ୍ତ ସେ ଜଗନ୍ନାଥ ସ୍ୱାମୀ ମହାଂ ତେଜ ଯେ ।। ୫୪ ।।
ଆତୁର ମୁକୁନ୍ଦାନନ୍ଦ ଯେ ରାଘବ ମୁକୁନ୍ଦ
ଆଦ୍ୟନ୍ତୁ ପୁରୁଷୋତ୍ତମ ଆଚାର୍ଯ୍ୟ ପଦ ବନ୍ଦ୍ୟ ଯେ ।। ୫୫ ।।

ଅଟେ ଶିବାନନ୍ଦ ନାରାୟଣ ବାଚସ୍ପତି
ଅଦ୍ୟ ମକର ପଣ୍ଡିତ ପଦଦ୍ୱନ୍ଦେ ନତି ଯେ ।। ୫୬ ।।
ଅବଶ୍ୟ ଦେବ ଯେ ରଘୁନାଥ ବସୁ ଦାସ
ଅଦ୍ୟ ବନ୍ଦେ ମଧୁସୂଦନ ପଣ୍ଡିତ ଈଶ ଯେ ।। ୫୭ ।।

ଆଚାର୍ଯ୍ୟ ଗୋବିନ୍ଦ ଜୟ ଯେ ପରମାନନ୍ଦ
ଆଦ୍ୟ ଗୁପ୍ତ ବଳରାମ ଦାସ ପାଦ ବନ୍ଦ୍ୟ ଯେ ।। ୫୮ ।।
ଅଟେ ପୁରନ୍ଦର ମିଶ୍ର ବସୁ ରାମାନନ୍ଦ
ଅଘ ହରିଭକ୍ତ ଦତ୍ତ ପରମ ଆନନ୍ଦ ଯେ ।। ୫୯ ।।

ଆପେ କାଶୀ ମିଶ୍ର କାଳିଦାସାଦି ମହାନ୍ତ
ଅଟେ ସନ୍ଧୁ କବିଚନ୍ଦ୍ର ଶ୍ରୀ ମାନ ପଣ୍ଡିତ ଯେ ।। ୬୦ ।।
ଅବଶ୍ୟ ସୁର ପୀତାମ୍ବର ଘୋଷ ଗୋବିନ୍ଦ
ଅଦ୍ୟ ହିରଣ୍ୟଗର୍ଭ ଠାକୁର ପଦବନ୍ଦ୍ୟ ଯେ ।। ୬୧ ।।

ଅଟେ ଜଗନ୍ନାଥ ସେଣ ରାଘବ ପଣ୍ଡିତ
ଅଦ୍ୟ ରକ୍ତ ଚିତ୍ତ ସଦାନନ୍ଦ ପାଦେ ଚିତ୍ତ ଯେ ।। ୬୨ ।।
ଆଦ୍ୟ ପୀତାମ୍ବର ପଣ୍ଡିତ କଂସାରି ସେଣ
ଅଘ ହରୁ ସେ' ଦ୍ୱିଜ ପଣ୍ଡିତଙ୍କୁ ଶରଣ ଯେ ।। ୬୩ ।।

ଆଦ୍ୱିର ମୁକୁନ୍ଦ କବିରାଜ ହରି ଦାସ
ଅଟେ ରାମ କବିଚନ୍ଦ୍ର ବାସୁଦେବ ଘୋଷ ଯେ ।। ୬୪ ।।
ଆଶ୍ରୟ ଶ୍ରୀ ଗୋପାଳ ଗୁରୁ ସ୍ୱାମୀ ଚରଣ
ଅଟେ ବଳରାମ ସେ ଗୋବିନ୍ଦ ଦାସ ପୁଣ ଯେ ।। ୬୫ ।।

---

୧। ମୋହା (ପୋଥିପାଠ)
୨। ହରଷେ ( ,, )

ଅଟେ କବି କର୍ଣ୍ଣ ପରଂ ଶ୍ରୀକାନ୍ତ ପଣ୍ଡିତ
ଅକୃପାର ଭବ ନାବ ମାଧବ ପଣ୍ଡିତ ଯେ ॥ ୬୬ ॥

ଅଦ୍ୟ ବନ୍ଦେ ଶ୍ରୀ ପ୍ରବୋଧାନନ୍ଦ ସରସ୍ୱତୀ
ଅଦ୍ୟ ବକ୍ରେଶ୍ୱର ଭଟ୍ଟାଚାର୍ଯ୍ୟ ପାଦେ ନତି ଯେ ॥ ୬୭ ॥

ଅନନ୍ତ ସପ୍ତମ ସଖୀ ବକ୍ରେଶ୍ୱର ସ୍ୱାମୀ
ଆଦ୍ୟ ପରମାନନ୍ଦର ଚରଣେ ନମାମି ଯେ ॥ ୬୮ ॥

ଅଦ୍ୟ ବନ୍ଦେ ଗୁପତ ବଳଭଦ୍ର ଦାସଙ୍କୁ
ଅନନ୍ତ ଯେ ଜଗନ୍ନାଥ ପଣ୍ଡିତ ତାହାଙ୍କୁ ଯେ ॥ ୬୯ ॥

ଅଟେ ବଳଭଦ୍ର ଦାସ ଶ୍ରୀକର ପଣ୍ଡିତ
ଅଦ୍ୟ ଦାସ ଶ୍ରୀରଘୁନାଥ ପାଦେ ଦଣ୍ଡବତ ଯେ ॥ ୭୦ ॥

ଅଟେ ନନ୍ଦାଚାର୍ଯ୍ୟ ପୁରୁଷୋତ୍ତମ ପଣ୍ଡିତ
ଅଦ୍ୟ ବନ୍ଦେ ମୁକୁନ୍ଦ ଦାସ ଗୋସ୍ୱାମୀ ଭ୍ରାତ ଯେ ॥ ୭୧ ॥

ଆପେ ଭଗୀରଥ କୃଷ୍ଣ କବିରାଜ ସ୍ୱାମୀ
ଆଣେ ଚୈତନ୍ୟ ଚରିତାମୃତ ଗଙ୍ଗାଭୂମି ଯେ ॥ ୭୨ ॥

ଅଟେ ରଘୁନାଥ ଭଟ୍ଟ ରୂପ ସନାତନ
ଆଦ୍ୟ ଗୋପାଳ ଭଟ୍ଟ ଚରଣେ ମାନ୍ୟ ପୁନ ଯେ ॥ ୭୩ ॥

ଅଦ୍ୟ ବନ୍ଦେ ଲୋକନାଥ ଦାସ ପଦଦ୍ୱନ୍ଦ
ଆପେ ଜୀବଦାସାଦି ସିଦ୍ଧ ମଞ୍ଜରୀବୃନ୍ଦ ଯେ ॥ ୭୪ ॥

ଅଟେ ସିଦ୍ଧ ସୁଦାମାଦି ସଖା ମଧ୍ୟା ଶାନ୍ତ
ଅଭିରାମ ଶ୍ରୀ ସୁନ୍ଦରାନନ୍ଦ ପାଦ ବନ୍ଦ ଯେ ॥ ୭୫ ॥

ଅଟେ ଧନଞ୍ଜୟ ପଣ୍ଡିତ କମଳାକର
ଆଦ୍ୟ ବନ୍ଦେ ସେ ଉଦ୍ଧବ ଦତ୍ତ କାଶୀଶ୍ୱର ଯେ ॥ ୭୬ ॥

ଅଦ୍ୟ ବନ୍ଦେ ପୁରୁଷୋତ୍ତମ ଦାସ ପଦକୁ
ଅନନ୍ତ ଗଉର ଦାସ ପଣ୍ଡିତ ତାହାଙ୍କୁ ଯେ ॥ ୭୭ ॥

---

୧ । ପୁସ୍ତ (ପେ.ଥପ:୦)

ଅଟେ ଉଖ୍ୟା ବନମାଳୀ ମହେଶ ପଣ୍ଡିତ ।
ଆଦ ନନ୍ଦହର ଦାସ ଦ୍ୱାଦଶ ମହନ୍ତ ଯେ ॥ ୭୮ ॥

ଅଟେ ସାର ସ୍ୱଭାବକ ପ୍ରହ୍ଲାଦ ଦାସ
ଆଦ ଭକ୍ତ ନଚୟରେ ରହୁ ମୋ ବିଶ୍ୱାସ ଯେ ॥ ୭୯ ॥

ଅତଏ ବନ୍ଦନ ମୋ ବ୍ରଜ ଉପାସି ସାଧୁଙ୍କୁ
ଅନ୍ୟ ଉପାସିକ ଖଳେ ନ ଦେବ ଗ୍ରନ୍ଥକୁ ଯେ ॥ ୮୦ ॥

ଅଥ ପ୍ରସଙ୍ଗକୁ ଶୁଣ କୋବିଦ ନଚୟ
ଅଚ୍ୟୁତ ରାଧିକା ଭେଟ ହେବାର ଉପାୟ ଯେ ॥ ୮୧ ॥

ଆସି ନାନ୍ଦୀମୁଖୀ ଦିନେ ବଳଦେବ ପାଶେ
ଅରଣ୍ୟ ଗମନ ନଷେଧିଲେ ବାଣୀ ବସେ ଯେ ॥ ୮୨ ॥

ଅବମାଲ୍ଲତର ଦୂତ ଏ ଗୋପ ସାଗରେ
ଆଣ୍ଠି ବଚନେ ମନ୍ଥଇ ବସୁ ହରିବାରେ ଯେ ॥ ୮୩ ॥

ଆଜ ରତ୍ନ ସ୍ଥବିର ଜନକ ଉପକଣ୍ଠ
ଅମର ବିଷ୍ଣୁଗକୁ ତା ହେବ ମାଳକଣ୍ଠ ଯେ ॥ ୮୪ ॥

ଅର୍ଭକ ମେଳରେ ବତ୍ସା ଚରାଇ କ୍ଷୀରହର
ଅଙ୍ଗୀକାର ଏ ବଚନେ ବଳରାମେ କରୁ ଯେ ॥ ୮୫ ॥

ଆଷ୍ଟି ମେଳକୁ ସେ ଗତ ଶୁଣି ଉପଦେଶ :
ଅଚ୍ୟୁତ ଭେଟିଲେ ନାନ୍ଦୀମୁଖୀ ହୋଇ ତୋଷ ଯେ ॥ ୮୬ ॥

ଅଗ୍ରଜ ରହିଲେ ବ୍ରଜ ଗଚ୍ଛ କୁମ୍ଭେ ବନ
ଆଲୋକନ ଇଷ୍ଟଦେବ ରାଧା ଶୋଭାବନ ଯେ ॥ ୮୭ ॥

ଅଚ୍ୟୁତ ସମ୍ଭ୍ରମେ ସଜ୍ଜା ହେବ କି ପଚାରୁ
ଅରଣ୍ୟ ଦେବୀ ସେ ବୋଲେ ଅଛନ୍ତି ବିଚାରି ଯେ ॥ ୮୮ ॥

ଆପଣ ବୃନ୍ଦାବନରେ[୧] ରହ ଯାଇ ହରେ
ଆଜ ଭେଟ ହେବ ଆଳି ବୃନ୍ଦାଙ୍କ ସହରେ ଯେ ॥ ୮୯ ॥

---

୧ । ବୃନ୍ଦାବନରେ (ପୋଥି ପାଠ)

ଆନନ୍ଦ ନଦୀରେ ଶୁଣି ଝୀଡ଼େ ମନ ମୀନ
ଅନଙ୍ଗ ଧୀବର ଶର ଜାଲ ପିଙ୍ଗେ ପୁନ ଯେ ॥ ୯୦ ॥

ଅରଣ୍ୟ ଗମନ ଯେନ ନର୍ମ ସଖା ସାଥି
ଅଟଇ ମାଧବ ମାସ ଗୁରୁ ପୂର୍ଣ୍ଣିତିଥି ଯେ ॥ ୯୧ ॥

ଅନୁରାଧା ନକ୍ଷତ୍ର ବୃଷ୍ଟିକ ସିଦ୍ଧଯୋଗ
ଅର୍କ ସପ୍ତବିଂଶତି ଦିବସ ମେଷ ଭୋଗ ଯେ ॥ ୯୨ ॥

ଅଟଇ ଲଗ୍ନ ମିଥୁନ ବବ ଯେ କରଣ
ଅନୁକୂଳ କାଳେ ବହେ ଧୀର ସମୀରଣ ଯେ ॥ ୯୩ ॥

ଅବଲମ୍ବେ କୁଞ୍ଜବନେ ବିହରିଲେ ହରି
ଆନ୍ତ ଆକାଶରେ ରାଧା ଜ୍ୟୋତି ଅଛୁ ପୂରି ଯେ ॥ ୯୪ ॥

ଆସି ନାନ୍ଦୀମୁଖୀ ରାଧାରେ ଭେଟିଲେ ଝଟିତି
ଅନ୍ତକେ କୃଷ୍ଣ ବିରହ ଜାତ କରେ ଦୂତି ଯେ ॥ ୯୫ ॥

ଅରଣ୍ୟେ ଅଛନ୍ତି କୃଷ୍ଣ ଚକୋର ସଜାତ
ଆସ୍ୟଚନ୍ଦ୍ର ଦରଶନେ କର ଆପ୍ୟାୟିତ ଯେ ॥ ୯୬ ॥

ଆକର୍ଣ୍ଣାପ୍ଲୁତଲୋଚନା ଶ୍ରବଣେ ଉଲ୍ଲାସ
ଆଶା ତରୁ ଜାତ କଲା ସରାଗ ପଲ୍ଲାସ ଯେ ॥ ୯୭ ॥

ଆଳି ଶୁଣି ଭାଳିବେ ବଚନେ ତତପର
ଅନ୍ତେ ଗନ୍ତେ ଶ୍ରୀ ଶ୍ୟାମସୁନ୍ଦର ଦେବ ଧୀର ଯେ ॥ ୯୮ ॥

## — ଦ୍ୱିତୀୟ କୁସୁମ —

# ବେଶ ପେଷଲ

# ଆଠ ପୋଇ ଲେଖନ

## ( ଏକ )

ଅନଙ୍ଗର ଜାଲ ରୂପ ପ୍ରତିମା ସ୍ୱରୂପ ଦଗଧ ହୋଇ ବିରହାନଳେ
ଆଣି ରଜନୀ ସଜନୀ ଲେପି ଶୋଭିବନୀ ଭଜନ ସେ ଉତ୍କଣ୍ଠନ୍ତ ତଳେ ॥ ୧ ॥

ଅଟେ କି କର କରତ ସେ ସୁନାସି ବ୍ରାତ ଘର୍ଷଣୁ ଚରଣୁ ହୋଏବ ପାତ
ଅମ୍ବୁ ତଇଳ ବସନ କୁଟିଳ ପୋଛି ପୁନ ପ୍ରସାରଣେ ହୋଇ କାନ୍ତିଯୁତ ॥ ୨ ॥

ଅଟେ ପୀଠ ତୁଳାପାଦ ତହୁଁ ଆଣି ପାଦ ଶୋଭା ତୁଳ ରଖି ଖରଡ଼ରେ
ଆଦରଣ ଧରି ଇନ୍ଦୁଲେଖାର ହେ ଇନ୍ଦୁମୁଖେ ହାରି ବିମ୍ବାଧରେ ଓଠରେ ॥ ୩ ॥

ଅନୁସରି ଶିଳ୍ପୀକାସି ପୃଷ୍ଠ ଆଶ୍ରେକରି ଫେଡ଼ି ଇନ୍ଦ୍ରନୀଳନଦ୍ଧ ବେଶ
ଅତି ଅର୍ଚ୍ଚନ କି ହେମ ପ୍ରଭାରେ ସୁଷମ ଅଗୁରୁ ଧୂପେ ବିଶେଷ ବାସ ॥ ୪ ॥

ଅଳଚୟ ଅବାରିତ ଗୃହରେ ବାରିତ ସେ ଚମ୍ପକଲତା ହାସ ବନ୍ଧି
ଅବଲୋକଲେ ଅର୍ଦ୍ଧକ ଗୃହର ସେବକ ଘୁଞ୍ଚିଲେ ଚମ୍ପକଲତା ଗୃହିଁ ॥ ୫ ॥

ଅମ୍ବୁଧାନ ତରଙ୍ଗିଣୀ × × ଶୋଭା ଶୁଣି ଥିଲାଇ କବିଙ୍କ ସମ୍ମତରେ
ଅର୍କତନୁଜା କି ହେମ ବେଳନ ତଟ ରମ୍ୟ ଜଣି ଆସେ ବନ୍ଧ କଲ୍ଲୋଳରେ ॥ ୬ ॥

ଅମୋଘରେ ଶ୍ୟାମଘନ ବରଷିବ ଘନ ରସ ଯୋଡ଼ାଇଛି ଚରମକୁ
ଆଣି କୁସୁମ ତଇଳ ପାତଳ ଶଇଳ ସ୍ତନା କେଶେ କଲେ ଲେପନକୁ ॥ ୭ ॥

ଅଗ୍ରମଧ୍ୟ ସିଂ ବିଧିରେ ଧରି ଲେପି ଧୀରେ ଲମ୍ବରେ ନିତମ୍ବ ଅଛି ଜଣି
ଆଣି କେ ସିଂଘାର ଫେଡ଼ି ଦେଖାଇଲା ଫେଡ଼ି ଶ୍ରୀ ଶ୍ୟାମସୁନ୍ଦର ଦେବ ଭଣି ॥ ୮ ॥

— ଗୀତ —

( ଆଷାଢ ଶୁକ୍ଳ ବାଣୀରେ )

ଅଷ୍ଟପଦ କଙ୍କତିକା ଉତ୍ତମ ।
ଅଛୁ ପ୍ରତିମା ରଚ ସୂଚକମ ।
ଅମୂଲ୍ୟ ହୀରକରେ ଘାସ୍ତିକରେ
ଅତି କୋମଳେ ଗୃଳେ ଧରି କରେ
ଅନୁମାନ ହୋଇ,
ଅଳିକାରେ କାମ ନାବ ଖେଳଇ ॥ ୧ ॥
ଆସ୍ୟରୁ ତମର ହୋଇ ନଗତ
ଅର୍ଦ୍ଧ ବଧୂ କଚ୍ଛେ ରତି ଭରତ ।
ଆନନ ଚନ୍ଦ୍ର କୋଳୁ କ ରେଚ୍ଛଣୀ
ଆସେ ପଳାଇ ନବ ଘନ ଜାଣି ।
ଅଭିନବ ରତି,
ଅତି ରାତକୁ ନ ଦନ୍ତ ଯୁବତୀ ॥ ୨ ॥

ବାକ୍ୟାର୍ଥୋପମେୟ— ଉକ୍ତଂ ଚ

—ଶ୍ଳୋକଃ—

ବାକ୍ୟାର୍ଥେ ନୈବବାକ୍ୟାର୍ଥୋ ଯଃ କଶ୍ଚିଦୁପମୀୟତେ
ଏତାନେକୈବ ଭେଦୌଷ୍ଟ୍ରା ବାକ୍ୟାର୍ଥୋପମାସ୍ମୃତାଃ ॥୧॥

---

( )

ଅନାସୃତ ସେ ପାଣିକ ନିର୍ମାଣେ ବେଣୀକ ଜଣଇ ଶ୍ରେଣି କ ପ୍ରକମ୍ପରେ
ଅଗ୍ରେ ପିହାଣିଥା ପଦ୍ମରାଗ ଶୋଭା ପଦ୍ମବାସେ ଯମୁନା ସ୍ରୋତଶମ୍ଭରେ ॥ ୧ ॥
ଆଲମ୍ବିତ ମାଳ ଝୁମ୍ପା ପୁବା ଧୀର କମ୍ପା ପଦ୍ମରୁ ସମ୍ଭୃତ ଇନ୍ଦୀବର
ଆଣି ସୁବର୍ଣ୍ଣର ବେଣୀ ଖଞ୍ଜିଲା ରମଣୀ ସର୍ପାକୃତି ଶିରେ ରତ୍ନବର ॥ ୨ ॥

ଅଶ୍ୱଯୁବା ଧୀର ଦଂଶି କଞ୍ଜୁକରେ ଭୂଷି ହୋଇ ରହିଛି କ ସ୍ୱପଞ୍ଚର
ଅସି ପୁଷ୍ପଚାପ ପାଣି ତନପୁର ଜଣି କୋଷରେ ଭରିଲା କ ପ୍ରେମ ଥର ॥ ୩ ॥

ଅନଙ୍ଗର କ ମଙ୍ଗଳ ଦୁର୍ବାସ୍ତେ ମଞ୍ଜୁଳ ଖୋସିଲେ ଯା ହେମ ଦୁବ ଝରା
ଅମାବାସ୍ୟା ସେ ମସ୍ତକ ଚନ୍ଦ୍ର ସୂର୍ଯ୍ୟ ଯେତେକ ଯୋଗକରି ଖଞ୍ଜି କଲେ ଚୋରା ॥ ୪ ॥

ଆଗ ଉତ୍ତମାଙ୍ଗ ମାଙ୍ଗ ଭାଙ୍ଗ ବେନଭାଗ ଆସ୍ୟ ବସ୍ତାରିଛି ସିଂହକେସ୍ତୁ
ଅଛି ସିମନ୍ତି ନର୍ମାଣି ରସନା କ ମଣି ନଚଟଳ ହଣଇ ରମଣୀପ୍ତୁ ॥ ୫ ॥

ଅଳଙ୍କାର ଅଳକା ଯେ ଦନ୍ତାବଳ ରାଜେ ଗ୍ରାସ କରି ମୁଖ ସୁଧାକର
ଅଳ୍ପ ରମିଅଛି ଦୂର ସିମନ୍ତି ସିନ୍ଧୁର ରୁଧିରେ ରସନା ଶୋଭାକର ॥ ୬ ॥

ଅଙ୍ଗେ ଅମୃତ ପୂର୍ଣ୍ଣ ଛଳ ଜ୍ୟୋତି ମୋତି ଜାଲ ଯା ମଣ୍ଡିଲେ ବେଣ ବରେ
ଅତି ଭାଗ୍ୟେ ଯୋଡ଼ ଦେଢ଼ ହେଲା ନିଃସନ୍ଦେହ ବେଣୀ ଟେକଣ୍ଟୁ ଯୁତ ପ୍ରଲମ୍ବରେ ॥୭॥

ଆସ୍ୟ ମାରଜ ଅତ ରସ ପନର ମାରଯୁତ ବସନେ ମାର୍ଜନ କରୁ
ଆଦରଣକୁ ଉତ୍ତର କରେ ତିରସ୍କାର ଶ୍ରୀ ଶ୍ୟାମସୁନ୍ଦର ଦେବ କରୁ ॥ ୮ ॥

—ଗୀତ—

( ଆଷାଢ଼ ଶୁକ୍ଳ ବାଣୀ )

ଅର୍ଦ୍ଧ ଚନ୍ଦ୍ରାକୃତ ଭାଲେ ଚନ୍ଦନ ।
ଆଦିତ୍ୟ ସିନ୍ଦୁର ବିନ୍ଦୁ ବଦନ ।
ଅରବିନ୍ଦ ନେତ୍ର ପକ୍ଷ୍ମଚଳନ ।
ଆଚରେ ଉନ୍ମୀଳନ ନମୀଳନ
ଅଳ୍ପ ମାଣିକ୍ୟର,
ଆଶୁଗ ଚନ୍ଦ୍ରାକୃତ ଦର୍ପକର ॥ ୧ ॥

ଅକ୍ଷେ ଶୋଭନ ହାବ ଅଳଙ୍କାରେ
ଅଞ୍ଜନ ରଞ୍ଜନ ଶୋଭାଳଙ୍କାରେ
ଅସିତ ବଶୀକରଣ ମଣିକ
ଆଜ ଗଳାଇଲେ ସୂତ୍ରେ ଆଣିକ ।
ଅପାଙ୍ଗ ଅନାଇ,
ଆମ୍ଭେଶ୍ୱର ଉରେ ମଣ୍ଡିବ ନେଇ ॥ ୨ ॥

( ଉନ )

ଆରୋହଣକୁ ପାଳଙ୍କ ଦର୍ପକ ଝଲକ ମୀନ ଯାନ କଲା ତଦାକାର
ଅଞ୍ଜନର ଲଞ୍ଜି ବାଣ ମଙ୍ଗ ପରକାଶ ଭ୍ରୂଲତା କଳା କ ତପାସାର ॥ ୧ ॥

ଅଳକା ଯେ ଗଜେ ଛତ୍ର ଝୁମ୍ପା କ୍ଷୁଦ୍ର ମୋତି ଖଚା ନାସ୍ଵକ ଝୁମ୍ପାରେ ଶୋହ୍ବ
ଅଛୁ ଯା ହ୍ଵରକ ମଲ୍ଲୀ କଳ କଣ୍ଠେ ଝୁଳ ବେନ ଦଗରେ କଳଶ ଉହ୍ବ ॥ ୨ ॥

ଅଟେ କର୍ଣ୍ଣ ଖଟ ଦୋଳ ସେ ମୁକ୍ତା × ×ଳ ×କୁ ଡାକୁ ତକେ ସଯତନେ
ଅଛୁ ରତ୍ନଫୁଲ ବାଳ ସୁମୋତି ଆବଳ ତାରାଳ ଆରେହ୍ବ ଆନ୍ଦୋଳନେ ॥ ୩ ॥

ଅପଲକ ସୁରସାକ ଝଲକା ଝଲକ କରୁଛୁ ଦୋଳରେ ଲୋଳ ବନ୍ଧ
ଅରବନ୍ଦର ଆକୃତି ତାଟଙ୍କ ଶୋଭନ୍ତ କର୍ଣ୍ଣଫୁଲ ଦେଶାନ୍ତରେ କନ୍ଧ ॥ ୪ ॥

ଅତିମୂଲ୍ୟ ପଦ୍ମରାଗ ରତ୍ନ ଯୋଗେ ରାଗ ନିର୍ମିତ ନାସ୍ବକ ମାରକତ
ଅଳି ପଦ୍ମକୁ ଚୁମ୍ବଇ ଏ ଦୃଷ୍ଟି ବଳଇ ଝୁମ୍ପି ମୋତି ଅମ୍ବୁକଣ ଭ୍ରାନ୍ତ ॥ ୫ ॥

ଆଣି ମୋତି ନଥ ନାକେ ମଣ୍ଡନ କଲା କେ ସକଳ ତାରକା ବଶୀଭୂତେ
ଆସ୍ୟ ଚନ୍ଦ୍ରମା ଉହ୍ବତ ଅମ୍ବର ଅଭୂତ ଉସିଲେ କ ଉଚ ବପଗତେ ॥ ୬ ॥

ଅଦଭୁତ ପ୍ରେହ୍ବଠାରେ ଦେଖା ଦେଲା ଥରେ ମୟୂର ବେଶର ଖଞ୍ଜିବାରେ
ଅଟେ ନଂପୁସକ ସେହ୍ବ ନାସା କାରେ ହେନ୍ବ ଆରୋହଣେ ରୁଚି ଉସିବାରେ ॥ ୭ ॥

ଅଙ୍କ ଅଙ୍କୁରିତ ସମ କ ତଉଠେ ସୋମନାଭ ବନ୍ଦୁ ଚିବୁକରେ ଶୋହେ
ଅଳି ଅଧର ମନ୍ଦାର ଚୁମ୍ବନେ ଆତୁର ଶ୍ରୀ ଶ୍ୟାମସୁନ୍ଦର ଦେବ କହେ ॥ ୮ ॥

—ଗୀତ—

( ଆଷାଢ଼ ଶୁକ୍ଳ ବାଣୀ )

ବାକ୍ୟାର୍ଥୋପମେୟ—

ଅସିତ କାଞ୍ଚଳି କୁଚପିଧାନ
ଅନୁମାନ ହୋଏ ଏହ୍ବ ବଧାନ
ଅନ୍ଧକାରତ ଅନଙ୍ଗ ଉପ୍ବରେ
ଆମଜ୍ଜନ କ ଯମୁନା ପଯ୍ବରେ

ଅଙ୍ଗନା ଶିବର,
ଅର୍ଦ୍ଧେ ଆଚ୍ଛାଦନ୍ତି ଇନ୍ଦୀବର ॥ ୧ ॥

ଆଚ୍ଛାଦେ ଶୈବାଳ ଅମ୍ବୁଜ କଳି
ଅଚଳେ ମାଡ଼ିଛି ତମାଳ ବଲ୍ଲୀ
ଅମ୍ବୁ କମ୍ବୁ କଣ୍ଠଧାର୍ଯ୍ୟ ଆବଳୀ
ଅଭିଷେକ କରେ ଶଙ୍କରେ ମିଳି
ଅଟେ ପୁଷ୍ପ ଜାଳ,
ଅଷ୍ଟାପଦ ଯୁତ ପ୍ରବାଳ ମାଳ ॥ ୨ ॥

( ଗୌରୀ )

ଅଛି ମୋତ ରୂପଧର କାମ ରୂପ ସରି ବିଶେଷରେ ଗୁଣବନ୍ତ ହୋଇ
ଅମ୍ବୁ କମ୍ବୁ କଣ୍ଠେ ଭରି କି ବାଣାସୁରର ସଂକଳ୍ପ ଜଗତ ଦନ୍ତ୍ୟ ପାଇ ॥ ୧ ॥
ଅବଷ୍ଟମ୍ଭିତ କୁଚ କୁମ୍ଭ ହାର ଛଳେ ଅମ୍ବୁ ଭରି ବରୁଣରେ କି ପୂଜନ
ଅଟେ ପଦକ ପ୍ରଦୀପ ରତ୍ନରେ ଦେଦୀପ୍ୟ ଚୁଚୁକ ଗୁବାକ ବିଦ୍ୟମାନ ॥ ୨ ॥
ଅଣି ଅଭୁଳକୁ କରେ ଅତୁଳପ କରେ ବୁଡ଼ି ଜଡ଼ି ରୂନ୍ତ ହାରକରେ
ଅନ୍ବଭୁଜକୁ ଉପମା ମଣି ମନୋରମା ଧାତ୍ର କରେ କିବା ମସ୍ତକରେ ॥ ୩ ॥
ଅନଙ୍ଗର କି ଅଙ୍ଗଦ କାରଣରେ ମଦ ଅଙ୍ଗଦ ଭୁଜରେ ମର୍କତର
ଅଳି ଚମ୍ପକ ମାଳରେ କି ପୁଣ୍ୟ ବଳରେ ଜଡ଼ିଅଛି ରତ୍ନ ଦୃଢତର ॥ ୪ ॥
ଅସି ଅନଙ୍ଗର ବାଜ ବନ୍ଧ ଯାହା ବାଜ ବନ୍ଧ ଦେଲେ ସେ ଅକରୁଣକୁ
ଆରୋହିବ କଳ୍କି ପରି ନେଇ ତରବାରୀ[୧] ଧରି ବିନାଶିବ ଚନ୍ଦ୍ରକୁ ॥ ୫ ॥

ଶ୍ଳେଷ—

ଆଜ ସ୍ବକର ସାଜେଣି ହେବା ହେତୁ ଜାଣି ଉଦ୍ଧରି ହୋଇବ କ୍ଷିତି ପରି
ଅଛି ଅଙ୍ଗୁଳି ଅଶୋକ ସେ ଅଙ୍ଗୁଳୀୟକ ପାଣିମୁଦ୍ରା ସଂସ୍କାରରେ ଚୋରି ॥ ୬ ॥

---

୧ । ତରୁଆରି (ପୋଥିପାଠ)

ଅଟେ କଟି କଣ୍ଠରବ କରଇ କ ରବ ରଶନା ରସନା ଟଙ୍କାଣ
ଅତି ଘଞ୍ଚ ଦନ୍ତାବଳୀ ଚୁମ୍ବି ଘଣ୍ଟି ଟିକି ସାକ୍ଷାତ ଚଣ୍ଡୀ ଭେଟିବ କ୍ଷଣ ॥ ୭ ॥
ଅଙ୍ଗୁ ଅନନୁଭୂତରେ ଅପେକ୍ଷ୍ୟ କରେ କାରଣେ ନୃସିଂହ କଣ ରବ
ଅତି ଦୂରରୁ ଘୁଞ୍ଚିବ ଦର୍ପେକୁ ମୁଞ୍ଚିବ କହଇ ଶ୍ୟାମସୁନ୍ଦର ଦେବ ॥ ୮ ॥

—ଗୀତ—

( ଆଷାଢ଼ ଶୁକ୍ଳ ବାଣ )

ଅଙ୍ଘ୍ରି ଶୋଭନ ରତ୍ନ ହଂସକରେ
ଅମ୍ଭୋରୁହ ସେ ଫୁଟି ହଂସକରେ
ଆସିବେ କହେ ଭସ୍ମ ହଂସକରେ
ଅଗତି ଆଶ୍ୱାସ ବନ୍ଧୁସକରେ
ଆନ୍ତୁର ମଞ୍ଜିର,
ଅସ୍ଥିର ଫୁଟିବ କେଳି ଟଙ୍କାର ॥ ୧ ॥
ଆଣି ପଦ୍ମିମାଣି ଭୂଷା ପ୍ରପଦେ
ଅଳି ମୁଖର ଫୁଲ୍ଲ ଅରବିନ୍ଦେ
ଆଜ କ ପାଦ ହୋଇ ବାରବେଶ
ଅଲକ୍ତ ରାଗ ସୁରଙ୍ଗ ଉଷ୍ଣୀଷ
ଚରଣ ଯୁବାଙ୍କୁ,
ଅଧିକ ରାଗ ପଦ୍ମ ଦଳବାଳୁ ॥ ୨ ॥

---

( ପାଞ୍ଚ )

ଅଳ୍ପ ଚନ୍ଦନ ସେ ବାଳୀ ତନୁରେ ଶ୍ୟାମଳୀ ବିଶାଖା କର୍ପୂର ମିଶ୍ରିତରେ
ଅଷ୍ଟାପଦର ପ୍ରତିମା ପାରଦେ ସୁଷମା ଅଭ୍ର ଶୁଭ୍ର ମିଶେ ବିଦ୍ୟୁତରେ ॥ ୧ ॥

ଅଣି ଅସିତ ତିମିର ସାନ୍ଦ୍ର ହେମ ଜରିଲତା ମଞ୍ଜୁଳତା ମୁଖେ ଶୋଭ୍ର
ଅଚ୍ଛ ଶମ୍ବୁକ ଉଦରେ ସ୍ୱଚ୍ଛା ଆଦ୍ୟରେ କାଢ଼ି ଅତରେ ସୁବାସ ବନ୍ଧ ॥ ୨ ॥

ଆପଣା ପ୍ରପଧାନ ଯେ ପିନ୍ଧାଇଲେ ରାଜେ ସ୍ୱର୍ଣ୍ଣ ଜରି ଫୁଲ ସୁଂସଜରେ
ଅଟେ ରାମା ହେମ ବଲ୍ଲୀ ଯେହ୍ନେ ଦୃଷ୍ଟି ବଳ ସୁବାସ କୁସୁମ ଯେ ସଜରେ ॥ ୩ ॥

ପ୍ରାପେ କୁଞ୍ଚିତ ବସନ ଛଟା ପରସନ ମୁଖୀ କରେ ଦେଇ ପିନ୍ଧାଇଲେ
ଅନୁମାନ ହୋଇପେ ଦର ମୋହକୁ ବଖିର ଅତନୁ ଅନ୍ଧାରେ ଲୁଚ୍ଛଇଲେ ॥ ୪ ॥

ଅଭୋଚ୍ଛକ ହେମ ଜରି ଘୋଡ଼ ବର ନାଗ ପ୍ରତି କର ଛବ ଜଣା ନୋହ୍ନ
ଆସି କ ଜ୍ୟୋତିରଙ୍ଗଣ ଗଣ ପ୍ରଦକ୍ଷିଣ ପୁଷ୍ପିତ ଚମ୍ପକ ଦ୍ରୁମେ ଶୋଭ୍ର ॥ ୫ ॥

ଅନ୍ୟ ସଖୀ ଯେ ତାମ୍ବୁଳ ଭୁଞ୍ଜାଇଲେ ବୋଳ ଯୋଗେ ରଦଚେଳପ୍ସେ ମଞ୍ଜୁଳ
ଅରୁଣ କ ସରସ୍ୱତୀ ମାରେ କର ପ୍ରୀତି ସ୍ନାନରୁ ନିଗିଚ୍ଛି ଅଙ୍ଗେ ଜଳ ॥ ୬ ॥

ଅଳଙ୍କାର ପେଡ଼ି ଧନ୍ୟା ସାଇତଲେ କନ୍ୟା ବର ବରଣର ବେଶ ଅନ୍ତେ
ଆଳତପ୍ସ କଚ୍ଛ ବଙ୍କ କଚ୍ଛବାରୁ ବଙ୍କ ଅପାଙ୍ଗ ଜାତ ଦରଷ ଅନ୍ତେ ॥ ୭ ॥

ଅତି ମୁକ୍ତାର ମାଳିକା ମଙ୍ଗଳା ବାଳିକା କରେ ଦେଲେ ମଙ୍ଗଳାରୋପଣେ
ଆବେଷ୍ଟିତ ନବ ସଖୀ ମଙ୍ଗଳ ନରେଶଂ ଶ୍ରୀ ଶ୍ୟାମସୁନ୍ଦର ଦେବ ଭଣେ ॥ ୮ ॥

—ଗୀତ—

( ଆଷାଢ଼ ଶୁକ୍ଳ ବାଣୀ )

ଆଜ କେ ବୋଲେ ଭବ ଅଳଙ୍କାର
ଅଳକା ଶୋଭମାର ଅଳଙ୍କାର
ଅଳଙ୍କାରର ହେଲା ଅଳଙ୍କାର
ଅମୁଲ୍ୟ ନ ଥିବ ଯେ ଅଳଙ୍କାର
ଅତୁଳ କୁଚରୁ,
ଅଧିକ ହେବ କ ଭୂଷଣ ଗୁଚ୍ଛ ॥ ୧ ॥
ଆନ କେ ବୋଲେ ଅନଙ୍ଗ ସଙ୍ଗୀତେ
ଅରମ୍ଭ ବାଣୀ ବଣାରାଗ ଗୀତେ

୧ । ନରେଶି (ପୋଥିପାଠ)

ଅବଶ୍ୟ ଊଣକୁ କରବ ବଶ
ଆପଣା ହୋଇଛନ୍ତି ନାଚୁଣୀ ବେଶ
ଅଙ୍ଗରେ ଘାଗୁଡ଼,
ଅଞ୍ଚଳେ କୁଚ ମର୍ଦ୍ଦନ ଉହାଡ଼ ॥ ୨ ॥

---

( ଛାଅ )

ଆଳି କେ ବୋଲେ ନାସିକ ମଣିକ ରସିକା ଲସିକା କରବ ପ୍ରେମ ବଳେ
ଅନ୍ୟ ବେଣୀକ ନାୟକ ସେ ଅନ୍ୟ ଭୃଣ୍ଡିକ ହୋଇ ନଗ୍ଗଇବ କୁତୂହଳେ ॥ ୧ ॥

ଅବଲୋକ କେ ଅମ୍ବର ମାଳ ବନ୍ଧ ଗିର କଣ୍ଠେ ଆଲିଙ୍ଗନ କୃଷ୍ଣ ପର
ଅଧୋବଦନେ ରହଇ ଅନ୍ୟେ ସୁଖ ପାଇ ଶ୍ରୁତିପ୍ରିୟ ଯେଣୁ ମହାସ୍ବର ॥ ୨ ॥

ଅଙ୍ଗେ ମଙ୍ଗଳ ବ୍ୟକତ କୁଚ କୁମ୍ଭ ଖ୍ୟାତ ନେତ୍ର ମୀନଗଣ୍ଡ ରାଜହଂସୀ
ଅବଦାତ ପାରବତ ସୁଗଳ ବନ୍ଧିତ ଶଙ୍ଖସ୍ୱନ ବାଣୀ ପୁଷ୍ପହାସି ॥ ୩ ॥

ଆଟେ ଭୃଙ୍ଗବଦ୍ୟା ବାଦ୍ୟ ବାଦନରେ ବଦ୍ୟ ପରିବାଦନ ଆଦରେ ସେବ
ଆଳାପରେ ରଙ୍ଗ ଦେବୀ ଗାୟନରେ ସେବ ଧର ସୁବାର ଝର ସୁଦେବୀ ॥ ୪ ॥

ରୂପକ ଶ୍ଳେଷ—

ଅପସରା ମେଳେ ଶଚୀ ସର୍ବଶୋଭା ସଂଚି ଆନନ୍ଦରେ ଗମେ ନନ୍ଦନରେ
ଅଙ୍ଗ ଆଶ୍ରିତେ ଉଦ୍ଦାହାବ ବରରେଖା ଚିତ୍ରଲେଖା ଭଲ ଚନ୍ଦନରେ ॥ ୫ ॥

ଅଚ୍ଛି କେ ସେ କଳାବତୀ ମଦନକାମିତ ଉନ୍ନତରମ୍ଭା ତିଳୋତ୍ତମା ନାସେ
ଆନନରେ ମନୋରମା, ଶଶୀକଳା ରମ୍ୟା ହାସେ ଉରବଶୀ ଉରେ ବସେ ॥ ୬ ॥

ଅଗ୍ରେ ଅଧରେ ସୁମନ ବଞ୍ଜୁ ସୁମନ ଶରଲୁ କି ପ୍ରଭିଶର ରାଜେ
ଅବମୀରଜେ ରଜନୀ କରକ ରଜନୀକର କରେ ଶୋଭେ ବଧୂ ରଜେ ॥ ୭ ॥

ଅଟେ ଘନକାଳ ସାନ୍ଦ୍ର ଛନ୍ଦ କି ମିଳନ୍ଦ୍ର ମୟୂର ଝୁଲରେ ନାଚେ ଶିଖୀ
ଅଛୁ ନଟେ୍ରକଂ ଗୁମର ଶ୍ରୀ ଶ୍ୟାମସୁନ୍ଦର ଦେବର ଚିତ୍ର ବୃତ୍ତକ ସୁଖୀ ॥ ୮ ॥

---

୧ । ନଟୁଳ (ପୋଥିପାଠ)

## —ଗୀତ—

( ଆଷାଢ ଶୁକ୍ଳ ବାଣୀ )

ଅଗ୍ରେ ବେଷକର ନାସା ନକର
　　　　ଆଗ୍ରହ ମଣିମା ଡାକ ଭେକଣ
ଅରୁଣ ଖଣ୍ଡ ନବଦଳ ତଳେ
　　　　ଆପଗା ବେଗ ଗମନା ଚଞ୍ଚଳେ
　　　ଅଙ୍ଗନା କଦମ୍ବ,
　　ଅତ ଅନ୍ତର ପୁଲକ କଦମ୍ବ ।। ୧ ।।
ଅର୍କ ଅର୍ଚ୍ଚନା ସମ୍ଭାର ସମ୍ଭ୍ରମେ
　　　　ଆସେକ ବୃଷ୍ଟି ଉବଞ୍ଚ ଅମ୍ବରେ
ଆନ ନଦୀ ପର ବନଦେବୀ ଯେ
　　　　ଆସିଲେ ଜାଣି ଠାକୁରାଣୀ ବଙ୍ଗେ
　　　ଅତ୍ୟନ୍ତ କଲ୍ଲୋଳେ,
　　ଆପ ଉଜାଣି ବହିଲ କ ଲୋକେ ।। ୨ ।।

( ସାଭ )

ଅଳି ନବାରଣ ଛସ ମୁଁ କେତକୀ ଯଥ ଚମ୍ପା ଗୁମନ୍ତ ଟୁମ୍ବାରେ ଶୋଭେଁ
ଅଙ୍ଗ ସୁଷମାକୁ ସର ହୋଇ ଅନୁସରି ସେହ୍ୱଲେ କ ଅନୁରାଗ ଲଭେ ।। ୧ ।।

ଆସ୍ୟ ଆକାଶକୁ ଟେକି ଛସ ଅବଲୋକ ସେକାଳେ ଯେମନ୍ତ ଉପମା ସ୍ଫୁର
ଅତ ଦପିତ ଅମୃତ କର କ ବଦ୍ୟୁତ ଜ୍ୟୋତି ମଧ୍ୟେ ଉଦେ ନଭ ପୂର ।। ୨ ।।

ଅକ୍ଷି ମଣ୍ଡଳରେ ପକ୍ଷୀ କୁରଙ୍ଗ ନରକ୍ଷି ଲାବଣ୍ୟ ଅମୃତ କରେ ପାନ
ଆପ୍ୟାୟିତ କଲେ ମତ ଚନ୍ଦ୍ରଲତା ପତ୍ନୀ ଗଉର କରଣେ ସ୍ୱେ ସୋପାନ ।। ୩ ।।

ଅବଲୋକ ଦୁନ୍ତ ହର ଅକୁପାର ପର ପର କଳନା ମନ୍ଥନେ ଶୋଭ
ଅସ୍ୟ ହାସରେ ମୁକୁଳ ସେ ମଧୁମଙ୍ଗଳ ବୋଲେ ଲାବଣ୍ୟ ସାଗର ଫେଣ ।। ୪ ।।

ରୂପକ ଶ୍ଳେଷ—

ଅଟେ ଉରଜ ମନ୍ଦର ବେଣୀ ଅମ୍ବରର ସଂଯୋଗ ହୋଇଛୁ ବର୍ତ୍ତମାନ
ଅଙ୍ଗ କନ୍ଦୁର ସୁମନ ମାଳରେ ଶୋଭନ ଶ୍ୱେତ ପଦ୍ମକର ବନ୍ଦ୍ୟମାନ ॥ ୫ ॥

ଆପେ କାମ କଳ୍ପଲତା ଓଷ୍ଠ ମଞ୍ଜୁଳତା ମନ୍ଦାର ହରିଚନ୍ଦନ ଗାଲେ
ଉପସର ଉନ୍ମାଦ ସେ ଅଙ୍ଗେ ଅଙ୍ଗେ ରାଜେ ମଣିରତ୍ନ ନାସାଙ୍କର ଭଲେ ॥ ୬ ॥

ଅଙ୍କ ରଞ୍ଜିତ ଚନ୍ଦ୍ରମା ଆନନ ସୁଷମା ହାସ ଅମୃତରେ ପରସନ୍ନ
ଅଟେ ହରିତ ଅମ୍ବର ସମ୍ଭବ କି ବର ଗରଳ ଅପାଙ୍ଗ ବରଣନ ॥ ୭ ॥

ଅଛୁ ଗଜ ଐରାବତ ପୃଷ୍ଠରେ ଶୋଭିତ ସୁଭୁଜ ମୂଣ୍ଡ ପ୍ରେ କମ୍ପମାନ
ଆସେ ସୁଧା କୁମ୍ଭ ଯେନ ଉରଜ ମୋହିନୀ ଶ୍ରୀ ଶ୍ୟାମସୁନ୍ଦର ଦେବ ଧ୍ୟାନ ॥ ୮ ॥

—ଗୀତ—

( ଆଷାଢ଼ ଶୁକ୍ଳ ବାଣୀ )

ଆଲୋକ ଦୁଷ୍ଟ କୃଷ୍ଣ ଘନକେଶୀ
ଅସିତ ଘନ ପ୍ରେ ହରଗରେ ବଶୀ
ଅର୍କଜା ପୂର୍ବେ ନ ଥିଲା ପ୍ରେ ହରେ
ଆଜ କି ବଢ଼ି ଆସୁଅଛୁ ବେଗେ
ଆଶ୍ଚର୍ଯ୍ୟ ପରାପ୍ରେ,
ଅବଶ୍ୟ ହୁଇଛୁ ଦେବ କଥାଏ ॥ ୧ ॥

ଆଳ ଶୁଣି ବୋଲେ ବାଳୀ ଉତ୍ତମ
ଅଚ୍ୟୁତ ଏ ହେନ ଲକ୍ଷଣ ଧାମ
ଅପହୃତକୁ ତୋ ଅନଙ୍ଗ ଚାପ
ଅତ୍ରେ ବ୍ୟବସ୍ଥିତ ଗୃହ ସ୍ୱରୂପ
ଅଧିକ ବର୍ଣ୍ଣନା,
ଆମ୍ଭଠାରୁ ଶୁଣ ବାମ ଲୋଚନା ॥ ୨ ॥

## ( ଆଠ )

ଘନ ଯମୁନା ରୂପକ—

ଅଟେ ଏ ଅସିତ ବର୍ଣ୍ଣ ଘନରସେ ପୂର୍ଣ୍ଣ ବିଷକଣ୍ଠ ମୋତିହାର ଛଳ
ଆଖଣ୍ଡଳ ଧନୁ ନୀଳ କୁମୁଦ କମଳ ଅନେକ କୁସୁମମାନ ଚୂଳ ॥ ୧ ॥

ଅଙ୍ଗେ ଭ୍ରମର ବିଦ୍ୟୁତ କେଶର ବନ୍ଦିତ ବଂଶୀ ନିନାଦିତ ଗୀତ ସ୍ୱନ
ଅଛି ସୁବାହୁ କଲ୍ଲୋଳ ଛିନ୍ନ ଅଭ୍ର ମେଳ ଚୂର୍ଣ୍ଣ ଅଟା କୂଳ ସ୍ଥିରଗଣ ॥ ୨ ॥

ଅର୍କ ସ୍ଥଳକୁ ଷୋଭାଙ୍ଗୀ ଗଲେ ପଥ ଭଙ୍ଗି କୃଷ୍ଣ ବଧ ହରି ହର ପର
ଆଜ ଅପରାଧ ବିନା କେଉଁ କାରଣେ ନସାନା ମୋ ବିନା ତୁ ହେଲୁ ତତପର ॥ ୩ ॥

ଅନ୍ତ ମୋ ବିଷୟେ ନାରିକେଳ ପଞ୍ଚ ନାଗବର ଦ୍ରବିବାର ଥିଲା ଜଣା
ଅନୁମାନ କରିକଷ ନୋହୁଁ କରିକଣ ସ୍ତନ ସଙ୍ଗ ଦୋଷେ ଘୃଣା ଊଣା ॥ ୪ ॥

ଆଜ ନରମେଧ ଯାଗେ ଅନଙ୍ଗକୁ ସ୍ୱର୍ଗେ ବସାଇ ପ୍ରେତତ୍ୱ କରି ଦୂର
ଅଙ୍ଗେ ରଖି ଚନ୍ଦ୍ରକଳା କୃଷ୍ଣଚନ୍ଦ୍ର କଳା ଦେଖିବା ହୋଇଲା ଅନାଦର ॥ ୫ ॥

ଆଳି କରେ ଫୁଲମାଳ ପ୍ୟେ ସମପ୍ୟେ ବାଳୀ ଦେଇ ପେଷେ ବନମାଳୀ ପାଶେ
ଅର୍କସ୍ଥଳେ ସବ ସଖୀ ରଖିଣ ସୁମୁଖୀ ଆସିବେ କୃଷ୍ଣ ପୁରତେ ହସେ ॥ ୬ ॥

ଆଲମ୍ବିତ ହୃଦେ ମାଳ ମୁଦେ ନନ୍ଦବାଳ ସସମ୍ଭ୍ରମେ ପୃଚ୍ଛେ କହ ସତ
ଅସଂଶୟ ଏ ବିଷୟ ବୋଲେ କୁଶେଶୟ ମୁଖୀ ଏହିକ୍ଷଣି ସମାଗତ ॥ ୭ ॥

ଆମ୍ର ମୁକୁଳକୁ ପିକ ପରି ସମୂହୁକ ଆଗତ ପଥରେ ନେଇ ରଜେ
ଅପରତେ ଦରଶନେ ବୋଲେ ପରମନେ ଶ୍ରୀ ଶ୍ୟାମସୁନ୍ଦର ଦେବ ରାଜେ ॥ ୮ ॥

ଇତି ଶ୍ରୀ ଅନୁରାଗ କଳ୍ପଲତା ପଞ୍ଚମ ସ୍ତବକ ଦ୍ୱିତୀୟ କୁସୁମ
ବେଶ ପୋଷାକ ପେ.ଛ ସମାପ୍ତ ।

— ତୃତୀୟ କୁସୁମ —

# ବୋଲି

## ପ୍ରଥମ ଭାଗ ଲେଖନ

( ଗୀତା ବାଣୀରେ )

ଆସଇ କୁସୁମ ତୋଳ-　　ବାର ଛଳେ ଦେବବାଳୀ
ଅଷ୍ଟ ସଖୀ ବୃନ୍ଦା ଆଦି ଅଛନ୍ତି ସଙ୍ଗେ
ଅନ୍ୱେଷଣା କରି ହରି　　କାନନ ମଧ୍ୟେ ବିହରି
ନେଇ ଗୁଳେ ଲୋଳେ ବାଦ କରି କୁରଙ୍ଗେ ॥ ୧ ॥

ଅଞ୍ଜନ ସ୍ନେହେ ବନ୍ଧନ　　ପଡ଼ି କି ନବ ଖଞ୍ଜନ
ଇଚ୍ଛା କରେ ପଳାୟନ ହୋଇ ଆତୁର
ଅନଙ୍ଗ ଚଢ଼ି ତୁରଙ୍ଗେ　　ଧାଉଡ଼ି ଦିଅଇ ରଙ୍ଗେ
ଲଙ୍ଘି ତୋମର ସାଧନେ ଅଟେ ଚତୁର ॥ ୨ ॥

ଅସିତ ରଜ୍ଜୁରେ ମାର　　ମରକତର ଏ ସାର
ସାରଣି ଖେଳଇ ଅତି କୁତୂହଳରେ
ଆପେ ଅତନୁ ଧୀବର　　ଜାଲ ପିଙ୍ଗି ଭ୍ରୂଲତବର
ଲଙ୍ଘି ରଜ୍ଜୁ ଟିକ୍କୁ ମୀନ ଧାମେ ଲୋଳରେ ॥ ୩ ॥

ଅଦ୍ଭୁତ ସୁଷମା ଦେଖି　　ଅପଲକ କୃଷ୍ଣ ଆଖି
ଅଲକ୍ଷରେ ଲକ୍ଷ ଲକ୍ଷ ଦୁରକୁ ଢୁଣ୍ଢି
ଅମ୍ଭୋଜନୀ ଉଦ୍ଗନ୍ଧା　　ସ୍ଥିର ଶିଳୀମୁଖେ ବନ୍ଧା
କେଜ୍ଞ ହେଲା ଏ ଆଶ୍ଚର୍ଯ୍ୟ ମନରେ ପାଞ୍ଚି ॥ ୪ ॥

ଅଟେ ନଷ୍ଟପ୍ରେ ହସ୍ତିନୀ　　ହସ୍ତରେ ହୋଇ ଶୋଭିନୀ
ବକ୍ଷୋରୁଢ କୁମ୍ଭ ବେନି ଗମନ ଧୀର
ଅବଲୋକନରେ ମଦ-　　ପ୍ରଦା ପ୍ରେ ଜଣା ମୋ ହୃଦ
ନଖାଙ୍କୁଶେ ବିଦାରିତ କରିବ ପର ॥ ୫ ॥

ଅବଶ୍ୟ ହେବ ଶଂଖିନୀ ଗଳ ଶଙ୍ଖରେ ଶୋଭନୀ
ମାଳମାଚ୍ୟୁ ମଣ୍ଡନୀ କି ଅମୃଧାର
ଅଭିଷେକ କୁଚ ଶିବ କରି ଏ ଲଭିଛୁ ଶିବ
ଊର୍ଦ୍ଧ୍ବ ରବ ସ୍ବରତେ ଶୁଣିମି ବାଧାର ॥ ୬ ॥

ଅନୁମାନ ଏ ତର୍କିଣୀ ଚନ୍ଦ ସମ୍ପଦକୁ ଆଣି
ମୁଖ ବିଧୁ ଆଲିଙ୍ଗନ କଚ ତମସ
ଅକ୍ଷି ନଳିନ ମଳିନ ନୋହୁ ପ୍ରଫୁଲ୍ଲ ପ୍ରସନ୍ନ
ସନମତ ନାସା ତାର୍ଷ ଭ୍ରୂ ଅଳ୍ପ ପାଶ ॥ ୭ ॥

ଅଞ୍ଜନ ସିନ୍ଦୂର ମୃଗ- ମଦ ତାମ୍ବୁଳ ସଂଯୋଗ
ଲକ୍ଷାଦି ତନ୍ତରେ ଅଙ୍ଗ ଶୋଭା ବିଶେଷେ
ଆଜ ଲଗାଇ ମୋ ତନୁ ସୁଭୂଷି ଦେବ ସ୍ବତନୁ
ରତି ଜଳଠକୁ ଲଠ ନ ଭାଷି ତୋଷେ ॥ ୮ ॥

ଅନ୍ତେ ଏମନ୍ତ ବିଚାରୁ ପୁରତେ ପ୍ରବେଶ ଚାରୁ
ଲୋଚନ ଶେଷେ ଅନାଇ ମନାଇ କାନ୍ତ
ଅନଙ୍ଗ କିବା ଆସନେ ବସାଇ ବାଣ ପ୍ରସଙ୍ଗେ
କୃପା ଜାତ କରି ସଂହରିଲା ନିତାନ୍ତ ॥ ୯ ॥

ଆସୁଂ ଆସୁଂ ହେମ ଗୋଷ୍ଠ ତରୁଲତା ଆଦି କରି
ଯା ପାଶେ ପ୍ରବେଶ ହୁଏ ମଞ୍ଜୁ ଗଉର
ଆସଇ ଛାଡ଼ି ଯାହାକୁ ନିଜ ରୂପ ହୁଏ ତାକୁ
ଅତ୍ୟର୍ଦ୍ଧ ମଣିରେ ଯଥା ସଉଧ ପୁର ॥ ୧୦ ॥

ଅନୁଭବ ସୁରସିକ ହେଜ ସେ କାଳେ ନାସିକ
ମୋତି ସହ କମ୍ପିବାଛି ଚନ୍ଦ୍ର ଲପନ
ଅରୁଣ ମେଘରେ ବୃନ୍ଦ ପରି ଓଷ୍ଠେ ହାସ ମନ୍ଦ
ତାଟଙ୍କ ଝଲକା ଏକାବେଳେ କମ୍ପନ ॥ ୧୧ ॥

ଅର୍କଜା ମଧ୍ୟଂ ମୃଣାଳ ନିର୍ଜିତ ପରି କମଳ
ବିମଳ ଭୁଜ ମଞ୍ଜୁଳ କାଞ୍ଚିଲା ଯୋଗେ
ଅଙ୍ଗ ଅନଙ୍ଗେ କମ୍ପାଇ କୃଷ୍ଣ ଗଲେ ସୁଖ ପାଇ
ମାଳିକା ମଣ୍ଡି ବାଳିକା ଗୃହେଁ ଅଗ୍ରାଙ୍ଗେ । ୧୨ ।

ଅନଙ୍ଗ ମାର୍ଗଣେ ବିଦ୍ଧ କରି ବେଗେ କୃଷ୍ଣ ହୃଦ
ଫାଡ଼ି ନଖେ ଆପଣାର ନଖକ୍ଷି ବିମ୍ବ
ଅଧର ଶୁଖାଇ ବାନ୍ଧୁ- ଜୀବ ଅଧ କରି ବନ୍ଧୁ
ଶଂକାଜାତ ବେଷ୍ଟିତ କ ଟୋପୀ କଦମ୍ବ ॥୧୩॥
ଅନ୍ଧକୂପେ କଣ୍ଠୀରବ ଦେଖି ଯଥା ନିଜ ବିମ୍ବ
କୁପିତ କମ୍ପିତ ତଥା ଓଷ୍ଠୁ ମନ୍ଦାର
ଅମରଷ ସପତ୍ନୀରେ ସମ୍ବେଗ ନୋହୁଂ ପତିରେ
ଜାଣି ଏ ବାଣୀ ପ୍ରକଟ ହେଲା ବୃନ୍ଦାର ॥ ୧୪ ॥

ଅଛି ଶଙ୍କର ଅନ୍ତରେ ଧୀର ବିବେକର ସ୍ୱତେ
ବିଦଗ୍ଧ ଧୀର ଲଳିତ ନାୟକ ହୋଇ
ଆଗରେ ଓଗାଳି ବାଳୀ ଆଲିଙ୍ଗନେ ସ୍ନେହ ବଳି
ଲାବଣ୍ୟ ପଞ୍ଜରେ ମନ ପକ୍ଷୀ ରଖାଇ ॥ ୧୫ ॥

ଝଟକି ଦେଖି ଚକିତ ବୋଲେ ଏ'ତ ଅନୋଚିତ
ଗାନ୍ଧର୍ବିକା ଗାନ୍ଧର୍ବ ବିବାହ ପ୍ରଥମେ
ଆଚରଣକୁ ନ କରି ଆଶ୍ଳେଷ ପାଦରେ ଧରି
ଚନ୍ଦ୍ରକ ହେଲା ଉଚିତ ଚିତ୍ତ ବିଭ୍ରମେ ॥ ୧୬ ॥
ଅତିମୁକ୍ତ ବେଦିକାରେ କୃଷ୍ଣ ସଙ୍ଗ ରାଧିକାରେ
କମ୍ପିତ କାମ ବିକାରେ କଲେ ବିଜୟ
ଆସନ କରି କୁସୁମ ତିବାର ବିଷ୍ଣୁ ର ନାମ
ସଂକଳ୍ପ ଉତ୍ତର ବାରେ ଶୁଭଇ ଜୟ ॥ ୧୭ ॥

ଶ୍ଳେଷ—

ଅଛନ୍ତି ଭରଦ୍ୱାଜ ଅଗ୍ରସର ଶୁକ ଦ୍ୱିଜ
ଶ୍ରୁତିପ୍ରିୟ ଭାଷେ ଶ୍ଳେଷେ ବନ୍ଧ ବଚନେ
ଆବାହନ ତୀର୍ଥଚୟ ରମଣୀରେ ରମଣୀୟ
ସେ ପ୍ରଭାସ ସରସ୍ୱତୀ ବାଚ ରଚନେ ॥ ୧୮ ॥
ଆପେ ସୁର ତରଙ୍ଗିଣୀ ନର୍ମଦା ଅଟଇ ପୁଣି
ଚରମରେ କୃଷ୍ଣବେଣୀ ମୁଖେ ପୁଷ୍କର
ଅଟଇ ଭାନୁଜା ସୁତ ପ୍ରସିଦ୍ଧ ନାମେ ଖ୍ୟାତ
ସଙ୍ଗମକୁ ଆତୁରିତ କବି ଦୁଷ୍କର ॥ ୧୯ ॥

ଅଷ୍ଟାପଦ କୁଚ କୁମ୍ଭେ ସ୍ତୁ ପତ୍ରାବଳୀ ଆରମ୍ଭେ
ତେଲଯୋଗେ ଶୋଭେ ପାଣି ପ୍ରଦାନ କର
ଅଚ୍ଛ ଦ୍ରବ୍ୟ ଶଂଖଜାଛ ଜଘନ ବେଦୀ ମଞ୍ଜୁଳ
ବରଦ ବରସ୍ତ୍ରୀ ରତ୍ନ ସୁଦୀପ୍ତି କର ।। ୨° ।।
ଆଦ୍ୟ ସାତ୍ତ୍ୱିକ ସ୍ୱେଦରେ ଆଦୃତ ନାଭି ଶ୍ରୁବରେ
ରୋମାବଳୀ ଦଣ୍ଡରେ ଉଦର ଶୋଭନ
ଅଧିବାସେ ଆଦ୍ୟେ ଗନ୍ଧ ଯେ ହରିଦ୍ରା ଅନୁବନ୍ଧ
କଉତୁକ ସୂତ୍ରଧାରୀ ଏ ସର୍ବ ଜନ ।। ୨୧ ।।
ଅଚ୍ୟୁତ ଆନନ୍ଦେ ଦ୍ରାକ୍ଷା ଦେଲେ ତୋଷ ପଦ୍ମଳାକ୍ଷୀ
ନନ୍ଦାଙ୍ଗନା ବନ୍ଦାପନା ଦୁର୍ବା ଅକ୍ଷତ
ଆଳି ଆଳି ହୁଳହୁଳି ମଞ୍ଜରୀ ଗଣ ହର୍ଷ ମିଳି
ଅଷ୍ଟ ସଖୀ ନିଜ ସେବା ସେବଣ ସ୍ଥିତ ।। ୨୨ ।।
ଅବଲୋକି ମୃଗ ଗୃଣ ମୁଖରେ ସୁଖରେ ପୁଣ
ବନ୍ଦାପନାକୁ କି ଦୁର୍ବା ଧରି ଆଗତ
ଅର୍ଘ୍ୟ ମଧୁ ଧାର ଛଳେ ଦେଇ ପାଦପ ପୂଜିଲେ
ଫଳ କୁସୁମ କି ଯଉତୁକ ସେ ଦତ୍ତ ।। ୨୩ ।।
ଆନନ୍ଦରେ ପୁଷ୍ପ ତୋଳି ମଧ୍ୟେ ରାଧା ବନମାଳୀ
ବଜେ ଗନ୍ଧର୍ବ ଉତ୍ସବ ହୁଅନ୍ତେ ଶେଷ
ଆଳି ଦୋଳି ଗୀତ ଗାଇ ତୋଷେ ବଧାଇ ସଧାଇ
ଅଧୋମୁଖେ ସ୍ଥିତ ରାମା ଟୋବନ ଦାଗ ।। ୨୪ ।।
ଅବନୀ ବନ ଆକାଶ ସର୍ବେ ସେକାଳେ ହରଷ
ବୃନ୍ଦା ଅର୍କପୂଜାକୁ ମାଗିଲେ ଆଦେଶ
ଅଭିସାରେ ଏ ନିଶାରେ ହେବ ସୁଖ ମନଷାରେ
ଉଭୟ ଅନଙ୍ଗ ବାଧା ସଂଯୋଗେ ନାଶ ।। ୨୫ ।।
ଉଭାର ବେନି ମନ କଲେ ପରସ୍ପରେ ପୁନ
ରବି ପୂଜ ଠାକୁରାଣୀ ଗତ ଆବାସେ
ଅଚ୍ୟୁତ ଯେ ଗୋଚାରଣେ ସଖା ସଙ୍ଗେ ଅବାରଣେ
ରାଧା ବଂଶୀ ଆସି କ୍ରୀଡ଼ା କରେ ମାନସେ ।। ୨୬ ।।

ଅଦ୍ଭୁତ ସୌନ୍ଦର୍ଯ୍ୟ ତନ   ପ୍ରୀତେ ନେତ୍ର ସୁଖଦାନ
କେତେବେଳେ ବସିବ ମୋ ଅଙ୍କ ଆସନେ
ଅଭିନବ ରତି ଦାନ   ହେବ ମୋ ସୁଖ ନିଦାନ
ଦେଖିବ କାମ ସଦନ କି ବିବସନେ ॥ ୨୭ ॥

ଆଣ୍ଟେରେ ଧରିବ ପରି   ମାରି ସେ ଲଜ୍ୟା ଆବୁରି
କମ୍ପାଇ ମୁଖ ଘୁଞ୍ଚାଇ ନେବ ଚୁମ୍ବନେ
ଅନ୍ତର କୁଚଚୁ ଟେଳି   ତିକ୍ଷ ନଖ ମୁନ ଭାଳି
ଘାତେ ଚମକି ଗୁହ୍ମିଁବ ବନ୍ଧ ନୟନେ ॥ ୨୮ ॥

ଅଧର ଅମୃତ ପାନ   କାଳେ କାମମଦେ ଜ୍ଞାନ
ହାରି ନିଜ ମୋ ଆନନ ଚୁମ୍ବିବ ଭ୍ରମେ
ଅଳକା ନାସିକା ଜ୍ୟୋତି   ମୋତି ସେ ତାରକାପନ୍ତି
ନାଚିବେ ବଧୂ କୋଳରେ କି ସୁଖତମେ ॥ ୨୯ ॥

ଶ୍ଳେଷ—

ଅଳତା ପଦ୍ମରାଗରେ   ପଦକ ହୃଦ ଭାଗରେ
ମଣି ବନ୍ଧ ସଂଯୋଗରେ ସୁଖକୁ ବନ୍ଧି
ଅସ୍ତ କେତେବେଳେ ମିତ୍ର   ହେବ ଏ ଭାବନା ଚିତ୍ତ
ଅନନ୍ତ ଭୋଗରେ ଚିରକାଳ ଏ ରହିବି ॥ ୩୦ ॥

ଅଟେ ସଙ୍ଗ ଦିନକର   ମତେ ଯେଣୁ ଦୀନକର
ମିତ୍ର ହୋଇ ମାରି ଦୁଃଖ ଦେବା ନୋହିତ
ଅବିରତ କାମଦରେ   ଭୁମ୍ବ ଦାର ମୁ ପାଦରେ
ଧରିବାରୁ ହୋଇଅଛୁ କି କୋପ ଚିତ୍ତ ॥ ୩୧ ॥

ଅମର ଶର ବର୍ଷଯୁ   ଜଣାଗଲା କି ଆଶୟୁ
ପଦ୍ମ ମଣି ସଂଶ୍ଳେଷରେ ଦେଖି ମନ୍ତ ଅଙ୍କୁର,
ଅଳି ସରୋଜମା ରମେ   ଶୋଭନ ଅଟଇ ତମେ
ନ ବିନାଶ ହୋଇ ତମ ହତେ ଚତୁର ॥ ୩୨ ॥

ଆପଣ ଯେ ଦଣ୍ଡକ୍ଷଣ ଉଭୟ ହେଉ ନପୁଣ
ଦଣ୍ଡ ରଖି କ୍ଷଣ ଦଅ ସାଧୁଙ୍କ ମାନ
ଆଜ କାମ ତରଙ୍ଗିଣୀ ନ ତରିଲେ କି ତରଣୀ
ବୋଲଇ ଏଣୁ ପୁଷ୍ଟରେ କରିବ ସ୍ଥିତି ॥ ୩୩ ॥
ଆପେ ହୋଇ ବିଘ୍ନକର ଦମ୍ପତ୍ତିକ ବିଘ୍ନ କର
ବିଘ୍ନବସ୍ତୁ ପଣେ ସାକ୍ଷୀ ଯଜ୍ଞ ବେଦୀରେ
ଅଙ୍ଗନା ବଲ୍ଲଭ ନଧୁ- ବନକୁ କାରଣେ ବଧୂ
ଅକାରଣେ ଦଣ୍ଡ ତୁମ୍ଭେ ଯୁବା ବାଜରେ । ୩୪ ।
ଆଳସ୍ୟରେ ରାଧା ରହି ମନ୍ମଥ ବାଧା ବିରହି
ପାଞ୍ଚେ ଘନ ବପୁରେ ମୋ ଧୂତ ବସନ
ଆଜ ଏକାନ୍ତରେ କାନ୍ତ ତେଜ କଣ୍ଠୀଦେଶ କାନ୍ତ
ଅମ୍ବର କରିବେ ମୋତେ ହୋଇ ପ୍ରସନ୍ନ ।୩୫।

—ଶ୍ଳୋକ—

ଉତ୍କଣ୍ଠିତା ଲକ୍ଷଣଂ ଯଥା —

ଉଦ୍ଦାମମନ୍ମଥମହାଜ୍ୱରବେପମାନାଂ
ରୋମାଞ୍ଚକଞ୍ଚୁକିତମଙ୍ଗକମାବହନ୍ତୀମ୍ ।
ଗାଢାନୁରାଗବଚନାଂ ପୁରତଃ ସଖୀନା-
ମୁତ୍କଣ୍ଠିତାଂ ବଦନ୍ତି ତାଂ ଭରତଃ କବୀନ୍ଦ୍ରାଃ[୧] ।

— ଗୀତ —

ଅତଏବ ଉତ୍କଣ୍ଠିତା ନଥିରେ ରସେ ଯୋଷିତା
ହସ୍ତେ ବପୁଶୀରେ କଟେ କର ବନ୍ଧୁର
ଆପେ ଯେଣୁ କୃଷ୍ଣଚନ୍ଦ୍ର ଉଜ୍ଜ୍ୱଳ ରସସେ ସାନ୍ଦ୍ର
ସଂଗେ କରିବ ପରା ନେଇ ସମୃଦ୍ଧ ॥ ୩୬ ॥

---

୧। ଉଦ୍ଦାମମନ୍ମଥୋ ମହାଜ୍ୱର ବେପମାନା
ରୋମାଞ୍ଚ କଣ୍ଟକିତ ମଙ୍ଗତଳଂ ବହନ୍ତୀ
ଗାଢାନୁରାଗ ବଚନଂ ପୁରତଃ ସଖୀନା
ମୁତ୍କଣ୍ଠିତାଂ ବଦନ୍ତି ତାଂ ଭରତଃ କବୀନ୍ଦ୍ରାଃ ।୧। (ପୋଥିପାଠ)

ଅବାରିତେ ଫେଡ଼ନ୍ତୁ ନୀବି        ମୁଁ ନ ନିଷେଧି ପାରିବି
    ଲଜ୍ୟା ସଖୀ ପଳାଇବ ବିବାସ ଦେଖି
ଅନ୍ତର କରି ତୁମ୍ଭଙ୍କୁ        ସଙ୍ଗେ ନେଇଥିବି ତାଙ୍କୁ
    ସେ ଯିବ ଏକାରେ ଫେରି ଆସୁଛେ ରଖି ॥ ୩୭ ॥
ଅବସନେ ଥିବି କେବଳ        ପ୍ରଗାଢ଼ ସମୀପେ ରହିଁ
    ସ୍ତନ ଜଘନତା ଅନାବୃତ ବିଶେଷ
ଆଶ୍ଳେଷ ନିବିଡ଼େ କରି        ଭିଡ଼ିବେ ଯେ ହୃଦେ ଧରି
    ଚୁମ୍ବନ ମଣ୍ଡିବେ ପଦ୍ମ ମୋ ଗଣ୍ଡ ଦେଶ । ୩୮ ।
ଆକରଷଣକୁ କରି        ଥିବେ ଯେ କବରୀ ଧରି
    କଳା ଚଳନରେ ନକ ଥିବ ମୋ ଜ୍ଞାନ
ଆଶ୍ଳେ ପୀଡ଼ିବେ ଉରଜ        ନଘାତ ଶିକ୍ଷ କରିଜ
    କରିବେ ଯେ ମର୍ଦ୍ଦନ ମଦନ ସଦନ ॥ ୩୯ ॥
ଅନାବୃତ ହୋଇ କାମେ        ମୁଁ ଚୁମ୍ବନ ଦେବି ଭ୍ରମେ
    ଅଧରେ କରିବେ ପଦ୍ମ ରଦନ ଘାତ
ଆନନ ନେବି ଘୁଞ୍ଚାଇ        ପାରିବନି କି ବଞ୍ଚାଇ
    ଛାଡ଼ିବେ ପଦ୍ମ ସେ କେତେ ବନ୍ଧ ସଂଘାତ । ୪୦ ।
ଆରମ୍ଭିବାକୁ ଓଲଟି        ରତିକି କରିବେ ଲଟି
    କଟୀ ରଖିବେ ଜଘନେ କରି ଆବୃତ
ଆଲୋକ କେମନ୍ତେ ପତି        ମୁଖ ମୁଁ ନବ ଯୁବତୀ
    କରିବି ସେ କାଳେ କେଶ ପ୍ରଦୀପ ହତ ॥ ୪୧ ॥
ଶ୍ଳେଷ—
ଅଦ୍ଭୁତ ଏ କାଚିଳ ସ୍ୱର        ବାରୁଣି କଲେ ଆଦର
    ବ୍ୟକ୍ତ ସେ ରଙ୍ଗ ସିନ୍ଧୁରେ ପଦ ସ୍ଖଳନ
ଆନନ୍ଦ ରଜନୀ ତରେ        ବୁଧ ଗୁରୁ ଝଲକରେ
    ହସିବାରୁ ପଦ୍ମିନୀ ମୁଦିଲା ନୟନ ॥ ୪୨ ॥
ଅଭ୍ରସଙ୍ଗ ଚନ୍ଦ୍ର ଛଳେ        ଢଳେ ପତଙ୍ଗ ସକାଳେ
    ସକଳଙ୍କ ଆମ୍ଭ କୁଳେ ହେଲା ଏ କଥା
ଆଦିତ୍ୟ ପ୍ରଦୋଷ ସଙ୍ଗ        କନ୍ତୁଷ ଷପୃକୁ ଅଙ୍ଗ
    ସରସ୍ୱତୀରେ ମଜ୍ଜାଇ ଚେଜାଇ ବ୍ୟଥା ॥ ୪୩ ॥

ଅବା ସେ ମୀନ କେତୁର    କାମୀ ଛେଦନେ ଚତୁର
ଶୋଣିତ ମର୍ତ୍ତ୍ୟ ବଦାତ ଏଣୁ ଟେକର
ଆସ୍ୟରୁ ଗନ୍ଧର ଖସି    ପଳାଇ ଅଛୁ କି ଆସି
ଦନ୍ତବ୍ରଣ ଶୋଣଧୋୟେ ପୃଷ୍ଠର ଖାର ॥ ୪୪ ॥

ଅନଙ୍ଗ କ୍ରୋଧ ମନ୍ତରେ    ଭୃଗୁପନ୍ତର ମାନ୍ତରେ
କାମୀ ବଧି ରକ୍ତ କୁଣ୍ଡ ରବି ନର୍ମାଣ
ଆଶା ରଙ୍ଗେ ରକ୍ତମୟ    ଜାଣି ଏ ସନ୍ଧ୍ୟା ସମୟ
ପଣ କରି ତର୍ପଣ କରଇ ପ୍ରମାଣ ॥ ୪୫ ॥

ଅରୁଣ ସଂପୃକ୍ତକରେ    ବାରୁଣୀ ତରୁଣୀ କରେ
ଥିଲା କି ସିନ୍ଦୂର ବେଶ କାଳେ ପତନ
ଅତନୁ ରତି ମୂଦରେ    ଚନ୍ଦ୍ରରାଗ ଗଣ୍ଡୋଦରେ
ତ୍ରିଗୁଳ ମାରେ ପିଚକା ଖେଳ ଯତନ ॥ ୪୬ ॥

ଅନ୍ତର ଜାଣି ବଲ୍ଲଭ    ଦିନପ୍ରିୟା କି ଦୁର୍ଲ୍ଲଭ
ଅନୁରାଗ ଆଲିଙ୍ଗନୁ ରଙ୍ଗ ନିବାସ
ଆଜ ନବ ପୃଷ୍ଠବନ୍ତ    ହେଲା କି ଦିଶା ଯୁବନ୍ତି
ସ୍ନାନବେଶ ସାରି ପିନ୍ଧେ ଅରୁଣ ବାସ ॥ ୪୭ ॥

ଅମ୍ବର କରଇ ରଙ୍ଗ    ଅସ୍ତ ଅଚଳ ପତଙ୍ଗ
ବ୍ୟାଜ ତ୍ରିଗୁଳ ଭାଣ୍ଡେ କି କୁସୁମ୍ଭ ଜଳେ
ଅନାଇ କେ ବରତ୍ନଣୀ    ବୋଲେ ଅସ୍ତ ଭଜ ପୁଣି
ଉଦୟ ହୁଅଇ କେଉଁ ସୁକୃତ ବଳେ ॥ ୪୮ ॥

ଆଖଣ୍ଡଳ ଭୂତ ଯଥା    ବଳରି ଅଦୃଷ୍ଟେ ତଥା
ଅନ୍ଧକାର ଲୋକାଲୋକ ଅଚଳୁ ଆସି
ଅଧିକାର କରି ଦିବ    କବଳ କରନ୍ତା ରବି
ଦମ୍ପତି ସୁଖଦ ହୋଇ ସର୍ବଦା ନିଶି ॥ ୪୯ ॥

ଆପେ ବୋଲଇ ତରଣୀ    ବୁଡ଼ିଗଲେ ହେଁ ତରଣୀ
ବରତ୍ନଣୀ ନ ଚାରଇ କାମନଘାରୁ
ଆଳି ବୋଲେ ଔଷଧୀଷ    ବୋଲଇ ରଜନୀ ଈଶ
ମାରବ୍ୟାଧି ବୃଦ୍ଧି ଯଥା କରଇ ଖରୁ ॥ ୫୦ ॥

ଆଲୋକ କୋକନଦରେ        ସାମ୍ୟ ଏ କୋକନଦରେ
ଦେଖେ ଅରୁଣୀ ନଦରେ ଆମ୍ଭଙ୍କୁ ଭ୍ରାନ୍ତ
ଅଶ୍ରୁ ପୂରିତ ଲୋଚନେ        ନାଦ ବ୍ୟାକୁଳ ବଚନେ
ଚଞ୍ଚୁ ଚୁମ୍ବନ ରଚନେ ବଲ୍ଲଭ ବାଳୀ ।। ୫୧ ।।

ଅଙ୍କେ ବସାଇ ଯୁବତୀ        ସ୍ୱଦେଶ ଗମନେ ପତି
ଯେମନ୍ତେ ଆକୁଳ ମତି କରେ ଗମନ
ଅନ୍ତର ସେପରି ଚନ୍ଦ୍ର        ବୋଲେ ତବ ରୂପ ଚନ୍ଦ୍ର
ଅସ୍ତ ହୋଇ ମିଁସଦୃଶ କଲେ ବ୍ୟମନ ।। ୫୨ ।।

ଆଲୋକ କୁମୁଦ ସମା        ପ୍ରଦୋଷ ଯାର ସୁଷମା
ମୁକୁଳ ଛଳେ ଈଷତ ହସିଲ ମୁଦେ
ଅନିଳ କରେ ସେ ଆସି        ବାସ ହରନ୍ତେ ସୁକେଶୀ
ଅଳି ଲୋଚନ ଅପାଙ୍ଗେ ଗୃହେଁ ବିନୋଦେ ।୫୩।

ଅଚ୍ୟୁତ ଏ କାଳେ ବାଳ        ବସ ଜାଳ କରି ମେଳ
ବ୍ରଜାଙ୍ଗନା ବୈଂଶୀ କଳ ବଶେ ମୋହିତ
ଆଖେଟ ଯଥା ବଧିକ        ଶବ୍ଦନେ ରସନାଧିକ
ହୃଦେ ଧରିବାରୁ ପୀଡ଼େ ହର ଅଦ୍ଭୁତ ।। ୫୪ ।।

ଆଶ୍ରେ କଳ ପୂର୍ବଦ୍ୱାର        ପଶ୍ଚିମେ ହେଲେ ବାହାର
ପ୍ରଭାତେ ସାର ସଂକୋଚୁ ଅଳି ସଦୃଶ
ଅଛନ୍ତି ସେ ପ୍ରିୟ ନର୍ମ-        ସଖା ସଙ୍ଗତେ ଉତ୍ତମ
ବୃନ୍ଦାବନ ଶୋଭା ତମ କୁଞ୍ଜେ ପ୍ରବେଶ । ୫୫ ।

ଅଟବୀ ଦେବୀ ଯେ ବୃନ୍ଦା        ସ୍ୱଗୁଣ ଯେନ ସାନନ୍ଦା
ମଣ୍ଡିଛନ୍ତି ବାଳ କେଳି କୁଞ୍ଜ ମନ୍ଦିର
ଅଭ୍ର କି ରଜନୀ କର        କରିଣ ରଜନୀ କର
ଅବନୀ ସଜନୀ କର ଯୋଗେ ରୁଚିର ।। ୫୬ ।।

ଅମ୍ବୁଦ ପଦ୍ମ ପମାର        ସାର ବରଷେ ସେ ସାର-
ଜାତୀମାନେ ଅଙ୍କୁରର ବାସନା ହର
ଅତି ମୁକ୍ତ ଆଦ୍ୟ ପୃଷ୍ଠ        ଯେ ସୁବାସିତ ଅନନ୍ତ
ତଳପରେ ତଳପରେ ସୁଷମା କରି ।। ୫୭ ।।

ଅଣିଲେ ପୁଷ୍ପ ପଲଙ୍କ ଅକ୍ଷି ହେବ ଅପଲକ
ପୁଷ୍ପ ଶେଯ ଉପଧାନ କର ବିଧାନ
ଆବରଣ ଚନ୍ଦ୍ରାତପ ମଣ୍ଡିଣି ଚହ୍ୱଁରେ ପୁଷ୍ପ
ମୋତି ଝାଲର ଲୋକନେ ଅନୁସନ୍ଧାନ ॥ ୫୮ ॥

ଅରୁଣ ଅସିତ ସିତ ପୀତ ଫୁଲେ ସେ ଦପିତ
ହୀରକ ପ୍ରବାଳ ଇନ୍ଦ୍ରନୀଳ କି ହେମେ
ଅନେକ ବନ୍ଧ ପିତୁଳା ପଟ ସୁଷମା ଅତୁଳା
ଗୃହପାଶେ ବିଲମ୍ବିତ ବିତାନ କମେ ॥ ୫୯ ॥

ଅବଦାତ କାଚ ଦୀପ ସ୍ଫଟିକବନ୍ତ ଦେଦୀପ୍ୟ
ମଧୁ ସିଠାବର୍ଣ୍ଣ ଜଳେ ତଥି ଉଦରେ
ଆଲମ୍ବିତ କଲେ ଗୃହ ଗୃହଦ୍ୱାରେ ପରଗୃହ
ଶୁଚି ମୂର୍ତ୍ତିବନ୍ତ ସର୍ବୋପରି ଆଦରେ ॥ ୬୦ ॥

ଆମ୍ର ଆଦି ପକ୍ୱ ଫଳ ଝରାମାନଆ ସୁମାଳ
ଅତର ପମର ଗନ୍ଧ ତାମ୍ବୁଳ ଥୁଆ
ଆଳପ୍ୟ କରେ ସୁରଭି ସୁମନ ଯୋଗେ ସୁରଭି
ସୁରଭି ସୁରଭି ପାନ ପରଖ ନୁଆ ॥ ୬୧ ॥

ଆମୋଦ ମାର ଝରରେ ସୁବ୍ୟଜନ କେତକୀରେ
ଉଦ୍ଦୀପନ ପିକ କୀରେ କାନନେ ଡାକେ
ଆସି ପୁଷ୍ପ ଖଟେ ହର ଏ କାଳେ ବିଳମ୍ବେ କର
ପୁଷ୍ପ ଶେଯ ମଧ୍ୟେ ସ୍ଥିତି ଭାବ ସଂଶକେ ॥ ୬୨ ॥

ଆଶୁ ଗଜ ପ୍ରତ୍ୟକ୍ଷରେ ଧୀରେ ପୁଷ୍ପ ଗବାକ୍ଷରେ
ଆସେ କାମାଶୁଗ ପଣ କୁମ୍ଭେ ପରତେ
ଅଙ୍ଗେ ଲାଗି ଇଚ୍ଛି ଭାଷି ମତ୍ତ ବନପ୍ରିୟ ଭାଷୀ
କୁଚ ଚମ୍ପୁରେ ଚରଣ ଇଛି ଆରତେ ॥ ୬୩ ॥

ଆନ କଣ୍ଠ ରବ ଶୁଣି ମଣିଲେ ଆସେ ରମଣୀ
ଭ୍ରୂଲୁ କନ୍ଧ ଯୁଗ କୋଟି କରେ ମନ୍ମଥ
ଅନେକ ପ୍ରକାରେ ରତି ଆକାଙ୍କ୍ଷା ହେବାରୁଂ ମତି
ଶରେ ପୂରିତ କରଇ ହୃଦୟ ପଥ ॥ ୬୪ ॥

ଆଳି ଠାକୁରାଣୀ ବେଶ ରଚନେ ହୋଇ ଆବେଶ
ବନ୍ଧ ପରିହାସଭାଷେ ଭାଷେ ରମଣୀ
ଅତନୁ ଲାସ୍ୟ ଲାସିକା ହୋଇ ଯେ ଆସ୍ୟ ରସିକା
ନର୍ତ୍ତଇବ ଏ ନୂତନେ ନାସିକା ମଣି ॥ ୭୫ ॥

ଅଣ୍ଟି କେ ବୋଲେ ମର୍ଦ୍ଦଳ କୁଚମେଳ ହୋଇ ତଳ
ବାଜବ କଙ୍କିଣୀ ତାଳ କ ମନୋରମେ
ଆହୁରି କେ ବୋଲେ ବେଣୀ ନାଚବ ବାଦରେ ଶ୍ରୋଣି
ଏ ରସ ରଙ୍ଗିଣୀ ରଙ୍ଗ ଭୂମି ଚରମେ ॥ ୭୬ ॥

ଅଞ୍ଜନ ରଞ୍ଜି କେ ବୋଲେ ଅରୁଣ ଅଧରୁ ଥିଲେ
କୃଷ୍ଣ ଅଙ୍ଗ ଅନୁରୂପ ହେବ ଏ କର
ଆନ କେ ବୋଲେ ସୁତନୁ କୁଙ୍କୁମ ଯୋଗେ ସେ ତନୁ
ଭ୍ରମର କିଂଜଳ୍କ ଛବ ନେମ ଯେ ହର ।୭୭।

ଅଧରୁ ଅମୃତ ଦେଇ ମଘବା କର ବସାଇ
ଭୁଜ ହ୍ରଦ ତନୁ ଗନ୍ଧ ଉରଜ ମେରୁ
ଆନ କେ ବୋଲେ ସିନ୍ଦୁର ମାଳ ବପୁରେ ପଡିର
ବିରାଜ କରିବ ମାଳ ଲୋହିତ ଗୃରୁ । ୭୮ ॥

ଆମ୍ଭ ସଜନୀ ଗଢ଼ିଲ ଛାଣ ବିଭୂତି କ'ହର
ଦିଗବାସ ହୋଇ ଗନ୍ଧ ବଧୂ ମଣ୍ଡନ
ଅବଶ୍ୟ ବୃଷାରୋହଣେ ରହି ଏ ଶୋହିବ କ୍ଷଣେ
ବଧିରେ ହେବ ଦର୍ପକ ଦର୍ପ ଖଣ୍ଡନ ॥ ୭୯ ॥

ଅଧିକେ କଟୀ ଡମ୍ବରୁ ରଚିବ ନେହ ଚମରୁ
ଚଞ୍ଚଳ ଭାବରେ ବିରାଜବ ସରସେ
ଆନ ଖାତ କର ଭୂରୁ ପରଶୁ ଲୀଳାରେ ଖରୁ
କାମପ୍ରଦା ହେବ ନଷ୍ଟେ ଅତନୁ ରସେ । ୮୦ ।

ଅପସରି ଗଲେ ହାରି ଛାଡ଼ି ନ ଦେବୁ କଟୋରି
ଅଙ୍କେ ବସାଇଲେ ଫେରୁଛୁଟି ବେଗେ
ଅଧୋମୁଖେ ରହି ସ୍ତନ ଗିରିରେ ନେହ ଖଞ୍ଜନ
ଖେଳାଉଥିବୁଟି ଅଭିନବ ସରାଗେ ॥ ୮୧ ॥

ଅଙ୍ଗ ମାତ୍ର ଘନ ଦେଖି ପିକ ବଚନକୁ ସଖୀ
ମୂକ ମାତ୍ର ଶିଖାଇବୁ ଉଚିତ ମାର୍ଗ
ଆନନ ଦ୍ୱିଜରାଜରେ ଦାନ ଚୁମ୍ବନ ବ୍ୟାଜରେ
ଦେଲେ ଘୁଞ୍ଚାଇବୁ ହେଲେ ସେ ସୁଖବର୍ଗ ।୭୨।

ଅଧର ନବୀନ ଦଳ ଅଳ୍ପ ମାଳତୀ ମୁକୁଳ
ହାସ ହେବ ଘନରସ ବରଷା କାଳେ
ଆନ ବୋଲେ କେ ଶିଖାଇ ବୁଦ୍ଧି ପାରିବ ରଖାଇ
ମଦନ ମାଦକେ ଜ୍ଞାନ ହାରିବା ବେଳେ । ୭୩।।

ଶ୍ଳେଷ —

ଆଗତ ଏ କାଳେ ଦୂତୀ ବୋଲଇ ତାଙ୍କେସୁ ଦୁଃଖିତ
ଅମ୍ବର ଶ୍ରୀଧର ଅନ୍ତେ ତୋ ଶୋଭା ରତେ
ଅଛି କାମଶର ତଳ୍ପେ ମକର ଆଗତ କଳ୍ପେ
ହେ ହଂସ ଗମନା ଦେଖି ପିବୁ ପରତେ ।୭୪।

ଅଭିସାରିକା ବିରହ ତପତ ଶ୍ୱାସ ନିବହ
ତାପିତ କରି ତପନ କଲା ନିସ୍ତେଜ
ଅହରମଣି ସଙ୍ଗରେ ବାରିଧି ବାରି ବ୍ୟୂହରେ
ବୁଡ଼ିବାରୁ କାନ୍ଦିଲେ ପତଙ୍ଗ ସମାଜ ।। ୭୫ ।।

ସମାନସ ଚନ୍ଦ୍ର ପରି କେବଳ ପ୍ରୋଷିତା ନାରୀ
ଆନନ୍ଦ ଏ କାଳେ ସର୍ବ କାମୀ କାମିନୀ
ଆତୁରତ କାମ ରସେ ଅଳପ ସମ୍ଭୋଗ ବଶେ
ବିଳମ୍ବରେ ଗଲେ ହେବୁ କ୍ଷୀଣ ଯାମିନୀ ।୭୬।

ଆଲିଙ୍ଗନ ଦଶ ନଭ କୃଷ୍ଣରେ ଦଶଇ ଶୋଭ
କଳାପୂର୍ଣ୍ଣ ଦେଖି ରହୁ କଳା ନ ଇଚ୍ଛି
ଅବଲମ୍ବେ ଚଳ କୁଞ୍ଜ ପର୍ବ କୃଷ୍ଣ କଳାପୁଞ୍ଜ
ଉଦ୍ଧବାରୁ ବେନି ଅର୍ଥେ ଶୋଭା ବହୁଛୁ ।୭୭।

ଅଭିମନ୍ୟୁ ଗୋଷ୍ଠେ ସ୍ଥିତ ନିଦ୍ରାରେ ଅଚେତ ମାତ
ଛଦ୍ମେ ସଦ୍ମେ ରଖି ସଖୀ ହେଲେ ବାହାର

ଅନ୍ଧକାର ଆଭରଣ ସର୍ବାଙ୍କ ଯୋଗ୍ୟ ଶରଣ
ନଗ୍ରେଳ ଅଞ୍ଜନ କେଶ ମାର୍ଗ ଦ୍ୱାର ।। ୭୮ ।।
ଅମ୍ବମଣି ଦୀପମଣି ସଭୟ ବସେ ରମଣୀ
ଆଶ୍ରୟ କରନ୍ତି ଲତା ତରୁ ଉଦ୍ଦାଡ଼
ଆସି ବୃନ୍ଦା ଖଣ୍ଡେଦୂରେ ପାଟଗୁଣ୍ଠି ନେଲେ ସଙ୍ଗରେ
କୁଞ୍ଜଦ୍ୱାରେ ମିତ୍ର ଜାତ ଲକ୍ଷ୍ୟା ନିବଡ଼ ।। ୭୯ ।

ଶ୍ଳେଷ—

ଅମ୍ବୁଧି ସେ ସୁଷମାରେ ଯୁତ ହୋଇ ମର୍ଯ୍ୟାଦାରେ
ନ ଲଂଘଇ କୁଞ୍ଜଦ୍ୱାରେ ହୋଇଣ ସ୍ଥିତ
ଅସ୍ତ୍ର ସାତ୍ତ୍ୱିକେ ପ୍ରଳୟ ଜନତନ୍ତୁ କୁବଳୟ-
ଦୃଶୀ କ ବୟସୀ ବନ୍ଧୁ ପାଣି ସଂଯୁତ ।। ୮୦ ।।
ଅବସର ପାଇ କୃଷ୍ଣ ଲଘାଇଲେ କର ବାଣ
ବଳକଲେ ବୃନ୍ଦା ଏଏ କାଳେ ଉଚିତ
ଅଭିନବ ରତିଦାନେ କୃପଣ ଅଙ୍ଗ ବିଧାନେ
ନ ଲେଖିବ ଲକ୍ଷ୍ୟାସନେ ଆଛନ୍ତି ଶଠ । ୮୧ ।
ଅମୃତାଂଶୁ କଳାମାନ ଦିବସେ ଦିବସେ ଆଣ
ଉଦୟ ଦିନ କୃଶ କର ହେ ସର୍ବଦା
ଅଙ୍ଗେ ବ୍ୟାଧି ଅଉଷଧି ଅନ୍ତମାନ ରସବୋଧି
ବିଷମ ନ ଜାଣି ହେବ ସ୍ତୋକ ରସଦା ।। ୮୨ ।
ଉପସନ୍ନ ଏତେ କନ୍ତ କୁସୁମ କବାଟ ଦେଇ
ଅସ୍ତ୍ରଭରେ ଅଷ୍ଟସଖୀ ରହିଲେ ଜଗି
ଆପ ପାଦପ ମୂଳକୁ ଦିଅନ୍ତେ ଶାଖା ଦଳକୁ
ତୋଷ ଯଥା ତଥା ହେଲେ ଏ ସୁଭାଗୀ । ୮୩ ।

ଅଚ୍ୟୁତ ବଚନେ ରାଧା ଦେଖି କାମଶରେ ବାଧା
ଆଶ୍ଳେଷ ଛଳ ତଣ୍ଡୁଳ ବସାଇ କୋଳେ
ଆଶ୍ଳେଷେ ଭିଡ଼ି କୋମଳାଙ୍ଗୀ ଉରରେ ଉରଜ ସଙ୍ଗୀ
ଶତପଦ୍ମ ସୂତ୍ର ଯିବ ମଧ୍ୟେ ନ ଗଲେ ।। ୮୪ ।।

— ଶ୍ଳୋକ —

ତଳ୍ପେ ରତି ତଦୁପଗୂହନ କେଳି ମୂଚ୍ଚୈଃ
ବକ୍ଷୋରୁହାଗ୍ରଂ ମିଥୁନଂ ଘଟୟେତ ଗାଢ଼
ଗାତ୍ରାନ୍ତରକ୍ତ ପରିବର୍ଦ୍ଧିତ ଗୌରକେଶଃ
ତତ୍କାରିତଂ ମୁନିଗଣୈସ୍ତି ଳତଣ୍ଡୁଳାଖ୍ୟମ୍ ।

— ଗୀତ —

ଅସିତ ଘନେ ବିଦ୍ୟୁତ ପରି ସୁମା ସକର୍ମିତ
ତଳ ଦଳ ଦଳ କିବା ମନ୍ଦ ବାତରେ
ଅଙ୍କରୁ ଖସି ଧରଣୀ ଶଯ୍ୟାରେ ବସି ତରୁଣୀ
ଚୁମ୍ବନେ କମ୍ପାଇ ମୁଖ ଲଜ୍ଜ୍ୟା କାତରେ ।୮୫।

ଅଧୋମୁଖେ ବିମ୍ବାଧର ଅଚ୍ୟୁତ ଚିବୁକ ଧରି
ଚନ୍ଦ୍ରମୁଖୀ କାମ ତମ ନାଶେ କୃପାନ୍ତୁ
ଅଧରେ ଯେ ଅନୁକ୍ଷୋଣ ଲେପ ଇନ୍ତେ ଆଦ୍ୟେ ନାଶେ
ଯଶାବୃତ ଅଧିଶ୍ୱାସ ମଧ୍ୟେ ଯେ ପାନ୍ତୁ ।। ୮୬ ।।

ଅମ୍ଳୋନ୍ଦୁଦ ଆଦ ସାଧୁ ଜଣିଛୁ ଲପନ ବିଧୁ
ଗୋପିତ କରାଇ କୁଚ ଗିରି ବସରେ
ଅନୋଚିତ ଦେଖି ହାସ କରିବେ ଜନ ଅବଶ୍ୟ
କାମ ତମେ ଉରି ଲୁଚେ ଗୃହ ପରି ରେ ।୮୭।

ଅତଳ ଉରଜ ହୃଦେ ବନ୍ଧୁ ମୁଁ ମଜ୍ଜିଛୁ ଖେଦେ
ନ ଆଶ୍ୱାସୁ ଦେଇ ଓଷ୍ଠ ସୁଧା ଅଶନ
ଅଳପ ରତି ଚେତନ ଦେବା ନ କରୁ ଯତନ
ଆସ୍ୟ ବିଧୁ ନୋହୁ ମୋ ବିଷୟେ ପ୍ରସନ୍ନ ।୮୮।।

— ଶ୍ଳୋକ —

ପ୍ରଥମମିହତବୈବତତ୍ତ୍ୱ ପୃବପୁଷ୍ପାଦଦାଶୈଃ
ମୃଦୁମଧୁରକରୈଭ୍ର ଯୋଜୟେତ୍ ସନ୍ଧିଧାନେ

କରତଳମାନୁଷାନାଂ ଭ୍ରାମସ୍ୱେଚ୍ଛଶୃଙ୍ଗସ୍ୟା
ସୁରତମଦିତଚୂର୍ଣ୍ଣଂ ମନ୍ଦମାଳିଙ୍ଗନାଂ ତ ।
(ଇତି ଶୃଙ୍ଗାରତିଳକେ)

— ଗୀତ —

ଅବାଣୀ ହୋଇଲେ ପୁନ                    ଜଡ଼ ଆଶ୍ରୟ ବଚନ
ସୁବାସି ସୁବାସ  ହର  ହରିଲେ ବଳେ
ଆଶ୍ରୟ ନ ପାଇ କାନ୍ତି                    ମନ୍ଦାକ୍ଷ ନୟନେ ରହି
ତହିଁ ପୁଣି ଦେଖେ ପୁରେ ପ୍ରଦୀପ ଜଳେ ॥ ୮୯ ॥

ଅକ୍ଷି ଗଣ୍ଡ ସୁକପୋଳ                    ଚୁମ୍ବନ ଦାନ ବିପୁଳ
ଲଭି ପୁଲକିତ ଚିର ଦାରିଦ୍ର୍ୟ ହତ
ଅଧର ସାଗରଜ୍ଞରେ                    ଘାତ ବହନ୍ତେ ଦନ୍ତରେ
ଦର ଲଭି ସେ କ୍ଷତରେ ଅମୃତ ଦତ୍ତ ॥ ୯୦ ॥

ଅନ୍ତ କୁଟୀଳ ଯେ ଶଂଖ                    ଗଳକକ୍ଷ ପରତକ୍ଷ
ଲଭିଲେ ଶିକ୍ଷ କରଜ ଘାତ ଜନିତ
ଉଚ୍ଚ ସଦବୃତ୍ତ ସ୍ତନ                    କି ହେତୁ ଗାଢ ମର୍ଦ୍ଦନ
କରଜ ପୀଡ଼ନ ପୁନ ବେନିର ଚତ୍ର ॥ ୯୧ ॥

ଶ୍ଳେଷ—

ଆକରଷଣ କୁନ୍ତଳ                    କର ପୀଡ଼ା ପରବଶ
ବନ୍ଧନୁ ଫିଟିଲେ  ଦେଇ ମାଳ ମଣ୍ଡନ
ଅଞ୍ଜନ ଗଣି ଦଳିତ                    ପରଶେଷେ ବଳନତ
କାମକଳା ଭଣ୍ଡାର କି ଫିଟି ଶୋଭନ ॥ ୯୨ ॥
ଆନ୍ତର ସୁହୃଦ ଯେନ୍ତ                    ମୁଷ୍ଟି ତାଡ଼ନକୁ ସେନ୍ତ
ପାଇଲା ଏ କଥା ଚିତ୍ର ନୋହେ କି ପୁନ
ଉତ୍ତନବ ଗୂଢ଼ ରତି                    ମନ୍ତ୍ରକୁ ଯେଣଲା ଶ୍ରୁତି
ଫୁଙ୍କିବା ବ୍ୟାଜରେ ହୋଏ ସେ ଅନୁମାନ ॥ ୯୩ ॥

— ଶ୍ଳୋକ —

ଆଶ୍ଳେଷଂ ପ୍ରଥମଂ କୁର୍ଯ୍ୟାଦ୍ଦ୍ୱିତୀୟଂ ଚୁମ୍ବନଂ ତଥା
ତୃତୀୟଂ ନଖଦାନଂ ଚ ଦଂଷ୍ଟ୍ରାଘାତଚତୁର୍ଥକଂ
ପଞ୍ଚମଂ କ୍ଷୋଭଣଂ ପ୍ରୋକ୍ତଂ ଷଷ୍ଠଂ ପ୍ରହରଣଂ ତଥା
ସପ୍ତମଂ କଣ୍ଠଶବ୍ଦଂଚ ବନ୍ଧନଂ ଚାଷ୍ଟମଂ ରତି ।
(ଇତି ନାଗର ସର୍ବସ୍ୱେ)

—ଗୀତ—

ଆକରଷିଛୁ ବାଣ ଶଶୀ    ରାଜା ବଦାଦନ୍ତୁ ଆସି
ନାଭିକ ଏ ପାଞ୍ଚେ ପାଞ୍ଚ ନଖେ ଘଜିଡ଼ି
ଅଧିକେ ରମ୍ଭା ଜଘନ    ହାପଲ ବାଜେ କମ୍ପନ
ବମଦ୍ଧନେ କମ୍ପେ ମାର ସଦନ ନାଡ଼ି ॥ ୯୪ ॥

ଶ୍ଳେଷ—

ଆଶ୍ଚର୍ଯ୍ୟ ନୋହେ କ ପୁନ    କର୍ଣ୍ଣ ରସନା ମଣ୍ଡନ
ଦ୍ରୋଣପୁତ୍ର ବାଣୀ ମୁକ ଚଣ୍ଡ ଗର୍ଜନ
ଅର୍ଜ୍ଜୁନ ମନ୍ଦହାସରେ    ଶିଖଣ୍ଡି କେଶ ପୃଷ୍ଠରେ
ଗାଙ୍ଗେୟ ଅଙ୍ଗରେ ପୂର୍ଣ୍ଣ କ୍ଷତ ରଚନ ॥ ୯୫ ॥
ଅଦ୍ଭୁତ ତନ୍ତ୍ରଂ ବଦ୍ଧତ    ଶୋଷି କୁମ୍ଭେ ପୀଡ଼ା ଦତ୍ତ
କନ୍ୟା ମିଥୁନରେ ବଧୁ ଉଚେ ବଳସେ
ଅରୁଣ କୋଳେ ରୁଧିର    ବ୍ୟକ୍ତରେ ଦଶେ ରୁଚିର
ଶୂଦ୍ର ଚଳି ଗୁରୁ ପୀଡ଼ା ହରଇ ଲେଶେ ॥ ୯୬ ॥

— ଶ୍ଳୋକ —

ମୂର୍ଚ୍ଛାନିମୀଳନଂ ଦୃଷ୍ଟ୍ୟୋଃ ଚ୍ୟୁତକାଳସ୍ୟ ଲକ୍ଷଣମ୍ ।
(ଇତି ନାଗରସର୍ବସ୍ୱେ)

ଶ୍ଳେଷ—

ଅକ୍ଷି କମଳ ମୁଦ୍ରିତ    ପ୍ରକାଶ ହୋଏ ବନ୍ଦିତ
କୃଷ୍ଣଚନ୍ଦ୍ର ହୋଇ ଇନ ଭାନୁ ସୂଚାଏ

ଆଲୋକେ କଟୀ ନୃସିଂହ            ଉପଜା ନାଦ ନବଙ୍କ
        ହିରଣ୍ୟ ତନୁ ତମକେ ନଖ ଘାତରେ ।। ୯୭ ।

ସୁଖ ସାତ୍ତ୍ୱିକ—            —ଶ୍ଳୋକ—

ସ୍ମରଣଂ ସଙ୍ଗମଂ ଚୈବ ପ୍ରିୟସ୍ୟାଲୋକନଂ ତଥା
ହେତୁ ସ୍ତସ୍ୟ ସମାସାଦ୍ୟ ସାତ୍ତ୍ୱିକଃ ସଂପ୍ରବର୍ତ୍ତତେ
(ଇତି ଶୃଙ୍ଗାରତିଳକେ)

— ଗୀତ —

ସ୍ତମ୍ଭସ୍ୱେଦ—

ଆମ୍ବେଶ୍ୱର ବାହୁବନ୍ଧେ            ନିଶ୍ଚଳ କେଳି ପ୍ରବନ୍ଧେ
        ସ୍ୱେଦ ଛଳେ ମକରନ୍ଦ ପଦ୍ମ ମା ଜାତ

ରୋମାଞ୍ଚ ସ୍ୱରଭଙ୍ଗ—

ଅଙ୍ଗେ ଘନ ନଖ ଯୋଗେ            ରୋମାଞ୍ଚ କଦମ୍ବ ବେଗେ
        ସ୍ଫୁଟ ସ୍ୱରଭଙ୍ଗ ପିକ ବଚନ ଖ୍ୟାତ ।। ୯୮ ।।

ବେପଥୁ ବୈବର୍ଣ୍ଣ୍ୟ—

ଅନଙ୍ଗ ବେପଥୁ ବଶେ            ସୀତ୍କାରେ କୋକରେ ବଶେ
        ବୈବର୍ଣ୍ଣ୍ୟ ମୁଖଚନ୍ଦ୍ର କି ତମସ୍ତୁ ମୁକ୍ତ
ଆନନ୍ଦ ଶ୍ରୁତି ନୟନେ            ଅଚେତ କଳା ଚଳନେ
        ପ୍ରଳୟ ଯେନ ଏ ସୁଖ ସାତ୍ତ୍ୱିକ ଉକ୍ତ ।। ୯୯ ।

ରୂପକ ଶ୍ଳେଷ—

ଅନଙ୍ଗ ଆଜିରେ ବନ୍ଧ            ବ୍ୟୂହ ବିଧାନ ସମୃଦ୍ଧ
        ଧ୍ୱଜଧ୍ୱଜ ଚକ୍ର ସଂବୃତ୍ତିରେ ଶୋଭନ
ଅସ୍ତ୍ର ଆବେଷ୍ଟନ ପୁନ            ଶାରଦର୍ପ ବିନାଶନ
        ଶୀଘ୍ରଧ୍ୱଜ ସେ ସଂଙ୍କ ଅଙ୍ଗ ମର୍ଦ୍ଦନ ।। ୧୦୦ ।।
ଆବେଷ୍ଟନ ସେ ଗର୍ଦ୍ଦଭ            ଦାସ୍ତିକ ଆଦ୍ୟ ବୃଷଭ
        କର୍ଦ୍ଦମକ ଉତ୍ପ୍ଳବନ ସେ ଶୌନକ ମାର୍ଜାର

ଅଦ୍ଭୁତ ଏ ଉପମାନକ — ଷଡ଼ଭୁଜ ସୈନ ବ୍ୟାପକ
ବନ୍ଧ ରୂପକ ଶ୍ଲେଷରେ କାମ ସମର ।। ୧୦୧ ।।

ଅଧିକେ ଶୃଙ୍ଗାର ଘନ — କାଳ ହେବାରୁ ଜନନ
ସର୍ବତୋ ମୁଖ ବର୍ଦ୍ଧନ ମଣ୍ଡୁକ ଖ୍ୟାତ
ଅନେକ କ ଉପାସନା — ଭେଦରେ ହୋଏସେ ଅର୍ଚ୍ଚନା
ମନ୍ମଥ ପ୍ରିୟ ଗଉରି ପ୍ରିୟ ବ୍ୟକତ ।। ୧୦୨ ।।

ଆତୁର ଶଙ୍କର ପ୍ରିୟ — ଚନ୍ଦ୍ରାଭରଣେ ଉଦୟ
ରମଣୀୟ ବେଢ଼ ଅର୍ଥେ କୁଚ ଈଶାନ
ଅଧୋମୁଖରେ କାମିନୀ — ଶୋଭନ କବା ମାନନୀ
କର୍ଣ୍ଣାଭରଣ କୃତରୁ ବଗତ ମାନ ।। ୧୦୩ ।।

ଅତନୁ ଏକାକୀ ହୋଇ — ଫୁଲ ଚାପେ ଗୁଣ ଦେଇ
ବାଣ ପ୍ରହାରି ପଳାଇ ଦେଖି ଏ ହାନ
ଅପସର ପାଇ ଆସେ — ପୁନ ପୁନ ଜତ ଆଶେ
କୋପ ସେ ବକାର ଛଳେ କର୍ମ ଆହ୍ୱତ ।।୧୦୪।।

ଅତନୁ ଅବଶ ତନୁ — ପ୍ରେମ ସମ୍ବରେ ସୁତନୁ
କେ କାହାକୁ ବାଧିବାରେ ସମର୍ଥ ନୋହୁ
ଅମ୍ବରେ କଲେ ଆଦର — ପୁଷ୍ପବନ୍ତର ପ୍ରକାର
ହଗବାସ ଅଧିକାର ମୁଞ୍ଚିଲେ ସେହୁ ।। ୧୦୫ ।।

— ଶ୍ଳୋକ —

ଅଙ୍ଗେ ସ୍ୱେଦଶ୍ଲଥତ୍ୱଂଚ କେଶବସ୍ତ୍ରାଦ୍ୟସଂବୃତ୍ତଂ
ଜାତେ ରତିସୁଖେ ନାର୍ଯ୍ୟଃ ବଗ୍ରମେଷା ଚ ଦୃଶ୍ୟତେ ।

— ଗୀତ —

ଅଙ୍ଗ ସ୍ୱେଦ ଅବାରିତ — ମଦନ ବଳକାରିତ
ପୁଷ୍ପ ଗବାକ୍ଷରେ ଆସେ ସୁଗନ୍ଧ ଶୀତ
ଅସ୍ତବ୍ୟସ୍ତ କେଶପାଶ — ବନ୍ଧନ କାଳେ ଈକ୍ଷଣ
ସଦ୍ଭୋଦରେ କାଳନ୍ଦୀ ଅଦ୍ଭୁତ ସଂସ୍ଥିତ ।।୧୦୬।।

ଅଙ୍କେ ବସାଇ ଅଚ୍ୟୁତ  ବାଣୀ ଶୁଣିବାରେ ରତ
 କେତକୀ ବ୍ୟଜନେ ବିଞ୍ଚି କର ଚିବୁକେ
ଅନୁକମ୍ପା ଚକ୍ଷୁଣକୁ  କରଣ ଚନ୍ଦ୍ରହାସକୁ
 ଅବ୍ୟକତ କଲବା ଜଡ଼ିତ ଗଧିକେ ॥ ୧୦୭ ॥

ଅଟେ ସେ ଭୃତ୍ତ ମଣ୍ଡନ  ମଦନ ଚାପ ଖଣ୍ଡନ
 ବଚନ ପିକ ମଞ୍ଜନ ହନୁ କମ୍ପାଇ
ଆଶ୍ଳେଷ ଶ୍ଳେଷ ବନ୍ଧରେ  ସୁଖଗ୍ରଣି ସଂଗ୍ରହରେ
 ଅବଶ୍ୟ ହେବ ମୋ କ୍ଷେତ୍ରେ ଜୀବନଦାୟୀ ॥୧୦୮॥

ଅଧୋମୁଖେ ରହ୍ମ ମନ୍ଦ  ସୁହାସ ବିଶ୍ୱାସ୍ୟା ଗନ୍ଧ
 ଅଧର ସନ୍ଧ୍ୟା ମେଘରେ ହସେ ଶୋଭନ
ଆନନକୁ ନତ ବନା  କେବେ ନ ଟେକେ ନବୀନା
 ଅବାଣୀରେ ନାୟକ ଆତ୍ମର ବନ୍ଧନ ॥ ୧୦୯ ॥

ଶ୍ଳେଷ—

ଆଗତ ପ୍ରଭାତ ହୋଇ  ରଜନୀ ନେଲା ମୁକୁଳଇ
 ପୂର୍ବାନୁରାଗୀ ଅଙ୍ଗନା ଅଙ୍ଗେ ଲେପାଇ
ଅଭିସାରିକାର ବାଞ୍ଛା  ତେଜିଲେ ସୁରତ ଲୀଳା
 ବିଷାଦେ ବିବର୍ଣ୍ଣ ତନୁ ଖୋଜ ନ ପାଇ ॥୧୧୦॥

ଆଗତ କି ବାହୁଲେୟ  ଶକ୍ତିକ କର ଉଦୟ
 ସମ୍ମୁଖେ ତାରକା କ୍ଷୟ କୃତରେ ଦକ୍ଷ
ଅନନ୍ତ ମସ୍ତକ ମଣି  କର ଜ୍ୟୋତ୍ସ୍ନାରେ ଦ୍ୟୁମଣି
 ଅପହୃତ ଅନ୍ଧକାରେ କଲା ପ୍ରତ୍ୟକ୍ଷ ॥ ୧୧୧ ॥

ଅନ୍ତର ହବା ଯୋଷିତା  ସେନ ଯେ ହେଲା ସବତା
 ବିଗାଙ୍ଗନା ତମ ସୁତ ମାନ ହତକୁ
ଆତରେ ପତଙ୍ଗ ସୁତ  କପଟେ ଗୃହୁଁ ମହତ
 କରାଳଙ୍କନେ ପ୍ରସନ୍ନ କଲେ ଚିତ୍ତକୁ ॥ ୧୧୨ ॥

ଅମ୍ଭୋଜିନୀ ପାଶେ ଲୁଣ୍ଠି  ଗୁଞ୍ଜନ ବ୍ୟାଜରେ ଦୁଷ୍ଟ
 ଭ୍ରମରୀ କରନ୍ତେ ସେ ମୁକୁଳ ହସିତ

ଈମାଳ ଶୀତଳ ଧୀରେ ବୋଧନ୍ତେ ଯଥା ବଧୂରେ
ସନମତେ ଶିର ଧୂଳ ସେ ଉଲ୍ଲସିତ ॥ ୧୧୩ ॥

ଆଦର ବରରେ କରି ବୃନ୍ଦା ଆଣି ସହଚରୀ
ଶାରିକାରେ କହନ୍ତେ ସେ ପଢ଼ିଲା ପଦ
ଆହେ ବୃନ୍ଦାବନ ଦ୍ୱିଜ- ରାଜ ରତ୍ନଦାନ ତେଜ
ଗୁରୁତରେ ପ୍ରାଭବ ହେବ ହେଲେ ସମ୍ପଦ ॥ ୧୧୪ ॥

ଅଧିକେ ସୁବର୍ଣ୍ଣ ଦାନ ଯୌବନଙ୍କ ସୁଖ ନିଦାନ
ତ୍ୟାଗ ନ କଲେ ଏଠାରେ ହେବ ଅନର୍ଥ
ଅନ୍ୟୂତ ସଂଭ୍ରମ ଚିତ୍ତ ରମାଲିଙ୍ଗନ ମୁଷ୍ଟିତ
ଧ୍ୟାନ ମନ୍ତ୍ର ଯେମନ୍ତେ ତେଜିବାରେ ଅର୍ଥ ॥ ୧୧୫ ॥

ଅତି ପ୍ରେମେ ଆଲିଙ୍ଗନ ଗଣ୍ଡେ ଚୁମ୍ବ ପୁନଃ ପୁନଃ
ଚିବୁକ ଧରି କଣ୍ଠରେ ମାଗି ମେଲାଣି
ଅପାଙ୍ଗେ କରି ଲୋକନ ମେଲାଣି ମାଗି ସେ କାନ୍ତ
କାଛୀ ମନ ନ ତେଜବ ମୁରଲୀ ପାଣି ॥ ୧୧୬ ॥

ଅନ୍ୟୋନ୍ୟେ ମାନସ ଶ୍ଲେଷ କରି ସେ ପୁଂସ ନାଗରୀ
ଅଗତି ବିଗୁଣ ଗତି କଲେ ଉଭୟ
ଅଧୋକ୍ଷଜ ନନ୍ଦ ଗେହ ମଣ୍ଡିଲେ ସଖାରେ ସହ
ରାମା ଗମେ ଧରି ଲାଜ ସେନେହ ଭୟ ॥ ୧୧୭ ॥
ଅକ୍ଷି ରଙ୍ଗିମା ଘୂର୍ଣ୍ଣିତ ଦେଖି କେ ସଖୀ ଇଙ୍ଗିତ
ବୋଲେ ଗୁଡ଼ନାହିଁ ତ ମଦନ ମାଦକ
ଅଧର ମଧୁ ଭାଜନ ଭାଜିଲା ଭେଦ ରଦନ
ମଧୁ ପାନେ ଜ୍ଞାନ ହାରିଥିବ ନାୟକ ॥ ୧୧୮ ॥

ଆନନ କମଳେ ସ୍ୱେଦ ବିନ୍ଦୁ କି ଏ ମକରନ୍ଦ
ପୁଂସ ଅଳି କେଳି ଚୁମ୍ବନରେ ନିରସ
ଅସ୍ତବ୍ୟସ୍ତ ପିଠି ବେଣୀ ଭାଜିଲା କାମକୁ ବେଣୀ
ପୁଷ୍ପ ମୀନ ଗଳି ପଡ଼ୁଅଛି ବିଶେଷ ॥ ୧୧୯ ॥

ଅଛି ଯେ ମଧୁକ ଫୁଲ ଗଣ୍ଡରେ ତାମ୍ବୁଳ ବୋଳି
ନବ ପୁଷ୍ପବନ୍ତୀ ଚୁମ୍ବେ ପୁଂସ ଭ୍ରମରେ

ଅନଙ୍ଗ ମଙ୍ଗଳ କଣ୍ଠୁ ଶଙ୍ଖକୁ ଧରି ବୈକୁଣ୍ଠୁ
କୃଜନ୍ତ କରାଇଥିବେ ପରା ପ୍ରେମଂରେ ।। ୧୨୦ ।।
ଆଜ କୁଚ ଶମ୍ଭୁ ମୌଳୀ ଉରେ ନାଚଥିବେ ମିଳି
ସେଣୁ ଅପରାଧେ ଭୁଟି ସ୍ଥିତ ଅଞ୍ଚଳେ
ଅଦ୍ଭୁତ ଏ ଭାସକର ସମସ୍ତ ସୁଖ ଆକର
ଚେକନ୍ତ ନ ରହୁ କୁଚ ଦେବ ଅଚଳେ ।।୧୨୧।।

ଅନଙ୍ଗ ସମରେ ହାରି ପଳାଇଗଲା ଅପାରି
ଆରୋହି ଥିଲା ଯୌବନ ମତ୍ତ ବାରଣ
ଅଙ୍କୁଶ ପଦ୍ମରାଗରେ କୁମ୍ଭେ ପାଶୋରି ବେଗରେ
ଗଲା ପରି ସ୍ତନ ନଖ ଚିହ୍ନ ଧାରଣ ।। ୧୨୨ ।।

ଅଟେ ପୁରୁଷ କେଶରୀ କୁଚ କୁମ୍ଭକୁ ବିଦାରି
ହାର ଜ୍ୟୋତି ମୋତି କରାଇଲା ପତନ
ଅତନୁର ହେମ କୁମ୍ଭ ଥିଲା ଯେ ଶୂନ୍ୟ ଆରମ୍ଭ
ପାଣି ପ୍ରଯୁକ୍ତରେ ରମା କଲୁ ଯତନ ।। ୧୨୩ ।।

ଅଳସ ଗମନେ ଦାଣ୍ଡ ଜଘନେ କରଜ କାଣ୍ଡ
ବାଜନ୍ତୁ ଫୁଲ କୋଦଣ୍ଡ ଆକରେ ଆଜ
ଅଟେ କଟୀ କଣ୍ଠି ରବ କରନ୍ତୁ କଙ୍କିଣୀ ରବ
ମାର ଶରଭରେ ଥିଲା ପୁଙ୍ଖ ଉପୁଜ ।। ୧୨୪ ।

ଅନଙ୍ଗ ଗେହ କବାଟ ମାରା ଭଙ୍ଗିଦେଲା ବାଟ
ଅସୂନ୍ଧ ହେବାରୁ ଖୋସୁଥିଲେ ଖସଇ
ଅଳକ୍ତ ସରସ୍ୱତୀରେ ଭଷି ସେ ସଦନ ଶୀରେ
ଗୁରୁଜନ କର ଶିରେ ଅବାଣି ହୋଇ ।।୧୨୫।।-

ଅବଲମ୍ବେ ସ୍ନାନ ବେଶ ବଢାଇବାରେ ଆବେଶ
ଚନ୍ଦନ ତାମ୍ବୁଳେ କ୍ଷତ କରାଇ ଲେପ
ଅନୁତାପ ସେ ରମାର ପୁନ ପ୍ରହାରନ୍ତେ ମାର
ଅନୁରାଗେ ନ ମୁଞ୍ଚେ ଏ ଭାବ କଳାପ ।।୧୨୬।।

— ଶ୍ଳୋକ —

ଶ୍ଳିଷ୍ଟଃ କଣ୍ଠେ କମିତି ନ ମୟା ମୂଢୟା ପ୍ରାଣନାଥ-
ଶ୍ଚୁମ୍ବତ୍ୟସ୍ମିନ୍ ବଦନବନତଃ କିଂ କୃତା କିଂ ନ ଦୃଷ୍ଟଃ
ନୋକ୍ତଃ କସ୍ମାଦିତି ନବବଧୂଚେଷ୍ଟିତଂ ଚିନ୍ତୟନ୍ତୀ
ପଶ୍ଚାତ୍ତାପଂ ବହତି ତରୁଣୀ ପ୍ରେମ୍ଣିଜାତେ ରସଜ୍ଞା ।
(ଇତି ଅମରୁଶତକେ)

—ଗୀତ—

ଆନନରେ ନାୟକର ନ ଦେଲି ଚୁମ୍ବ ନକରଁ
ଆଶ୍ଳେଷ ଭୁଜବଲ୍ଲୀରେ ନ କଲି କଣ୍ଠ
ଅଳ୍ପ ବାଣୀ ଶୁଣିବାକୁ ବୋଧିଲେ ମୂଢ଼ ସମାକୁ
ନ କହି ମୁଁ ଥିଲି କମ୍ପା ସେ ଉପକଣ୍ଠ ॥ ୧୨୭ ॥
ଅଙ୍କେ ବସାଇଲେ ଖସି ବସିଲି କମ୍ପାଇ ଆସି
ଭଲେ ନ ଦେଖିଲି କମ୍ପା ପ୍ରିୟ ଆନନ
ଅବନୀଶ କୁଳ ଈଶ ଗଜ ଅଧୀଶ୍ୱର ବଂଶ
ଶ୍ରୀ ଶ୍ୟାମସୁନ୍ଦର ଦେବ କରଇ ଧ୍ୟାନ ॥ ୧୨୮ ॥

# ଦ୍ୱିତୀୟ ବିଭାଗ ବୋଲି

— ଗୀତ —

( ଗଉଡ଼ ସ୍ୱରେଣ ଗୀୟତେ )

ଆଦିତ୍ୟ ଯେ ଗଗନେ ଉଦୟ ବନ ଗମନେ
ବଛୁଆ ବଛୁଆ ପାଲ ସାଥେ
ଅଗ୍ରଜ ହରି ପିଛେ ନୀଳ ପୀତ ଧୋତି କାଛେ
ନାନାବର୍ଣ୍ଣ ଅସମାନ ପଥେ । ଘୋଷା ।
ଅଛି କାଳ ମେଘେ ବିଜୁଳି,
ଅବଦାତ ଘନେ କାଳ ଅଛି ବାଳ (?) । ୧ ।

( ଏକ )

## — ସୁରଭି ସ୍ନେହ ବୋଲି —

( ଗୋପାଳ ବାଣୀରେ )

ଅର୍ଭକ ମେଳରେ ରାମକୃଷ୍ଣ ବ୍ରଜେ
ଅଷ୍ଟାପଦ ପଦକେ ନାୟକ ରାଜେ ॥ ୧ ॥
ଅନେକ ଦୂର କାନନ ଭ୍ରମି ଭ୍ରମି
ଆଗତ ଗୋବର୍ଦ୍ଧନ ନିକଟ ଭୂମି ॥ ୨ ॥
ଆହାରେ ଚରନ୍ତି ତହିଁ ସୁରଭୀକ
ଆସିଲେ ସପ୍ରେମେ ବତ୍ସ ଅବଲୋକ ॥ ୩ ॥
ଆନନ୍ଦେ ଲହନ୍ତି ଚୋଷି କ୍ଷୀରପାନେ
ଅର୍ଭକ ଦେଖି ତଥା ଆଭୀରମାନେ ॥ ୪ ॥

ଆରକ୍ତ ନୟନ କାଖେ କନ୍ଦେ ଧରି
ଆଶ୍ଚର୍ଯ୍ୟ ହେଲେ ତା ଦେଖି ହଳଧାରୀ ।। ୫ ।।

ଅଟେ ହରିମୟ ବତ୍ସ ବାଳ ବ୍ରାତ
ଅଦ୍ଭୁତ ପରସ୍ତୁଂ କୃଷ୍ଣ କଲେ ଖ୍ୟାତ ।। ୬ ।।

ଅଶନ ଲୀଳାରେ ଆମ୍ଭେ ଖେଳ ରଙ୍ଗେ
ଅନ୍ନ ଭୁଞ୍ଜୁଥିଲୁ ଗୋପ ସୁତ ସଙ୍ଗେ ।। ୭ ।।

ଅବଜ୍ଞା କଲେ ତା ଦେଖି ବେଦପତି
ଅର୍ଭକ ସହ ହରିଲେ ବତ୍ସପନ୍ତି ।। ୮ ।।

ଅପହୃତ ଶୋକ ବ୍ରଜବାସୀ ହେଜ
ଅଙ୍କୁ ଜାତ କଲ ବତ୍ସ ବାଳରାଜ ।। ୯ ।।

ଆକ୍ଷେପ କଲେ ତା ଶୁଣି ନୀଳବାସ
ଅସିତ ଜମୁତେ ସୂକ୍ଷ୍ମ ସନବାସ ।। ୧୦ ।।

—ଗାହା—

( କେଦାର ରାଗେଣ ଗୀୟତେ—ଅନବନ୍ଧ )

ଅବଦପୂର୍ଣ୍ଣେ ଧାତା ହରିଇ ଯିବା ଆଜ ବୃନ୍ଦାବନ
ଆମ୍ଭେ ବତ୍ସବାଳ ଆଣିଲୁଂ ହଳ ହରି କଲେ କ ବଧାନ ।। ୧ ।।

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଆରୋହଣ ହଂସରେ ଆସେ ବେଧା ତୋଷରେ
ଦେଖେ ତନ୍ତ୍ରଲତା କରେ ଯାଗ
ଭ୍ରମରେ ହବନ୍ଧ ଗ ପାନେ ଲଭନ୍ତ ଭଗ
ବୃନ୍ଦାବନ କହେ ପକ୍ଷୀମୃଗ ।। ୧ ।।

( ଧୁଇ )

## — ବ୍ରହ୍ମସ୍ତୁତି ବୋଲି —

( ଗୋପାଳ ବାଣୀରେ )

ଅଷ୍ଟନେତ୍ର ନଷ୍ଟଲେ ଦେଖନ୍ତି ବିଧି
ଅନୋକହ ଲତା କରେ ସବୁ ବିଧି ॥ ୧ ॥

ଅବଲୋକେ ପୁନ ସର୍ବ ବ୍ରହ୍ମମୟ
ଅନୁସରି ସେବନ୍ତି ଅମରଚୟ ॥ ୨ ॥

ଅଧୋକ୍ଷଜ ରତ୍ନ ସିଂହାସନେ ବିଜେ
ଆଭରଣ ଦ୍ୟୋତସନେ ବିଦ୍ୟୁ ଗଜେ ॥ ୩ ॥

ଅନେକ ବ୍ରହ୍ମା ପଢନ୍ତି ବେଦ ସ୍ତୁତି
ଅଧିକରେ କରେ ସୃଷ୍ଟି ଉତପତ୍ତି ॥ ୪ ॥

ଆଗୋର କୁମାର ସର୍ବେ ବିଷ୍ଣୁବେଶ
ଅତି ସମ୍ଭବ ଶୋଭନ ବନବେଶ ॥ ୫ ॥

ଅକ୍ଷି ମୁଦ୍ରିତ କରି ସେ ଦେଖେ ପୁନ
ଅଛନ୍ତି ଏକାକୀ ରୂପେ ଭଗବାନ ॥ ୬ ॥

ଅନ୍ନ କବଳ କରେ ଗୋପାଳ ବେଶ
ଆପଣେ ବତ୍ସ ଚରାଇ ବୋଲେ ଆସ ॥ ୭ ॥

ଅବକାଶ ପାଇ ଦଣ୍ଡ ପଦ୍ମପାଦେ
ଆରମ୍ଭଇ ସ୍ତୁତିବାଣୀ ଗଦଗଦେ ॥ ୮ ॥

ଛନ୍ଦବନ୍ଧ—

ଆନନ୍ଦ କନ୍ଦ ହେ ସଦା ବିଶ୍ୱପାଳ
ଅବ୍ୟୟ ପୁରୁଷ ବାସ ଲୋକପାଳ ॥ ୯ ॥

ଅବିନାଶୀ ବିଷ୍ଣୁ ସରସିଜ ନାଭ
ଆତ୍ମଭୂ ଜନକ ଦାନ କର ଲାଭ ॥ ୧୦ ॥

ଅପରାଧ ହର ସରସିଜ ଅକ୍ଷ
ଆତପତ୍ର ବହେ ସ୍ତୁତ ପରତକ୍ଷ ॥ ୧୧ ॥

ଅଟେ ସର୍ବତୋ ମୁଖରେ ହେଜ ତୁଣ୍ଡ
ଅର୍ଦ୍ଧାକ୍ଷର ପଦ ମଧ୍ୟ ଆଦ୍ୟବର୍ଣ୍ଣ ॥ ୧୨ ॥

ଅଚ୍ୟୁତ ଭକ୍ତି ସ୍ତୁତରେ ତୋଷ ହୋଇ
ଆଜ୍ଞା ଦେଲେ ସୃଷ୍ଟି ଚିନ୍ତା କର ଯାଇ ॥୧୩ ॥

ଆମ୍ଭଙ୍କୁ ଯେ ତବ ସ୍ତୁତି ହେଲା ବ୍ରତ
ଅତି ଗୁପ୍ତ ଲୀଳା ନୋହିଲା ବ୍ୟକତ ॥ ୧୪ ॥

ଆଣି ସମର୍ପିଲେ ବତ୍ସବାଳ ଚୟ
ଆଦେଶକୁ ପାଇ ଗଲେ ନିଜାଳୟ ॥ ୧୫ ॥

ଅର୍ଭକ ଭୋଜନ ଲୀଳା ପୂର୍ବପରି
ଆଣିଲେ ବାଛୁରି ଲେଉଡ଼ି ନେବ ହରି ॥ ୧୬ ॥

ଅଚ୍ୟୁତଙ୍କୁ ଦେଖି ବୋଲେ ବସ ଭୁଞ୍ଜି
ଅବିଳମ୍ବେ ଆଣିଲ ତ ବତ୍ସ ଖୋଜି ॥ ୧୭ ॥

ଅଗୋଚର ବ୍ରହ୍ମାଦିରେ ମାୟା ଯାର
ଅର୍ଭକରେ କେଉଁ ହେବ ସେ ଗୋଚର ॥୧୮॥

ଅର୍ଦ୍ଧକ୍ଷଣ ପ୍ରାୟେ ମଣି ଦିନ ଶେଷେ
ଆଗତ ଗୋକୁଳେ ଅଘ ବଧ ହର୍ଷେ ॥ ୧୯ ॥

ଅଶନାଦିରେ ଯତନେ ପାଳେ ମାୟେ
ଅମୂଲ୍ୟ ପଲଙ୍କେ କୃଷ୍ଣ ନିଦ୍ରାଯାୟେ ॥ ୨୦ ॥

— ଗାହା —

( ମଙ୍ଗଳ ଧନାଶ୍ରୀ ସ୍ୱରେଣ ଗୀୟତେ )

ଅରୁଣ ଉଦୟେ ପଶୁପାଳକ
ଆସି ଉଠାଇଲେ ନନ୍ଦ ବାଳକ
ଆସ ହରି ହେବ ଗାବ ଦୋହନ
ଆଳସ୍ୟ ତେଜି ଉଠିଲେ ମୋହନ ॥ ୧ ॥

—ଗୀତ—

( ଶ୍ରୀ ରାଗେଣ ଗୀୟତେ )

ଅର୍ଭକ ମେଳରେ ହରି ଗାବକୁ ଦୁହିଁ ବହରି
ସମ୍ପୂର୍ଣ୍ଣ କରି ପୟ କୁମ୍ଭରେ
ଆଣି ପତ୍ରାବଳୀ ଯୁତ ରାଧା ପୟୋଧର ବତ
ନଖାଘାତ କରି ଅଦମ୍ଭରେ । ୧ ।
ଆଗତ ନିଜ ପୁରେ ପୟକୁ ମାତା ପୁରେ
ଦେଇ ମାଜଣା ସାରି ସୁବେଶ
କ୍ଷଣକାନ୍ତେ ଗୋବିନ୍ଦ ରାମ ହୋଇ ଆନନ୍ଦ
ହେଲେ ବନ ଗମନେ ଆବେଶ । ୨ ।

---

( ତିନି )

— ଧେନୁକ ବଧ' ବୋଲି —

( ଗୋପାଳ ବାଣୀରେ )

ଆଭୀର କୁମାରେ ହୋଇ ଦିବ୍ୟ ବେଶ
ଅନୁସରି ଚଳେ ରାମକୃଷ୍ଣ ପାଶ ॥ ୧ ॥
ଅରଣ୍ୟେ ବିହରି ନାନା କଉତୁକେ
ଆନନ୍ଦରେ ପକ୍ଷୀ ମୃଗ ଗତ ଡାକେ । ୨ ।
ଅନିଳ ହରନ୍ତେ ପକ୍ୱ ତାଳ ବାସ
ଆଘ୍ରାଣେ ଧାଇଲେ ଶୀଘ୍ର ଗୋଳବାସ ॥ ୩ ॥
ଆପେ ରସବନ୍ତ ସୁବାସରେ ବଶ
ଆଜ୍ଞା ଦେଲେ ତାଳ ବନେ ଯିବା ଆସ । ୪ ।

---

୧ । ବନ୍ଧ (ପୋଥିପାଠ)

ଶ୍ଲେଷ—

ଅଞ୍ଜଳି ଧରେ ଶ୍ରୀଦାମ କହେ ଭାଷ
ଅଟଇ ସେ ବନେ ଧେନୁକାର ବାସ ॥ ୫ ॥

ଆୟୁଧ ବଖାଣ ବଳେ ଉତ୍ସୁକରେ
ଅଗମ୍ୟ ଏହା କାରଣେ ଗୋପଙ୍କର ॥ ୬ ॥

ଅମରଷ ବାରୁଣୀରେ ନେତ୍ର ଦ୍ୱୟ
ଅରୁଣ ବର୍ଣ୍ଣ ସମର ରମଣୀୟ ॥ ୭ ॥

ଅନୁଜ ସହିତ ହୋଇ କଲେ ଗତ
ଅତନୁ ସଙ୍ଗୀତ ଭୂମି ପଥ ଘାତ ॥ ୮ ॥

ଅନେକ ତାଳ ଉଦୟେ ଶୋଭା ବନ
ଆସ୍ୱାଦନେ ହରେ ଗୋପ ସୁତ ମନ ॥ ୯ ॥

ଆରବ ଶୁଣି ଦାନବ କୋପ ଚିତ୍ତ
ଅର୍ଦ୍ଧ ଘାତ କରୁଂ ରାମ କରେ ଧୃତ ॥ ୧୦ ॥

ଅତ ପର ଭ୍ରମାଇ ପାଦଟେ ଘାତ
ଅଧିକରେ ଫଳକୁଳ ମହୀ ପାତ ॥ ୧୧ ॥

ଅନ୍ତକ ପୁରେ ଯାନ୍ତେ ଅବନ୍ଧୁ ବର୍ଗ
ଆଜି ଆରମ୍ଭନ୍ତେ କୃଷ୍ଣ ନାଶେ ବେଗ ॥ ୧୨ ॥

ଅନ୍ତେ ଶେଷେ ଧରାଇଣ ଫଳ ଭାର
ଅଶନେ ତୋଷିଲେ ବ୍ରଜବାସୀ ଦ୍ୱାର ॥ ୧୩ ॥

—ଗୀତ—

( ମଙ୍ଗଳ ଧନାଶ୍ରୀ ରାଗେ ଗୀୟତେ — ଅନ୍ତବନ୍ଧ )

ଆଲିଗଣ ଘେନ ବୃଷଭାନୁ ଜେମା ସୂର୍ଯ୍ୟସ୍ଥଳେ ପରବେଶ
ଅକ୍ଷି ତଟଲେ ସକଳ ଦିଗ ଚଳେ କୃଷ୍ଣ ଦର୍ଶନକୁ ବେଶ ।
ଅନଙ୍ଗ ଅଙ୍ଗନ ଗୁଣ ଭ୍ରୂଚୁ ରୂପେ ଦେଇ ଯୋଡ଼ି ନେତ୍ର ଶର
ଆଖେଟକ କାମନାରେ କି ଖୋଜଇ ବନ୍ଦବାକୁ କୃଷ୍ଣସାର ॥ ୧ ॥

—ଗୀତ—

( କେଦାର ଗଉଡ଼ ଗୀୟତେ )

ଅଚ୍ୟୁତରେ ମନ ରଖି ରାଧା ଫୁଲ ତୋଳେ
ଆଣି ପଦ୍ମ ଫୁଲ ଭାବ ଭରଇ ଅଞ୍ଚଳେ ।
ଅଳ ପୁଷ୍ପେ ଚୁମ୍ବ ଦେବା ଦେଖି ନ ସହଇ
ଅକ୍ଷି ରକ୍ତ ତମାଳରେ ଆସି ନ ପାରଇ । (ଘୋଷା)
ଆପେ ଭାଗେ ଦେଖ ସବୁ ଉଇ ଠେ ଭୃଙ୍ଗ ଗୁନ
ଅନ୍ତେ କୋଇ ଦୋଷ ଧରି ମୋତେ ବମନ ॥ ୧ ॥

---

( ଗୃହ )

— ଅଭିଷେକ ବୋଲି —

( ଗୋପାଳ ବାଣୀରେ )

ଅନୁସରି ବୃନ୍ଦା ବୋଧେ ସୁବଚନେ
ଅଚଳୁ ଚଳୁବନ୍ତ ଏ ବୃନ୍ଦାବନେ ॥ ୧ ॥
ଅତି ସମୃଦ୍ଧ ବସନ୍ତ ସଙ୍ଗେମେଳେ
ଅଗ୍ରେ ପିକ ବନ୍ଦୀ ଯଶ ଗାଇ ଚଳେ ॥ ୨ ॥
ଅବଚ୍ଛା କୁଳେ ଶ୍ରେ ଦେବ ଚକ୍ରବର୍ତ୍ତୀ
ଅନଙ୍ଗ ଜଣି ଭୁଞ୍ଜ ଏ ବନ ଛିତି ॥ ୩ ॥
ଅଜିତ ସୌଭାଗ୍ୟରେ ଜଣିମାତ୍ରୁଂ ରତ
ଆଶ୍ରିତ ହୋଇ ହେଇଇ ନତ ମତ ॥ ୪ ॥
ଆଜ ଗୁରୁ ଦୃଷ୍ଟି ପୁଷ୍ୟା ସୁ ନକ୍ଷତ୍ର
ଅଟେ ପ୍ରୀତି ଯୋଗ ଧରୁଇବ ଛତ୍ର ॥ ୫ ॥
ଅଭିଷେକ ହୁଳେ ମଣି ବେଦିକାରେ
ଅମ୍ବୁଜ ମଣ୍ଡନ ଶୋଭା ଅଧିକାରେ ॥ ୬ ॥

ଅଗୁରୁ ଧୂମ ଦର୍ପଣ ଗୃମଗନ୍ଧ
ଆତପତ୍ର ପୂର୍ଣ୍ଣ କୁମ୍ଭମାଳ ଖଦ୍ଧ ॥ ୭ ॥

ଅଭିଷେକ ଲତା ପୁଷ୍ପ ମକରନ୍ଦେ
ଅନୋକହ ଚମ୍ପୁ ମଧୁ ଧାରବୃନ୍ଦେ ॥ ୮ ॥

ଉଳ ଶୋଭେ ପୁଷ୍ପଗୁଚ୍ଛ ବାଦ୍ୟନାଦେ
ଆତୁର ଭୃଙ୍ଗ ବଜାଇ ମୁକୁନ୍ଦେ ॥ ୯ ॥

ଆରବ ଶଙ୍ଖରେ ମଲ୍ଲିକା ମୁକୁଳ
ଅଟେ ବନ୍ଦନାଳ ସେ ନାରେଣି କୂଳ ॥ ୧୦ ॥

ଆତପତ୍ର କେଶର ପୁଷ୍ପ ମଞ୍ଜୁଳ
ଆମ୍ର ମୁକୁଳ ଚାମର ଖଦ୍ଧ ଜଳ ॥ ୧୧ ॥

ଅନ୍ତଭୂକ ନାଚଇ ଝିଙ୍କାରି ସ୍ୱରେ
ଅଳିଗ ପ୍ରିୟୁ ଗାଏ ପଞ୍ଚମ ସ୍ୱରେ ॥ ୧୨ ॥

ଆସେ୍ୟ ଦୁର୍ବା ମୃଗ ବନ୍ଦାପନା ମୁଦେ
ଅନେକ ପକ୍ଷିଣୀ ହୁଳହୁଳି ନାଦେ ॥ ୧୩ ॥

ଅଟେ ପୂର୍ଣ୍ଣକୁମ୍ଭ ଶୋଭ ନାରିକେଳ
ଅଶୋକ କଳକାବଳି ଘଟଦଳ ॥ ୧୪ ॥

ଅଭିଷେକ ଦ୍ୱିଜ କନ୍ୟା ମାନଙ୍କରେ
ଆପ ବନ୍ଧୁ ବନ୍ଧୁ ଶୋଭେ ମସ୍ତକରେ ॥ ୧୫ ॥

ଅମୃତ ପୃଷନ୍ତ ସିଂହକେସୁ ପାଶେ
ଅଚ୍ଛ ତୁଷାର ବିନ୍ଦୁ ଚମାଳ ପାଶେ ॥ ୧୬ ॥

ଆରତିକ ନାନ୍ଦମୁଖୀ ବନ୍ଦୁମନ୍ତ
ଅଳି ଯେ ଯାହା ସେବାରେ ହରେ ମନ୍ତ ॥୧୭॥

ଅବିରତ ପୁଷ୍ପ ବୃଷ୍ଟି ଫୁଲ ହାରେ
ଅର୍କଜା ସେବଇ ପଦ୍ମ ଉପହାରେ ॥ ୧୮ ॥

ଅମ୍ବୁକଣେ ଅଭିଷେକ ଗୀତ କରେ
ଅମରେ ଅଭିଷେକ ଭୂଷାରେ ଭରେ ॥ ୧୯ ।

ଅଛନ୍ତି ଦ୍ୱାଦଶ ବନେଶ୍ୱରୀ ଯୂଥ
ଆନନ୍ଦ ସକଳ ଶୋଭା ବନପଥ ।। ୨୦ ।।

ଅଛି କାମଧେନୁ ଚିନ୍ତାମଣି ଯହିଁ
ଅଚ୍ୟୁତ କାର୍ଯ୍ୟ ବନାରେ ଆନେ ନୋହି ।। ୨୧ ।।

ଅଭେଟ ରାଧା ମାଧବ ଏ କାରଣେ
ଆଶ୍ରିର ସୁତେ ସଙ୍ଗରେ ଅନୁକ୍ଷଣେ ।। ୨୨ ।।

ଆସି ବୃନ୍ଦା ଜଣାଇଲେ ଭଗବନ୍ତ
ଅଛନ୍ତି ସେ ନାନ୍ଦୀମୁଖୀ ବନ୍ଦ୍ୟ ମନ୍ତ ।। ୨୩ ।।

ଆଜ୍ଞା ଦେଲେ ଯାଅ ପାଞ୍ଚଅଛୁ ଚିତ୍ତେ
ଅନୁଭବେ ଦେବ ଯେମନ୍ତେ ଗୋପସୁତେ ।। ୨୪ ।।

ଅର୍କପୂଜା ସାରି ପୁରେ ରାଧା ବଜେ
ଅନ୍ତରେ କେବଳ କୃଷ୍ଣ ରୂପ ରଜେ ।। ୨୫ ।।

—ଗୀତ—

( ବସନ୍ତ ରାଗେଣ ଗୀୟତେ )

ଅଚ୍ୟୁତ କଦମ୍ବ ବନେ ନନ୍ଦ ସନ୍ନିଧାନେ
ଆମ୍ଭେ ସୁରଭି ଚାଳିବୁ ବନେ ସାବଧାନେ ଯେ
ଆନନ୍ଦରେ ନନ୍ଦ ବୋଲେ ପ୍ରଭାତୁ ଗମନେ
ଅରଣ୍ୟେ ସୁରଭି ଚାଳି ଲଭିବୁ ସୁମନେ ଯେ ।। ୧ ।।

( ପାଞ୍ଚ )

— ବନାଧିକାର ବୋଲି —

( ଭୋପାଳ ବାଣୀରେ )

ଅଚ୍ୟୁତ ରାମ ସଙ୍ଗରେ ଆଶ୍ରୀରଜ
ଅଭିନବ ସୁରଭି ରକ୍ଷଣେ ସଜ ॥ ୧ ॥

ଆଗତ ଏଣୁ ସମସ୍ତେ ପୂର୍ଣ୍ଣମାସୀ
ଅନୋଚିତ ବୋଲ ନନ୍ଦାଦରେ ଭାଷି ॥ ୨ ॥

ଅରଣ୍ୟ ନ ଦ୍ୱେଗେ ବାଣ୍ଟ ସୁରଭିକ
ଅଛୁ ବଧି କୃତ୍ୟ କର ଅବଧି କ ॥ ୩ ॥

ଆଜ୍ଞା ମାନ ବୋଲେ ଗୋପ ବୃଦ୍ଧମାନେ
ଅଧିକାର ଧାଅ ଦେବ ବନେ ବନେ ॥ ୪ ॥

ଆନନ୍ଦେ ବାସ ତାମ୍ବୁଳ ଗନ୍ଧ ଦାନ
ଅନୁରୂପେ ଯେ ଯାହାରେ ଦେଲେ ଦାନ ॥ ୫ ॥

ଶ୍ଳେଷ— ଅଚେନ୍ତି କାଦମ୍ବରୀ ଚଞ୍ଚଳ ବଳ-
ଅମ୍ବର ମାଳ ସେ ମଧୁ ବନ ପାଳ ॥ ୬ ॥

ଅଭ୍ର ବର୍ଣ୍ଣ ଧେନୁ ସିଂହନାଦେ ବେଶ
ଆଳମ୍ବିତ ମଣିମାଳ ଗୃହବେଶ ॥ ୭ ॥

ଆଳ ମୋହନ ସେ ଦେବୀ ମଧୁମନ୍ତ
ଅଟେ ବୃନ୍ଦାରକ ବନ୍ଦ୍ୟ ଗୋପୀପତ ॥ ୮ ॥

ଅଙ୍ଗ ବୃନ୍ଦାରକ ବୃନ୍ଦାରଣ୍ୟ ପାଳ
ଅମ୍ବର ପୀତ କୌସ୍ତୁଭ ମଣିମାଳ ॥ ୯ ॥

ଅସିତ ଧେନୁ ମୁରଳୀ ନାଦେ ବଶ
ଆଳି ଲଳିତାରେ ବୃନ୍ଦା ଦେବୀ ତୋଷ ॥ ୧୦ ॥

ଅଟେ ଦେବ କୁସୁମ ଲବଙ୍ଗ ଖ୍ୟାତ
ଅରଣ୍ୟ କାମରେ ରହିବା ଉଚିତ ॥ ୧୧ ॥

ଅଛି ଭଦ୍ରଙ୍କ ସୁଭଦ୍ର ସଖା ପ୍ରୀତି
ଆଜ ସିମନ୍ତି ଯେ ଦେଖ କାମ୍ୟବତୀ ।୧୨।

ଅବଦାତ ମଲ୍ଲିମାଳ ମାଳ ବାସ
ଅସିତ ସୁରଭ ଭେଷ ନାଦେ ବଶ ।୧୩।

ଅଟେ ସୁବାହୁ × × ମୂଳ ଯେଣୁ
ଅଧପକ୍ଷ କୁମୁଦ ବନରେ ଚେଣୁ ।୧୪।

ଅଙ୍ଗ ପାଣ୍ଡର ଅମ୍ବର ଛୁଟି ବାମ
ଅଟେ ସଖା ଦେବ ପ୍ରସ୍ଥମାଳ ହେମ ।୧୫।

ଆଳ ଚନ୍ଦ୍ରରେଖାଙ୍କୁ କୁମୁଦମା ଦେଖ
ଆଗ୍ରବ କାଂସ୍ୟ ତାଳକୁ ଶାମ ଗାଖ ।୧୬।

ଅଟେ ବସୁ ଦାମ ଯେଣୁ ବହୁଳାରେ
ଅମ୍ବର ପୀତ ବୈଜୟନ୍ତୀ ମାଳାରେ ।୧୭।

ଅବଦାତ ଗାବ ସଖା ସେ ବଳାସ
ଆଗ୍ରବ ବନ୍ଧ ନାଳରେ ହେବେ ବଶ ।୧୮।

ଆଳ ଚନ୍ଦ୍ରମୁଖୀ ବହୁଳା ବଣ୍ଟରେ
ଅଟେ ସୁଦାମ ରମ୍ୟ ହଉ (?) ଖଦରେ ।୧୯।

ଅମ୍ବର ମାଳକୁ ଉରେ ଗୁଞ୍ଜାମାଳ
ଅସିତ ଗ.ବ ବୃଷଭ ସଖା ମେକ ।୨୦।

ଆଗ୍ରବ ମହୁଖ ଗାବ ବଣକାଖ
ଆଳ ଚନ୍ଦ୍ରରେଖା ଦେଖ ଖଦ ଶର ।୨୧।

ଅର୍ଜୁନ ଯେଣୁ ଧବଳୁ ତାଳ ବଣ
ଅରୁଣ ତନୁକୁ ଶ୍ୱେତ ସୁ ବସନ ।୨୨।

ଅଟେ ରତ୍ନହାର ସଖା ବହୁ ଥପ
ଆଗ୍ରବ ଶଙ୍ଖ ଶୁଭ୍ର ଗାବ କଳାପ ।୨୩।

ଅଳକାବତୀ ସଙ୍ଗୀ ତାଳବଣର
ଅଟେ ପୁନ ମହା ବନ ନାମ ଯାର ॥୨୪॥

ଅଧିକାର କରୁ ମହାବଳ ଚନ୍ଦ୍ର
ଅଙ୍ଗ ଗଉର ଅମ୍ବର ରଙ୍ଗେ ଶୋଭ୍ର ।୨୫।

ଅଟେ ବନମାଳ ସଙ୍ଗେ ସଖା ମଲ୍ଲ
ଅରୁଣ ବର୍ଣ୍ଣ ଶୋଭନ ଗାବ ପଲ୍ଲ ।୨୬।

ଆଗବ ସ୍ୱର ମାଦଳା ବଣକାରି
ଆଳ ମଦନା ସେ ଦେବୀ ମାହେଶ୍ୱରୀ ।୨୭।

ଅଟେ ସ୍ତୋକ କୃଷ୍ଣ ମେଳ ଉଜ୍ଜ୍ୱଳରେ
ଅରଣ୍ୟ ଘଣ୍ଟୀର ରମା ମୋହନରେ ।୨୮।

ଅଙ୍ଗ ଶ୍ୟାମଳ ଶ୍ୱେତ ବାସ ଜପ ମାଳ
ଆଗବ ବେଣୁ ଗାବ କପିଳା ପଲ୍ଲ ।୨୯।

ଆଳ ବନୋଦ୍ଧମାରେ ଘଣ୍ଟିରେଶ୍ୱରୀ
ଅରଣ୍ୟ ଲୋହେ ସୁବଳ ଅଧିକାରୀ ।୩୦।

ଅଙ୍ଗ ଶୋଣ ଶୋଭନ ପଟଳ ବାସେ
ଅଛୁ କୁନ୍ଦମାଳ ଭଦ୍ରସୁତ ପାଶେ ।୩୧।

ଆଗବ ଵୀର କାହାଳ ପୀତ ରାସୀ
ଆଳ ଶ୍ରୀପ୍ରୀ ସଙ୍ଗେ ଲୋହବଣୀ ଦେବୀ ।୩୨।

ଅଟେ ଯେଣୁ ଶ୍ରୀ ବନ କଙ୍କିଣୀ ଯୁତ
ଅଧୀଶ ମଧୁମଙ୍ଗଳ ବାସ ଶ୍ୱେତ ।୩୩।

ଅଙ୍ଗ ମେଘ ପଦ୍ମମାଳେ ବରାଜତ
ଆଗବ ପରିବାଦନୀ ଗାବ ଶ୍ୱେତ ।୩୪।

ଆଳ ବଶାଖା ଦେବୀ ଶ୍ରୀମଣି ଶୋଭ୍ର
ଅନାମ୍ବରେ ଭଦ୍ର ବନ ଥିଲ ରହୁ ।୩୫।

ଅଂଶୁକେ ଶୋଭୁ ସଖା ସ୍କନ୍ଦରେ ମେଳେ
ଅରୁଣ ତେଳ କେଶର ମାଳ ଗଳେ ।।୩୬।

ଅବରର ବା ଗାବର ତନୁ ଛବ
ଆଳ ନନ୍ଦାବଣୀ ସଙ୍ଗେ ଭଦ୍ରାଦେବୀ ।୩୭।।

ଅଧିକାର ଯେ ବର୍ଦ୍ଧି ଦ୍ୱାଦଶ ବନେ
ଅନ୍ୟ ଉପବନେ ଉପ ସଖୀମାନେ ।୩୮॥

ଆସିବ ସେ ଗୋବିନ୍ଦ ଡାକିଲେ ଜବ
ଅନ୍ୟ ବେଳେ ନିଜ ବନେ ଇଚ୍ଛା ସେବ ।୩୯।

ଆଗତ ଗତ ସମୟେ ଗଲେ ବାଟେ
ଅବଶ୍ୟ ମିଳିବ ସେ ବିଶ୍ରାମ ଘାଟେ ।୪୦।

ଅରଣ୍ୟ ପ୍ରିୟ ସଲକ୍ଷି ଦେବ ମାଗ
ଆପଣା ବାଦ୍ୟ ବାଜ ତହିଁବେ ଗାବ ।୪୧।

ଏହି ଉପଗତେ ବାଦ୍ୟ ବଜାଇବ
ଆଜ୍ଞା ପାଇ ନିଜ ବଟନ ଗଲେ ସର୍ବ ।୪୨।

— ଗାଥା —

( ମଙ୍ଗଳ ଧନଶ୍ରୀ ରାଗେଣ ଗୀୟତେ — ଅନିବଦ୍ଧ)

ଅଚ୍ୟୁତ ଏକା ବିହରନ୍ତି ଅରଣ୍ୟେ ବୃଷଭାନୁ ଜେମା ଧ୍ୟାଇ
ଆରମ୍ଭେ ଘଟନୃତ୍ୟ କାରି ନାଟକୁ ଶିଖଘଟେ ମନ ଥୋଇ ।୧।
ଆପଣସ୍ତୁ ମନା ଦେଲେ ବନଦେବୀ ନାନ୍ଦୀମୁଖୀ ବନ୍ଧୁମତି
ଆଗତ ପଥେ କୃଷ୍ଣ ଦୃଷ୍ଟି ଶ୍ରବଣେ ଚଞ୍ଚଳ ମନ ଶ୍ରୀମତୀ ।୨।

—ଗୀତ—

( କେଦାର ରାଗେଣ ଗୀୟତେ )

ଅଚ୍ୟୁତ ସନ୍ଦେଶ ବାଣୀ ଉଦେ ନଶାମଣି
ଅଙ୍ଗନା ଅଙ୍ଗ ଦ୍ରବକୁ ହେଲା ଚନ୍ଦ୍ରମଣି ସେ
ଅଙ୍ଗରାଗେ ଅଙ୍ଗ ସାଜ ସୁବେଶ ତତ୍ପର
ଅଙ୍ଗ ସଙ୍ଗକୁ ହରଷ ପୀଡ଼େ ହରପର ॥୧॥

( ଛଅ )

## — ବସ୍ତ୍ର ବେଶ ବୋଲି —

( ଭୂପାଳ ବାଣୀରେ )

ଅର୍କ ପୂଜା ସନ୍ଧାରେ ସଖୀ ସଙ୍ଗରେ
ଆସେ ମନ୍ଦିରରେ ସ୍ତନ ଜଘନ ଭରେ ॥ ୧ ॥

ଅଚ୍ୟୁତ ପାଶେ ଆଳି କଲେ ପ୍ରେରିତ
ଆନନ୍ଦେ ଫୁଲମାଳ ତାମ୍ବୁଳ ଦଉ ଯେ ॥ ୨ ॥

ଆଗତ ଠାକୁରାଣୀର କଣ୍ଠ ଗତ
ଅଲମ୍ବିତ ମାଳ ରମା ଭୂଜ ଲତ ॥ ୩ ॥

ଅଧର ସୁଧାର ସୁଖ ତାମ୍ବୁଳରେ
ଆଗତ ବଲ୍ଲୋକେ ନେଇ ନଣ୍ଟଳରେ ॥ ୪ ॥

ଅଙ୍ଗ ଗନ୍ଧର ଲୁଚି ଦାଶେ ପୂର୍ବ
ଆଗତ ଭ୍ରମୁଖ ବଧୂ ଯଥା ପୂର୍ବ ॥ ୫ ॥

ଅଚ୍ୟୁତ ଜାଣି ଧୀଭ୍ରମେ ଚିତ୍ତ ପାଶେ
ଆଲୋକେ ବନ୍ଧନ ମନ୍ଦ ପ୍ରେମ ପାଶେ ॥ ୬ ॥

ଅକ୍ଷି ଚତୁର ଉତ୍ପଳ ସାରସର
ଅନଙ୍ଗ ଶରକୁ କଏ ପ୍ରତି ଶର ॥ ୭ ॥

ଅଧର ଚନ୍ଦ୍ର ହାସରେ ତଥା ବେନ
ଆଲିଙ୍ଗନ ଭୁଜ ପାଶ ସୂଚ ଦାନ ॥ ୮ ॥

ଆନନ କମାଇ କୃଷ୍ଣ ଦେଲେ ଚୁମ୍ବ
ଅଳ୍ପ ହାସ ଆଚ୍ଛେ ଅଧର ବିମ୍ବ ॥ ୯ ॥

ଅଙ୍ଗନାଙ୍କ ଚରିତ ବୁଝିବା ମନେ
ଆସେ ଏହୁ ସମୟେ ଜଟିଳା ବନେ ॥ ୧୦ ॥

ଅଲୋକ ଶୁକ ଶାରିକା ଦୁହେଁ ଭାଷେ
ଅଚ୍ୟୁତ ଖେଦ ଉଦଧି ମଧ୍ୟେ ଭାଷେ ॥ ୧୧ ॥

ଅଦ୍ୱୈତ ବଧୁନୁଦର ବଧୂ ପର
ଅମୃତ ଧ୍ୟାନେ କି ଉରେ ଏପସର ॥ ୧୨ ॥

ଅରଣ୍ୟ ଦେବାର ପାଇ ଉପଦେଶ
ଅଚ୍ୟୁତ ଚନ୍ଦ୍ର ମୂଳରେ ବପ୍ର ବେଶ । ୧୩ ।

ଅଙ୍ଗେ ଦ୍ୱାଦଶ ତିଳକ ରୁଚବର୍ଣ୍ଣ
ଅସିତ ଜମ୍ବୁରେ ଶଶୀକଳା ବତ ॥ ୧୪ ॥

ଅମ୍ବର ହିକଚ୍ଛ କମଣ୍ଡଳୁ ପଣ
ଅଙ୍ଗୁଳର ଦର୍ଭ ମୁଦ୍ରା ଯଜ୍ଞସୂତ୍ର ॥ ୧୫ ॥

ଅଙ୍ଗନା ପୃଷ୍ଠ ଚୋଳବା ଛଳେ ଭ୍ରମେ
ଅବଲୋକ ବୃଦ୍ଧା ଆସି କହେ ତମେ । ୧୬ ।

ଅତି ବଟପୀରେ ମେଳ ହୋଇ ଭ୍ରମେ
ଅଙ୍କ ଏ କୁଳ ଦୁକୂଳ ଶୋଭ ସୋମେ ।୧୭।

ଆଜ ବୋଲେ ଦ୍ୱିଜରାଜ ସମାଗତ
ଆମ୍ଭ ରାଧାର ନୋହିଲେ କାହିଁଗତ ॥ ୧୮ ॥

ଅର୍ଘପୂଜା ଆଜ ପୂଜନରେ କର
ଅଙ୍ଗୀକାର ଏ ବିଷୟମାନ କର ॥ ୧୯ ॥

ଆସି ମଧୁମଙ୍ଗଳ କହଇ ଭାଷ
ଆମ୍ଭର କୃଷ୍ଣପକ୍ଷେ ସେ ଡାକେ ଆସ ॥ ୨୦ ॥

ଅଦ୍ରି ବନ୍ଧ ବୃଦ୍ଧା ବୋଲେ ଦ୍ୱିଜରାଜ
ଆରହଣେ ରାଧ ର ବିଷୟେ ରାଜ ॥ ୨୧ ॥

ଅନୋଚର କୃଷ୍ଣ ପକ୍ଷେ ଗଲେ କ୍ଷୀଣ
ଅଳ୍ପ ହସି ବିପ୍ର ବଦେ ସେ ଦକ୍ଷିଣ ॥ ୨୨ ॥

ଅଙ୍ଗନାଙ୍କୁ ବ୍ରହ୍ମଚର୍ଯ୍ୟ ନ ସ୍ପର୍ଶଣେ
ଆବରଣେ ଗଲେ ଦୋଷ ବୃଦ୍ଧା ଭାଷେ ॥୨୩॥

ଆଚାର୍ଯ୍ୟ ବ୍ରହ୍ମା କର ନସ ବିପ୍ର ବେନ
ଅବଳାମଣି ନୟନ ସୁନ୍ଦର ମ ॥ ୨୪ ॥

ଅନ୍ତରଣେ ସଂକଳ୍ପ କରିବୁଂ ରାତି
ଅନଙ୍ଗ ବେପଥୁ କରେ ମିଶାମିଶି ॥ ୨୫ ॥

ଆତ୍ମଜ ନନ୍ଦର ହେଲା ଜଗତରେ
ଆଣ ଚନ୍ଦ୍ରାମଣି ପ୍ରୀତି ପ୍ରଯୁତରେ ॥ ୨୬ ॥*

× × ×

ଅର୍କପୂଜା ବଢ଼ାଇ ପ୍ରସାଦ ଦଉ
ଅଙ୍ଗୁଳୀୟକ ଦକ୍ଷିଣା ଖାଇ ଗଉ ॥ ୩୧ ॥

ଆପେ ବଧୂ ଯେନ ବୃନ୍ଦା ଚଟ୍ଟେ ବାସେ
ଅରଣ୍ୟେ ଆସି ଗୋବନ୍ଦ ମଜ୍ଜେ ହାସେ ॥୩୨॥

ଆସି ଭେଟି ବନ୍ଦୂମନ୍ତ ନାନ୍ଦମୁଖୀ
ଅତ୍ୟନ୍ତ କହନ୍ତି ପ୍ରିୟା ବନା ଦୁଃଖୀ ॥ ୩୩ ॥

ଆଜ ବୃନ୍ଦା ଚମ ଗ୍ରାସେ ମୁଖ ବଧୂ
ଅନସ୍ତ ଚରିଲ ଦ୍ୱ ଜବେଣ ସାଧୁ ॥ ୩୪ ॥

ଆଜ ମିଳନ କରାଅ ବଭ୍ରବଶ୍ୱ
ଅବଜେ ବନା ମରଣ ପ୍ରାଣ ବର ॥ ୩୫ ॥

ଅଙ୍ଗନା ବେନ କହନ୍ତି ହାସମୁଖ
ଅମ୍ଭଙ୍କୁ ବରଦ ହେଲେ ହେବ ସୁଖ ॥ ୩୬ ॥

ଅଚଳେ କାର୍ତ୍ତିକେ ରାଧା ଦାମୋଦର
ଆରାଧ୍ୟ ହେବେ ଗୋଲକେ ସେବ୍ଯ ନର ॥୩୭॥

ଅସ୍ତୁ ବୋଲେ ତୁମ୍ଭେ ସବ ରାଧାପ୍ରେମ
ଅବଶ୍ୟ ପୂରଣେ ରନ୍ଧୁ ନାମ ବେନ ॥ ୩୮ ॥

— ଗାହା —

( ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ — ଅନବଦ୍ଧ)

ଆସି ନାନ୍ଦମୁଖୀ ବନ୍ଦୁମନ୍ତ କହେ ରାଧା ପାଶେ ହରସରେ
ଅରଣ୍ୟେ ଦେଖିଲୁଂ କୃଷ୍ଣସାର ହୃଦ ଭେଦେ ମାର ହାର ଶରେ ।

---

* ୨୬ ପଦ ଠାରୁ ୩୦ ପଦ ପର୍ଯ୍ୟନ୍ତ ପୋଥିରେ ନାହିଁ ।

ଅନଳ ଭୃଙ୍ଗ ପିକ ଜାଳ ଅନଳ ଶ୍ୱାନ ଶ୍ୱେନ ଗୃଧ୍ରପାଶେ
ଆଜ ନଗାରେ ରକ୍ଷଣ ଅଭିସାରେ ନ କଲେ ବନ୍ଧନ ପାଶେ ।୧।

—ଗୀତ—

( ଗଡ଼ଖ ରାଗେଣ ଗୀୟତେ )

ଅଦ୍ଭୁତ ମଦନ ବାଧା ଶୁଣି ଗୃହୁକେଶୀ
ଅଶ୍ରୁ ନେତ୍ର-ପଦ୍ମ ମକରନ୍ଦ ବରଷି ॥ ଘୋଷା ॥

ଅଟେ ମେରେ ଢଲ ପ୍ୟାର ବନମାଳି
ଅଟେ ମେରେ ଢଲ ପ୍ୟାର
ଆଖଂମେ ଆଉତ ବାଁଶରୀ ବାଉତ କୃଷ୍ଣ ମେର ଗଲେ ହାର ।୧।

ଅବ ସବ ଦୂରୁ ଭଇଲୋଗ ଖାନା ପିନା
ଆଉତ ରାତି କୈସନେ କୃଷ୍ଣେ ମିଲନା ॥ ୨ ॥

ଅଷ୍ଟାଳିକା ପର ବୈଠୀ ରାଧା ମନ ଛନ୍ନ
ଆଓି ହର ବହୁଆ ବାଲକ ସାଥେନ ॥ ୩ ॥

---

( ଯାତ )

— କୃଷ୍ଣାଭିସାର ବୋଲି —

( ଗୋପାଳ ବାଣୀରେ )

ପ୍ରଭାନ ଏ କାଳେ ଦେଲେ ପୂର୍ଣ୍ଣମାସୀ
ଅଷିରେ ରଞ୍ଜନେ ଦୂର ପାଶେ ଢଶି ॥ ୧ ॥

ଶୁଣ ଶେଷେ କୃଷ୍ଣ ବ୍ରଜେ ପରବେଶ
ଅବଲୋକନେ ରାଧିକା × × ×ଶ ॥ ୨ ॥

ଅଞ୍ଜଳି ବନ୍ଧ ବୃନ୍ଦଙ୍କୁ ନମସ୍କାରେ
ଅବଧି ଗମା କ ପଦ୍ମ ମୂର୍ଚ୍ଛିତରେ ॥ ୩ ॥

ଅଣେନ ଧଅନ୍ତେ ଗୋ ଦୋହନ ସାର
ଆର୍ଯ୍ୟ ମେଳରେ ବଜୟ କଲେ ହର ॥ ୪ ॥

ଅଦ୍ଭୁତ ପ୍ରଳମ୍ବ ବପୁ ଜାତ ଗୋପେ
ଅନ୍ତ ପ୍ରଳମ୍ବ କର କେ ବୋଲେ ଝାମ୍ପେ ॥ ୫ ॥

ଅଚ୍ଛୁ କଂସ ପେଷି ବ୍ରଜ ନାଶ କର
ଅଟଳେ ବ × × ବୋଲେ ସେ ଖବର ॥୬॥

ଆଖର ନୃପ ସଧ୍ୱାଚଂ[1] ନଗ୍ରେ ଦେଇ
ଆଜ ରଜନୀ ବାହାର ନୁହ କେହୁ ॥ ୭ ॥

ଅଭିସାର ହେତୁ ପୂର୍ଣ୍ଣମାସୀ ପାଶ୍ୱ
ଆଖିରେ ପ୍ରଳମ୍ବ ଭରେ ଘରେ ଲୁଚି ॥ ୮ ॥

ଶ୍ଳେଷ—

ଅକୂପାର ପର ଆକାଶ ଭୂମିରେ
ଆସି ଶୋଭନ ହୋଇଲ୍ଲ ସେ ତମିରେ ॥ ୯ ॥

ଆଲିଙ୍ଗିତ ହୋଇବାରୁ ମାଳାମ୍ବରେ
ଅଟେ ରେବତୀ ରୁଚିର ଆଡ଼ମ୍ବରେ ॥ ୧୦ ॥

ଆସି ବର୍ଣ୍ଣେ ବ୍ୟାପିଲ୍ଲ କ କାମକଳା
ଅଭିସାରୀ ସୁନ୍ଦରୀ ନୟନ କଳା ॥ ୧୧ ॥

ଅସିତ ଅମ୍ବରେ ସ୍ୱେଦ ବଶୁବାଳୀ
ଆଶା ଧବେ କସ୍ତୁରୀ ପିଚକା ଖେଳି ॥ ୧୨ ॥

ଅର୍କେ ଅସ୍ତେ ସୁଚା ରଚେ କ ପ୍ରଳୟ
ଆମ୍ନେଶ୍ୱର ବନା ଲଭେ ଯେ ପ୍ରଳୟ ॥ ୧୩ ॥

ଅଙ୍ଗ ସଙ୍ଗକୁ ନ ପାଇ ମଧୁପର
ଅଶ୍ରୁ ମକରନ୍ଦ ପାତ କୁସୁମର ॥ ୧୪ ॥

---

୧ । ସଧ୍ୱାଉ (ପୋଥିପାଠ)

ଆଳକ ଦେଖି କୁସୁମ ସୁଷମାକୁ
ଆରତେ କୃଜତେ କରେ ସେବନକୁ ॥ ୧୫ ॥

ଅପଲକ ପଲଙ୍କରେ ବନମାଳୀ
ଆଗତ ପଶ୍ଚିମେ ପୁରନ୍ଦର କଳ ॥ ୧୬ ॥

ଅର୍କଜା ଘାଟରେ କଳ୍ପ ପାଦପ କୁଞ୍ଜ
ଆପେ ବୃନ୍ଦା ମଣ୍ଡନରେ ଶୋଭା ପୁଞ୍ଜ ॥ ୧୭ ॥

ଆଗତ ପଥକୁ ସୁମଧାର ଧାଇଁ
ଅଧିକ ଉତ୍କଣ୍ଠିତା ପରସ୍ୟେ ହୋଇ ॥ ୧୮ ॥

ଆସି ଏ ସମୟେ ବୃନ୍ଦା ଭେଟି ରାଧା
ଅଭିସାର ବେଶେ ଶ୍ୟାମା ହୋଇ ଶ୍ରଦ୍ଧା ॥ ୧୯ ॥

ଆଣି ନୀଳୋତ୍ପଳ ମାଳ କଲେ ଦତ୍ତ
ଅଙ୍ଗନା ମଣେ ଅଚ୍ୟୁତ ବାନ୍ଧବତ ॥ ୨୦ ॥

ଅସିତ ଝୁମ୍ପା ଲମ୍ବିତ ପୃଷ୍ଠେ ବେଣୀ
ଅଙ୍କ ଧ୍ୱଜ ହେଲ ପୃଷ୍ଠ ଗୃପ ପାଣି ॥ ୨୧ ॥

ଅଙ୍ଗଦ ବଳୟ ତାଟଙ୍କାଦି ଯେତେ
ଆଭରଣ ଶୋଭା ସର୍ବ ମାରକତେ ॥ ୨୨ ॥

ଅଙ୍ଗେ ଲେପି କସ୍ତୁରୀ ଭାଲ ଚିତ୍ରିତ
ଅବଳା କି କାମକଳାରେ ଭୂଷିତ ॥ ୨୩ ॥

ଅମ୍ବର ନୀଳରେ ଏହା ଅନୁମାନ
ଆଚ୍ଛାଦିତ ବିଦ୍ୟୁତ କି ନୀଳ ଘନ ॥ ୨୪ ॥

ଆଦ୍ୟେ ଅଟଇ ଅନଙ୍ଗ କଳାବନ୍ତୀ
ଆଜ ଅଧିକେ ଦିଶଯେ କଳାବନ୍ତୀ ॥ ୨୫ ॥

ଆଳସ୍ୟ ଅଙ୍ଗ ମ.ର ବିକାର ଜାତ
ଆସେ ଜୃମ୍ଭା କମଳିନୀ ମୁକୁଳିତ ॥ ୨୬ ॥

ଅଚେତ ନିଦ୍ରା ପଞ୍ଚ ଭଙ୍ଗିମା ମାତ
ଅଷ୍ଟ ଛନ୍ଦେ ତୁଳସୀ ରାଧିକା ବତ ॥ ୨୭ ॥

ଅଟେ ମଧୁ କୃଷ୍ଣ ସପତମୀ ନିଶି
ଅଭିସାର କୃଷ୍ଣପକ୍ଷେ ଗୃନ୍ଥକେଶୀ ॥ ୨୮ ॥

ଆଣି ମନ୍ତ୍ର ପାଦୁକା ସମର୍ପି ପଦ
ଅଗ୍ରେ ବୃନ୍ଦା ଚଳେ ଯେନ ସଖୀବୃନ୍ଦ । ୨୯ ।

ଅଲ୍ପହାସ ଦନ୍ତ ଛୁଟ କୌମୁଦୀରେ
ଆଲୋକ ପଥରେ ଭେଟି ଅର୍କଜା ତୀରେ । ୩୦ ।

ଅନ୍ଧକାର ଦୁର୍ଗମେ ଆସିବା କଥା
ଅଚ୍ୟୁତ ଶୁଣି ଆଶ୍ରୁପି ଲଭେ ବ୍ୟଥା । ୩୧ ।

ଆଘ୍ରାଣ ଶିର ଚୁମ୍ବେ ରତ ମମତା
ଅନ୍ୟେ ହରଷ ବା ହରେ ସେ ବାମତା । ୩୨ ।

ଅକ୍ଷି ଶେଷେ ଅବଲୋକେ ସୁକୁମାରୀ
ଅଞ୍ଜନ ଲଞ୍ଜି କୃଷ୍ଣ କ ମାର ମାର ॥ ୩୩ ॥

ଏତ ଘୋର କଳନା ତା ନୁହଇ ଆନେ
ଆଲିଙ୍ଗନ ଦୁଗ୍ଧ ଜଳ ସବଧାନେ ॥ ୩୪ ॥

— ଶ୍ଲୋକ —

ଅଙ୍ଗେ କୃତା ପ୍ରଣୟିନୋ ମୃଗ ଶାବକାକ୍ଷୀ
ଗାଢେ ଶ୍ରମେଣ ଦଶନ୍ତ ଦନତାନ୍ତ ଗତାତ୍
ଗାଢୋପଗୂହନ କଣେ ନିରନ୍ତରଂ ଯତ୍
ସଂଶ୍ଲେଷମାତ୍ନିରନ୍ଧ ଗୁରୁଜନାଭିଧାନମ୍ ॥ ୧ ॥

ଉତ୍ପ୍ରେକ୍ଷା —

ଅରୁଣ ଆକାର କଟଲସୁ ଶେଯ
ଅସିତ ପୀତ ଦମ୍ପତି ରୂପ ତେଜ ॥ ୩୫ ॥

ଆଲମ୍ବ ବନ୍ଧ ସୁରତ ଆରମ୍ଭରେ
ଅଦଭୁତ ଇନ୍ଦ୍ରଧନୁ ହନାମ୍ଭରେ ॥ ୩୬ ॥

ଅମ୍ଭୋଜନୀ ସହଜେ ତର କାମିନୀ
　　　　ଅଳି କୂଜିତ କି ସେ ନୂପୁର ଧ୍ୱନି ॥ ୩୭ ॥
ଅଙ୍ଗନା ମଧ୍ୟ ବେଶରେ ସଲଜ୍ଜରେ
　　　　ଅନାସ୍ୱାଦ୍ୟେ ଚୁମ୍ବେ ଅଧର ଗୋଜରେ ॥ ୩୮ ॥
ଅଚଳୁ ଲୀଳା ଅନ୍ତରେ ଚେକ କୁଞ୍ଜ
　　　　ଆଗତ ବାଦ୍ୟାରେ ସେ ଯେ ସଖୀପୁଞ୍ଜ ॥ ୩୯ ॥

— ଗୀତ —

( ଧନାଶ୍ରୀ ରାଗେଣ ଗୀୟତେ )

ଆସନ କଳ୍ପ ପାଦପ ମୂଳେ ରାଧା ହରି
　　　　ଆଳି ନେଇ ପ୍ରିୟା ମୁଖ କମଳେ ବହରି । ଘୋଷା ॥
ଅମୃତ ଲାବଣ୍ୟ କୃଷ୍ଣଚନ୍ଦ୍ରର କଣୋଶ
　　　　ଅଶନେ ନେଇ ଚକୋରୀ ସକଳ ପାଶୋର ॥ ୧ ॥

---

( ଆଠ )

## — ଗୋପୀ ଯନ୍ତ୍ର ବୋଲି —

( ଭୂପାଳ ବାଣୀରେ )

ଆଳି ପଞ୍ଚବାଧ ସେ ମଞ୍ଜରୀ ବାର
　　　　ଅରଣ୍ୟ ଦ୍ୱାଦଶ ଦେବୀ ଘଟୁଆର ॥ ୧ ॥
ଆପେ ବୃନ୍ଦା ନଜ ଗଣ ଯେନ ସେବ
　　　　ଅଟେନ୍ତି ମୂଳ ପ୍ରକୃତି ରାଧା ଦେବୀ ॥ ୨ ॥
ଅସିତ ଉତ୍ପଳ ଗନ୍ଧ ମନ୍ଦ ବାତ
　　　　ଆସେ କାମ ରୂପ କି ଆଶୁଗ ବ୍ରାତ ॥ ୩ ॥

ଅମ୍ବୁଜାଦ ଅର୍କଜାର ବୀଚ କରେ
ଆସି ନମସ୍କାର ଦମ୍ପତିରେ କରେ ॥ ୪ ॥

ଅନେକ ତୁଳା ବଉଡ଼ ଚନ୍ଦ୍ରଦୀପ
ଆଲୋକରେ ନନ୍ଦା କରେ ନିଶାଧିପ ॥ ୫ ॥

ଅଗୁରୁ ଧୂପ ଚନ୍ଦନ ପୁଷ୍ପମାଳ
ଅବର କର୍ପୂର ରଜ ଯେ ତାମ୍ବୁଳ ॥ ୬ ॥

ଅରଣ୍ୟ ଦେବୀ ସମସ୍ତ ନିଯୋଜଇ
ଆଦ୍ୟନ୍ତୁ ସମ୍ଭୃତ ରସକେଳି ପାଇଁ ॥ ୭ ॥

ଅରଣ୍ୟ ପକ୍ଷୀ ମୃଗାଦ ନିଦ୍ରା ତେଜି
ଅକ୍ଷି ନିସ୍ତଳେ ଦେଖନ୍ତି ଶୋଭସଜି ॥ ୮ ॥

ଆନନ୍ଦାଶ୍ରୁ ମଧୁଧାର ତରୁ ସ୍ରବେ
ଅମୂଲ୍ୟ ପୁଷ୍ପ ପଲ୍ଲବେ ଲତା ସେବେ ॥ ୯ ॥

ଆମ୍ର ମୁକୁଳ ଭ୍ରମର ଖଣ୍ଡ ଚଳେ
ଅଙ୍କୁଭୁକ ନାଚେ ପିକ ଗୀତ ତାଳେ ॥ ୧୦ ॥

ଅନେକ ଗୋପୀ ନୀଳ କମଳ ଧରି
ଆନନ୍ଦେ ଭ୍ରମନ୍ତେ ଅଳି ନାଦ କରି ॥ ୧୧ ॥

ଛଳ —

ଆଗରେ ବସି ଏ କାଳେ ଶୁକ ଛଳେ
ଅନଙ୍ଗ ବଚସ କର୍ମ ଦେଖ ଭୋଳେ ॥ ୧୨ ॥

ଅଣି କରି ଭ୍ରମାଉଂଛୁ ନିଜ ଶର
ଅବଳା ପାଣିରେ ହୋଇ ଗୋଷଚର ॥ ୧୩ ॥

ଅଳି କୂଜନ ଛଳ ଗର୍ଜନ କି ସେ
ଅରଣ ପଣ ସମସ୍ତେ ପୀଡ଼ିବାସେ ॥ ୧୪ ॥

ଛଳ ଶ୍ଳେଷ —

ଅବକାଶ ଜାଣି ଭଷ ଶାରିକାର
ଆଜ କୃଷ୍ଣଚନ୍ଦ୍ର ଚନ୍ଦ୍ର ଅଧିକାର ॥ ୧୫ ॥

ଅଧିକ ଚନ୍ଦ୍ର ଗୁଣନ୍ତୁ ଜାଣିମାର
ଆଚରେ ମିଥ ଉତ୍ସବ ଜାଣି ମାର ॥ ୧୬ ॥

ଅନୁରାଧା ସ୍ୱାଧା ଜ୍ୟେଷ୍ଠା ଧନିଷ୍ଠାଦ
ଅଛନ୍ତି ବଚନା ବିଶାଖା ପ୍ରିୟବାଗ ॥ ୧୭ ॥

ଅମୃତ କର ଦିନ ଏକେକ ଯୋଗ
ଆଶ୍ଚର୍ଯ୍ୟ ଏକା ରାଧ କ୍ଲେଶ ଉଦ୍ବେଗ ॥ ୧୮ ॥

ଅଟନ୍ତି ବ୍ରଜେ ସର୍ବଦା ପର୍ଯ୍ୟଟନ
ଅମ୍ଭୋଜନୀ ବରବର୍ଣ୍ଣୀ କାରେ କ୍ଷମ ॥ ୧୯ ॥

ଅଙ୍ଗସ୍ଥାନ ଦିନରେ ରୁଚିରତର
ଅଧିକେ କୁଚ ଶଙ୍କର ପ୍ରିୟ କର ॥ ୨୦ ॥

ଅଛନ୍ତି ନିଶାକରଜନମାନେ ସେବ
ଅତି ସ୍ଫୁଟ କୁମୁଦ ହାସରେ ଲୁବ୍ଧ ॥ ୨୧ ॥

ଆଲୋକ ଚନ୍ଦ୍ର ଉଦଧା କରଣ ଏ
ଅନ୍ଧାର ରଜନୀ ଲଜେ ଘୁଞ୍ଚିଯାଏ ॥ ୨୨ ॥

ଅନଙ୍ଗ ସୁହୃଦ ଘଣ କଲା ଦୂର
ଅଭିମାନେ ନ ଆସଇଁ କ୍ଷମ କର ॥ ୨୩ ॥

ଅଚ୍ୟୁତ ରାଧିକା ଶୁଣି ହାସମୁଖ
ଅପାଙ୍ଗେ ଗୃହ୍ଣି ଉଭୟ ଜାତ ସୁଖ ॥ ୨୪ ॥

ଅଛନ୍ତି ଦମ୍ପତି ମଣି ସିଂହାସନେ
ଆଳି ଭାଷେ ବନ୍ଦମୁଖ ପରିସନେ ॥ ୨୫ ॥

ଆଭୋଗୀ ଯେଉଁ ଚନ୍ଦ୍ରମା କୁମୁଦନୀ
ଆଜ ଅମ୍ଭୋଜନୀ ଭୋଗେ ପ୍ରମୋଦନୀ ॥ ୨୬ ॥

ଆନ କେ ଉତ୍ତର କଲା ଝଟତରେ
ପ୍ରବୋଧମ୍ ମକରନ୍ଦ ମାଳତୀରେ ॥ ୨୭ ॥

---

୧। ବୃଷାସର (ପୋଷପାଠ)

ଅଳି ଯେ ବାସଙ୍କି ସଙ୍ଗୀ ଆସି ରମେ
ଅତ୍ୟାଜ୍ୟ ଶ୍ରେଣିକ ପଦ୍ମ ମନୋରମେ ॥ ୨୮ ॥

ଆନ ବୋଲେ ଗୁଣଯୋଗ୍ୟ ଗୁଣିକରେ
ଅଗୁଣି ବଜ୍ର ବୈଦାନ୍ତ ସମକରେ ॥ ୨୯ ॥

ଆମ୍ର ମୁକୁଳରେ ରସେ ପିକଦ୍ୱିଜ
ଅନ୍ତକେ ରକ୍ଷ ନରମେ ଭରଦ୍ୱାଜ ॥ ୩୦ ॥

ଆଳିଙ୍କ ବଚ ଇଙ୍ଗିତ ବୃନ୍ଦା ଶୁଣି
ଆଳାପ ଉଭୟ ସମାଧାନ ପୁଣି ॥ ୩୧ ॥

ଅମୃତ ସ୍ୱାଦୁ ଯାବତ ଜଣା ନୋହେ
ଅଶନରେ ତାବତ ରସଇ ସ୍ନେହେ ॥ ୩୨ ॥

ଅମ୍ବର ରୂପ ସାମ୍ୟରୁ ମାଳ ଖ୍ୟାତ
ଅମ୍ବରତ ଅଙ୍ଗେ ବେନି ଆଲିଙ୍ଗିତ ॥ ୩୩ ॥

ଅନୁରାଗୀ ମଧ୍ୟେ ସାର ଏ ଦମ୍ପତି
ଅମର ପାଦପ ମୂଳେ ଯାଉ ସ୍ଥିତି ॥ ୩୪ ॥

ଆଦର ଏ ଚନ୍ଦ୍ରଦ୍ରୁମେ ନୋହେ ତାର
ଆନନ୍ଦ ଶୁଣି ରାଧିକା ଅଚ୍ୟୁତର ॥ ୩୫ ॥

ଅନାଅନ ନେତ୍ରକୋଣେ ପରସ୍ପର
ଅପହୃତ ଧୈର୍ଯ୍ୟ ଧନେ ତତପର ॥୩୬॥

—ଗାଥା—

( ବସନ୍ତ ସ୍ୱରେଣ ଗୀୟତେ )

ଅଦ୍ୟାର ଏ କାଳେ ଯେନ ସେ ରାସ ରଙ୍ଗିଣୀ
ଆସି ରଙ୍ଗସ୍ଥଳେ ବଜେ କା ସେ ତରଙ୍ଗିଣୀ ଯେ ॥ ୧ ॥
ଅମ୍ବୁଜ ଚରଣରେ ଦୋଇଛି ରାଗିଣୀ
ଅଧିକ ଶ୍ୟାମ ରସରେ ସ୍ୱାନୁରାଗିଣୀ ଯେ ॥ ୨ ॥

( ଦିଅ )

## — କୃଷ୍ଣ ରାସ ବୋଲି —

### — ଉଦ୍ଧବ ଗୀତା —

( କଂସ ସଂହାର ହେବ ମୁଖରୁ ଉଦ୍ଧବ ଗଲେ ପାଶ ଏ ବାଣୀରେ )

ଉଚ୍ଚୈତ ସ୍ୱରେ ଆପଣେ ଭସେ ବରଷା ଋତୁ ପ୍ରାପ୍ତେ କ
ଆଶୁଗ ଯୋଗ ଗୃଳଇ ବେଗ ନଭେ ବଳା ବଳାହକ ॥ ୧ ॥

ଅଟେ କାମିନୀ ସଉଦାମିନୀ ମଣ୍ଡଳରେ ସେ ବ୍ୟାପେ କ
ଆନନ୍ଦେ ଶିଖୀ ଚୂଳକୁ ଦେଖି ଚୋରେ ଗୋପୀକା ସ୍ତନକ ॥ ୨ ॥

ଆନନ୍ଦ ନାଦ ଧ୍ୱନି ଅମ୍ବୁଦ ନୂପୁର ଭଟଇ ଭେକ
ଆଲୋକ ମୋତ ହାର ଚଳନ୍ତି ପନ୍ତି ପନ୍ତିକ ବଳାକ ॥ ୩ ॥

ଅଙ୍ଗ ସରସେ ସ୍ୱେଦ ବରଷେ ହଂସ ମାଳଗ ଚକ୍ରକ
ଆନନ୍ଦ ନଦୀ ଚଳନେ ସ୍ତବ୍ଧ ମକର କୁଣ୍ଡଳ ଟେକ ॥ ୪ ॥

ଆଲୋକ ଘନ କେଶୀ ଘଟନ କ ଶିଖୀ ନୃତ୍ୟ ରଚକ
ଆପଣା ନାସ ମଣ୍ଡଳୀ କର ଟେକ ଚୂଳ ଶିଖଣ୍ଡକ ॥ ୫ ॥

ଅନଳେ ସ୍ୱଚ୍ଛ ଚମାଳ ଚନ୍ଦ୍ର ଚଳବା ଶୋଭା ବ୍ୟାପକ
ଆବୃତ ସମା ଏ ମନୋରମା ଖଦ୍ୟୋତ ବ୍ରାତ ବେଷ୍ଟକ ॥ ୬ ॥

ଅମୂଲ୍ୟ ମୋତି ନାକେ ଚଳନ୍ତି ତନୁ କମ୍ପାଉଛୁ ବକ
ଆକାଂକ୍ଷା ମତ ଜଡ଼ ଚେତନ ଗତ ଜଡ଼ପ୍ରୁ ତାନ ଅନେକ ॥ ୭ ॥

### —ଗୀତ—

( ଶ୍ରୀ ଗଉରେଣ ଗୀୟତେ )

ଅଙ୍ଗର ତବ ହୋତ ମରଦ ଯେକ ହର
ଅନେକ କମଳ ଯେ ଶାମୁରେଖ ବହର ॥ ଘୋଷା ॥

---

୧। ଆନନ୍ତ (ପୋଥିପାଠ)

ଅଚ୍ୟୁତ ସେ ଦକ୍ଷିଣ ନାୟକ
ଆନନ୍ଦ ହୃଦେ ସକଳେ ସେବକ । କଣ୍ଠରେ ମାଇ ॥ ୧ ॥

---

## ( ଦଶ )

## — ଗୋପୀ ରାସ ବୋଲି —

( କଂସ ସଂହାର ବାଣୀରେ )

ଆଲୋକ ଚନ୍ଦ୍ର  ଉଦୟା ଚନ୍ଦ୍ର  ଉଦୟ ସଦୃଶ ରାଜେ
ଅରଣ୍ୟ ପ୍ରିୟ  ଗୀତ ଉଦୟ  ଭୃଙ୍ଗ ରବ ସ୍ୱର ବାଜେ ॥ ୧ ॥

ଅବଲାକୁଳ  ତାଳ ମର୍ଦ୍ଦଳ  ବଲ୍ଲକୀ ସ୍ୱର ଉଦୟ
ଅଚ୍ୟୁତ ଅନ୍ତ  ରାଧାରେ ନନ୍ତ  କର ଚୋ ରାଗ ହୃଦୟ ॥ ୨ ॥

ଅଙ୍ଗନା ମଧ୍ୟ  ରସେ ପ୍ରସିଦ୍ଧ  ସଙ୍କଟେ ବାନ୍ଧେ କିଙ୍କିଣୀ
ଉପାଙ୍ଗ ବୃନ୍ଦ  ହାସ ଜନ୍ମାଇ  କୃଷ୍ଣ ମାନସକୁ କିଣି ॥ ୩ ॥

ଆରମ୍ଭି ନାଟ  ନାଟକ ବାଟ  ସ୍ୱସେଣୁଗ୍ର ସବେ ରସେ
ଅଚ୍ୟୁତ ଗୀତେ  ରସେ ସଙ୍ଗୀତେ  ହସ୍ତକ ହସ୍ତ ସାରସେ ॥ ୪ ॥

ଆପେ ଗାନ୍ଧର୍ବି  କା ସେତୁ ଦେଖି  ଗାନ୍ଧର୍ବୀ ରସଙ୍କେ ରସେ
ଅନ୍ତ ସଙ୍ଗୀତ  ସାତ୍ତ୍ୱିକ ମତ  ହର୍ଷିତ ହୃଦୟ ତୋଷେ ॥ ୫ ॥

ଅଙ୍ଗ ଭଙ୍ଗୀରେ  ଗତାଗତରେ  ତାଳମାନଙ୍କୁ ବଞ୍ଚାଇ
ଅନିମିଷରେ  ଉପମା ସାର  କୃଷ୍ଣ ନୟନେ ସଞ୍ଚାଇ ॥ ୬ ॥

ଅଷ୍ଟପାତନ  ସରସ ଧ୍ୟାନ  ଅନଙ୍ଗ କୃତ ପରାୟେ
ଉର୍ଦ୍ଧ୍ୱ, ମୁଷଳ  ହେମ ମଞ୍ଜୁଳ  କ୍ଷଣକେ ଯାତେ ଫେରାଏ ॥ ୭ ॥

ଅନୁଜ୍ଞା ଦେଇ  ଛନ ନଗୁଇ  ସଙ୍କଟୁ ଅମ୍ଭୋଜମାନ
ଉଚ୍ଛି ଉପୁର  ଆନନ୍ଦ କର  ତଳେ ଆନ ଲିପ୍ତ ଜଳ ॥ ୮ ॥

ଅଧିକ ବଳେ    ନିତମ୍ବ ଲୋଲେ    କିଙ୍କିଣୀ ବାଦ୍ୟରୁ ମଣି
ଅଙ୍ଗ କି ପୃଷ୍ଠ-    ଷାଇତ ଗୃନ୍ଥ    ନାଚେ ବେଣୀ ନାଗାଙ୍ଗନୀ ॥ ୯ ॥

ଅଚ୍ୟୁତ ଏକ    ନାସ୍ତି ଅନେକ    ମଧ୍ୟେ ସ୍ୱରୂପ ସମାନ
ଆରମ୍ଭି ଲାସ୍ୟ    ଅତି ଉଲ୍ଲାସ    ଗତ ତାଳ ସନ୍ମାନ ॥ ୧୦ ॥

ଆଲମ୍ବ ବେଣୀ    ପୃଷ୍ଠରେ ପୁଣି    ବନ୍ଧ ରତ୍ନରେ ଟେଳଇ
ଅଂଶୁମତର    ହେମ ପଟର    ଅଟ୍ଟୁ ଶ୍ରେଣୀ ଟେଳଇ ॥ ୧୧ ॥

ଅନଙ୍ଗ ରଥ    କି ମନୋରଥ    ମଣ୍ଡା ଧ୍ୱଜରେ ସାଜଇ
ଅସି କି ଧର    ସାଜେ କି ଫର    ବେଣୀ ଚରମ ରାଜଇ ॥ ୧୨ ॥

ଅତସୀ ଧନୁ    ଭ୍ରୂରୁ ଅତନୁ    ଅଞ୍ଜନ ଗୁଣ ଅଳରେ
ଅପାଙ୍ଗ ବାଣ    ଆମନ୍ତ୍ର ଠାଣ    ବଦ୍ଧେ ତରୁଣ କୁଳରେ ॥ ୧୩ ॥

ଅର୍ଜୁନ ସବ୍ୟ-    ସାଚର ଦ୍ରବ୍ୟ    ଚଢ କାମ କାମନାରେ
ଅଚ୍ୟୁତ ବାମ    ଦକ୍ଷିଣ ବାମ-    ନେତ୍ରୀ ଗୃହ୍ଣ ପ୍ରସନାରେ ॥ ୧୪ ॥

ଆସ୍ୟ ଚନ୍ଦ୍ରମା    ହଲାଇ ରମାଁ    ହସ୍ତ କି କର ଯାଉଛି
ଅମୃତ କର    କାମ ବକାର    ବଳେ କି କର୍ମ ପାଉଛି ॥ ୧୫ ॥

ଅବଳା ନାସା    ବେଶର ଭୂଷା    ନଥ ସଙ୍ଗତେ ନାଚୁଛି
ଅମୃତ ଧାମେ    ଗେହ୍ଣୀ ପ୍ରେମେ    ରତି ଜଳଟ ରଞ୍ଜୁଛି ॥ ୧୬ ॥

ଅଧିକେ ବାଳୀ    ଝଲକା ବାଳ    ତାଟଙ୍କ ଝୁମ୍ପି ନାଚନ୍ତି
ଅନଙ୍ଗ ପାଶ    ବନ୍ଦୀ ଆବାସ    ପଳାୟନ କି ପାଞ୍ଚନ୍ତି ॥ ୧୭ ॥

ଅମର ଧର    କୂଚ ସୁନ୍ଦର    ଉପରେ ହାର ଖେଳୁଛି
ଆସି ବସ୍ତ୍ରର    ଚରଣ ମାର-    ଧାର ତରଙ୍ଗ ମିଳୁଛି ॥ ୧୮ ॥

ଅଙ୍ଘ୍ରି ନୂପୁର    ହୋଇ ମୁଖର    କାମ ଡେଙ୍ଗୁରା ବାଜୁଛି
ଅଙ୍ଗୁଳି ହସ୍ତ    କରେ ପ୍ରଶସ୍ତ    କବା ଯୁବାକୁ ଚଯୁଛି ॥ ୧୯ ॥

ଅତନୁ ରସ    ବୃଦ୍ଧି ସରସ    ସଶତ ବଢ଼ି ଯାଉଛି
ଅବଳା ଲାସ୍ୟେ    ଗତି ବିଳାସେ    ଭଙ୍ଗୀ ଶୋଭା ପାଉଛି ॥ ୨୦ ॥

ଅଳପ ହାସେ    ଦନ୍ତ ପ୍ରକାଶେ    ପୀୟୂଷ ଧାର ବହଇ
ଅଧର କୋଷ    କି ଚନ୍ଦ୍ରହାସ    ମାରି ମାରଣେ ନାଚଇ ॥ ୨୧ ॥

| | | | |
|---|---|---|---|
| ଆଲୋକ ଚନ୍ଦ୍ର | ଉଦୟ ଆ ଚନ୍ଦ୍ର | ମୁଖରେ ଆସି ପଡ଼ଇ | |
| ଅନ୍ଧକାରିତ | ବଧୂ କୁହିତ | ଉଜ୍ଜ୍ୱଳ ଜଣି ଲେଡ଼ଇ | ॥ ୨୨ ॥ |
| "କାନ୍ତ ଶ୍ରମ | ସ୍ୱେଦ ଜନମ | ଏହି ଉପମା ସ୍ଫୁରଇ | |
| ଅ-ଙ୍ଗ ପାଣି | ନଯାକ ଆଣି | ମାରେ ପିଚକା ମାରଇ | ॥ ୨୩ ॥ |
| ଆନନ ସ୍ୱେଦ | ବଧମରନ୍ଦ | ଅରବିନ୍ଦରୁ ଜେଇ | |
| ଅଧିକ ଶ୍ୱାସ | ନାସିକା ବଂଶ | କୀଚକ ସ୍ରୋଭ ବୋଲଇ | ॥ ୨୪ ॥ |

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଅବଳା କୁଚ ମଣ୍ଡଳ          କଣ୍ଠଭ ପତ୍ର ତଳେ
ନଟମ୍ୱ ବାଳିକା ବାଜେ   କିରଜେ
ଅତିଶୟ ରାଗ ଜାତ          କଣ୍ଠେ ଅଧରେ ବ୍ୟକତ
କାନ୍ତ ମନସିଜ ନାଟ ସଉଜୋ ଘୋଷା ।
କମ୍ପରେ ରମା,
ଅଟେ ଯେ ପ୍ରିୟ କୋବଦ          ସୁହଧାର ଭସବଦ
ବେଣୀ ନାଟକୁ କଙ୍କିଣୀ ବାଜେ ॥ ୧ ॥

---

( ଏଗାର )

— ଯୁଗଳ ରାସ ବୋଲି —

( କଂସ ସଂହାର ବାଣୀରେ )

| | | | |
|---|---|---|---|
| ଅଦ୍ଭୁତ ନାଶ | ମଣ୍ଡଳୀ କଣ | ଭ୍ରମି କରନ୍ତ ନର୍ତ୍ତନ | |
| ଶ୍ୟାମ ସୁନ୍ଦର | ଇଚ୍ଛା କାମର | ବୁଲାଇ କାମୀ ପତନ | ॥ ୧ ॥ |
| ପାଦ୍ମ ଧାରି | ଉସନା ସାର | ମାରକତ ପାପଦଣ୍ଡ | |
| ଅସି ମସ୍ତକ | ଜତପୁ ମିଳ | ଭ୍ରମିବା ଶୋଭାକୁ ଦଣ୍ଡି | ॥ ୨ ॥ |

ଅନ୍ତ ହଂସକ ନାଦ ବ୍ୟାପକେ ଲେହ୍ୱିତ ଓଷ୍ଠ ପଦକେ
ଅଞ୍ଚଳ ଉଡ଼ି ଯିବାକୁ ଉଡ଼ି ଝଷ କମ୍ପଇ ହ୍ରଦରେ ॥ ୩ ॥

ଆଶ୍ରୁରେ ହସ୍ତ କଟଫାଣ୍ଟି ନ୍ୟସ୍ତ ନୃତ୍ୟେ ନଚନ୍ତେ କମ୍ପାଇ
ଆଜ କି ରତ୍ନ ଜଳଟେ ପ୍ରୀତି ଶିଖେ ଆଚରିବା ପାଇଁ ॥ ୪ ॥

ଅଚ୍ୟୁତ ସୁଧା ନୃତ୍ୟେ ଶରଧା ଚନ୍ଦ୍ରାନ୍ତର ବେନି କର
ଆଶ୍ଳେଷ ପ୍ରେମେ ତମାଳ ଦ୍ରୁମେ × × ଲତା ଚମ୍ପକର ॥ ୫ ॥

ଅବନୀ ଚର ଆଦି ଖେଚର ଭୁବନ ଚର ଉଲ୍ଲାସ
ଅଚଳ ଚଳ ନାଚେ ସକଳ ପାଦତପ ସ୍ଥଳ ପଲ୍ଲବ ॥ ୬ ॥

ଆସ୍ୟ ଅନାଇଂ ଅଚ୍ୟୁତ ଧାଇଁ ସ୍ପନ୍ଦେ ଚୁମ୍ବ ବରଷିତ
ଅମ୍ବୁଜ ବାତ କରେ କମ୍ପିତ ହରେ କାମ ସାର ଚିତ୍ତ ॥ ୭ ॥

ଅଧରୁ ସୁଧା ନ ଦେଇ ମୁଗ୍ଧା କେ ମୁଖଚନ୍ଦ୍ର କମ୍ପାଏ
ଅଯୋଗେ ରମ ସୁଧାରେ ପ୍ରେମ କରି କଣ୍ଠିତ ନ ପାଏ ॥ ୮ ॥

ଅଚ୍ୟୁତ ଧରି କେ ଚମ୍ବାପଶ ଓଷ୍ଠ ପାନ କରି ବଳେ
ଅବଶେଷରେ ଦନ୍ତ ମୁଦ୍ରାରେ ଛୁଡ଼ ସେନେହ ନ ବଳେ ॥ ୯ ॥

ଅବଳା ହସି ଆନନ ଶଶୀ ପଳାଇ ଯାଇ ଛଡ଼ାଇ
ଅଧର ଦନ୍ତେ ଭେଦ ଭଗତେ ରଖିଲ ନିଜ ବଡ଼ାଇ ॥ ୧୦ ॥

ଅଞ୍ଜନ କାମେ ହୃଦରେ ପ୍ରେମେ ମଣ୍ଡଇ କୁଚ କଳଶ
ଅଚ୍ୟୁତ ପୀଡ଼ା କରନ୍ତେ ବ୍ରୀଡ଼ା- ବକ୍ଷ ଭଙ୍ଗଇ ଅଙ୍କୁଶ ॥ ୧୧ ॥

ଆଶ୍ୱ ଉରଜ ଘର୍ଷ କରଜ ଘାତରେ କ୍ଷତି ଶ୍ରାବଇ
ଅମର ଧର ଦନ୍ତୀ ଦନ୍ତର ଚିହ୍ନ ଶୋଭା ପ୍ରକାଶଇ ॥ ୧୨ ॥

ଆଶ୍ଳେଷ ଅନ୍ତେ ଉରଜ ମୋତି- ହାର ସେ କାଳେ ଛୁଡ଼ଇ
ଆସେ କି ଗଙ୍ଗ ଭଜ ତରଙ୍ଗ ଅବନୀ ତରେ ପଡ଼ଇ ॥ ୧୩ ॥

ଅଳପ ଶୁଣି ବୋଲି ଶ୍ରବଣ ପାଖକୁ ମୁଖ ନଅଇ
ଅଣିମା ଆଦି ସୁଖ ସମ୍ବାଦ ସବୁ ଚୁମ୍ବନ ହଟଇ ॥ ୧୪ ॥

ଅଚ୍ୟୁତ ଭଡ଼ି ନ ଦେଲେ ଗୁଡ଼ି ଛଡ଼ାଇ ଯିବା ପାଞ୍ଚଇ
ଅଙ୍ଗ ଭଙ୍ଗୀରେ କକ୍ଷ ଗଳରେ ନଖ ଚଳାଇ ବାଞ୍ଛଇ ॥ ୧୫ ॥

ପ୍ରଧିକ ଦାସ  କର ପ୍ରକାଶ  ଚଳାଇ କୁଞ୍ଜେ ଲୁଚଇ
ଆଣି ନନ୍ଦ ହରି  କଞ୍ଜଳ ଧରି  ଅପାଙ୍ଗେ ସୁଧା ସିଞ୍ଚଇ ॥ ୧୬ ॥

ଅଙ୍ଗ ଅବଶେ  ନୃତ୍ୟର ବଶେ  ସ୍ୱେଦ ଭୂଷଣେ ବଢଇ
ଅନ୍ତସ୍ଥ ଘନ  ରସ ଜଘନ  ଶୋଭି କବା ବରଷଇ ॥ ୧୭ ॥

ଉଠଇ ଯେଣୁ  ଯୋଗିମା ତେଣୁ  କଞ୍ଚୁକ କାଢ଼ି ଗୁପଇ
ଅମ୍ବରହୀନ  କୁଚ ଈଶାନ  କର୍ପୂର ଭସ୍ମ ଲେପଇ ॥ ୧୮ ॥

ଆପଣ ପଣ  କର କ ପଣ-  ନ୍ତରେ ଶ୍ରମକୁ ଭଞ୍ଜଇ
ଆସ୍ୟକୁ ପୋଛେ  ରତ୍ନ ସ୍ୱ ଇଛେ  ଆଦରଣକୁ ମାଜଇ ॥ ୧୯ ॥

ଆସନେ ରାଧା  ହରି ଶରଧା  ଉରୁ ପରେ ଆଉଜାଇ
ଆପଣେ ବସ୍ତ୍ର  ସେନେହ ସସ୍ତ୍ର  ଭାବ ସରିତେ ମଜ୍ଜାଇ ॥ ୨୦ ॥

—ଗାହା—

( ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ – ଅନିବଦ୍ଧ)

ଆସି ଏନ୍ତୁ କାଳେ ବୃନ୍ଦା ବାଣୀ କହେ ଧୀର
ଅବଲୋକ ମଧୁକାଳ କାମେ ଅଧୀର
ଅଳି ମଧୁପାନେ ରମେ ଅଧିକ ସୁମନ
ଆଜ ମଧୁ ପାନେ ହରୁ କାମିନୀ ମନ ॥ ୧ ॥

—ଗୀତ—

( ଗୌରୀ ରାଗେଣ ଗୀୟତେ )

ଅଙ୍ଗମର୍ଦ୍ଦ ମଦନେ  ହେବ ନଖ ରଦନେ
ଆୟୁଧ ବେନି କି ଆଜ ପୁନ
ଅତି ମୂନ କରଜ  ତାମ୍ବୁଳେ ଦନ୍ତମାଜ
ଆଦ୍ୟେ ବସି କର ସୀର ପାନ ॥ ଘୋଷା ॥
ଅଜିତ ହେବ ସମରେ ଆଜ
ଆସବ ପାନରେ ରାଧା ମାଧବ ରାଜ ॥୧॥

## ( ଚାର )

### — ମଧୁପାନ ବୋଲି —

( କଂସ ସନ୍ଧାର ବାଣୀରେ )

ଆଣିଲେ ବୃନ୍ଦା    ମଧୁ ଅନନ୍ଦା    ଭରି କନକ' ପାତ୍ରରେ
ଅଚ୍ୟୁତ ହସି    ଛଳରେ ଘଷି    ଢଚାଚ ପାତ୍ର ମିତ୍ରରେ    ॥ ୧ ॥

ଆସବ ମଧୁ    ଫୁଲରେ ସାଧୁ    ଯତନେ ବୃନ୍ଦା ସଞ୍ଚିତ
ଆପଣ ପିଇ    ରାଧାରେ ଦେଇ    ସେ ପାନ' କଲେ କିଞ୍ଚିତ    ॥ ୨ ॥

ଅବଶେଷରେ    ମତ୍ତ ତୋଷରେ    ବାଣ୍ଟି ଗୋପୀକା ଭକ୍ଷଣ
ଅଞ୍ଜଳି ପୋଷ    ପାନ ବିଶେଷ    ପାନ କରି ଲଭେ କ୍ଷଣ    ॥ ୩ ॥

ଆଗ କେ ହୋଇ    କରୁ ବଡ଼ାଇ    ପି ପି ବୋଲି ଆରକରେ
ଅନଙ୍ଗ ରସ    ବୃଦ୍ଧି ସରସ    ଜାଣିବା ଲାଳସା କରେ    ॥ ୪ ॥

ଆପାନ ସ୍ଥାନ    କି ଉପବନ    ସୁମନ ଜନନ ମଧୁ
ଅନୁତର୍ଷଣ    କାମିନୀଗଣ    କରି ପ୍ରଶଂସିଲେ ମଧୁ    ॥ ୫ ॥

ଆନନ୍ଦ ମନେ    ହାସ ରଚନେ    ପିଇ ସକଳେ ବାରୁଣୀ
ଅକ୍ଷି ଅସିତ,    ସମସ୍ତ ଦଉ    କରି ହୋଇଲା ଅରୁଣୀ    ॥ ୬ ॥

ଅବଳା ରତି    ସମସ୍ତ ଚ୍ୟୁତ    କାଳେ ନୟନ ଯେମନ୍ତ
ଅଳ୍ପ ଘୂର୍ଣ୍ଣିତ    ପୁନ କୁଞ୍ଚିତ    ମୁକୁଳ କରେ ତେମନ୍ତ    ॥ ୭ ॥

—ଶ୍ଳୋକ—

ମୂର୍ଚ୍ଛାନିମୀଳନଂଗୃହ୍ଣୋଃଚ୍ୟୁତକାଳସ୍ୟ ଲକ୍ଷଣମିତି ଗ୍ରନ୍ଥାନ୍ତରେ ।

ଆଜ ତରୁଣ    ବଧି କି ବାଣ    ତୋଣେମୟୂ ପାଞ୍ଚ ଶର
ଅମ୍ବୁଜ ଇନ୍ଦୀ-    ବର କି ନନ୍ଦ    କଲା କୋକନଦ ଶର    ॥ ୮

---

୧ । 'ଧୂସ୍ତୁର କନକା ଦ୍ରସ୍ତୁ ଇତ୍ୟମରଃ' (ପୋଥିଟୀକା)

୨ । ଏଠାରେ 'ଆପାନଂ ପାନ ଗୋଷ୍ଠୀ କା ଇତ୍ୟମରଃ' (ପୋଥିଟୀକା)

ଅଭି ବଚନ ପଦ ସ୍ଖଳନ ମଧୁ କର୍ଦ୍ଦମ ଯୋଗରେ
ଅଟ୍ଟହାସକୁ କର ଜାତକୁ ଲୋଟଇ ମହାଭାଗରେ ॥ ୯ ॥

ଅସ୍ଥିର ପାଦ ଆଚରେ ବାଦ କଳ କୁଣ୍ଠାଇ ଗମନେ
ଆଦ୍ୟ ଯୌବନ ମଦିରା ପାନ ମାଦକତ ଥିଲା ମନେ ॥ ୧୦ ॥

ଅଧିକେ ସ୍ୱନ ମଧୁ ଅଶନ ବନେ ସଙ୍ଗ ମଧୁପରଂ
ଅଟଇ କାଳ ମଧୁ ପ୍ରବଳ କାମେ ଧ୍ୟାନ ମଧୁପର ॥ ୧୧ ॥

ଅଜ୍ଞାନ ଏକ ବିଷୟେ ଲୋକ ଏତ ନୋହିଲା କଳନା
ଆଲୋକ ଚକ୍ଷୁ ପୁରୁଷ ଚକ୍ଷୁ ବିଚୁର କଲେ ଲଳନା ॥ ୧୨ ॥

ଅନେକ ରତି ବନ୍ଧ ପିରତି ଦିଶେ ମନ ଆଦରଣେ
ଅଳପ ନାମ ବିଶେଷ ତମ କଲେ ରତି ଆଦର ସେ ॥ ୧୩ ॥

ଅନଳ ଧୀର କରେ ଅଧୀର ହରିବାସକୁ ସୁମର
ଅନେକ ଫୁଲ୍ଲି ରମିଣ ବୁଲେ ମଧୁରେ ମତ୍ତ ଭ୍ରମର ॥ ୧୪ ॥

ଅବଲୋକନେ ଉଦ୍ଧବ ମନେ ରମିଲେ ରାମା ସକଳ
ଅନଙ୍ଗ ପାଠ ନ କରି ମଠ ଶିଖାଇ କୋକିଳ କଳ ॥ ୧୫ ॥

ଅସ୍ଥିର ଘଟେ ବିମ୍ବ ପ୍ରକଟେ ବୃନ୍ଦାବନଚନ୍ଦ୍ର ହରି
ଅନେକ ରୂପେ ପ୍ରକାଶ ଆପେ କୁଞ୍ଜ କୁଞ୍ଜକେ ବିହରି ॥ ୧୬ ॥

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଅଙ୍ଗନା ପୁରୁଷ ଲଜ୍ଜ ପ୍ରେରିଛିଲା ମନସିଜ
ଶର ପେଷି କରଇ ଉଦ୍ଧତ ଗୋ
ଅଛୁ ସେ ସମ୍ପାଦ ବଧୂ ଅଧରେ ମାଦକ ମଧୁ
ପାନେ କହେ ବନ ଜାଣେ ଚିତ୍ତ ଗୋ ॥ଘୋଷା॥
ଅନ୍ଧ କେ ମଦନେ ହୋଇ ସ୍ୱ କରେ କୁଚ ପୀଡ଼ଇ
ଚୁମ୍ବକୁ କରୈ ଅଧର ଗୋଳ ଗୋ

ଅଭିବାଞ୍ଛିତ ଶୃଙ୍ଗାର ଯେ ନାୟିକେ ଅଗ୍ରଗାର
ଲଭେ ବଲ୍ଲଭିର ହରି ଲାଜ ଗୋ ॥ ୧ ॥
ଅମନ୍ଦାକ୍ଷ ପଞ୍ଚାଂ ମୁଗ୍ଧା ରତ କ ହେବାର ମଧ୍ୟା
ପ୍ରଗଲ୍ଭା ଚେଷ୍ଟା ସୁରତେ ଦେବ ଗୋ
ଆଖଣ୍ଡଳ ଭୂଷଣା ଚୁମ୍ବ ଦେଲେ ପଦ୍ମେ କ୍ଷଣା
ଭଣଇ ଶ୍ୟାମସୁନ୍ଦର ଦେବ ଗୋ ॥ ୨ ॥

---

( ତେର )

## — ମଧୁପାନ ସୁରତ ବୋଲି —

( କଂସ ସଂହାର ବାଣୀରେ )

ଅଚ୍ୟୁତ କର ଧରି ସଧାର ସୁରତ କୁଞ୍ଜ ପ୍ରବେଶ
ଅବଲୋକନ ସୁରତ ସ୍ଥାନ ଅଧିକେ କାମେ ଆବେଶ ॥ ୧ ॥
ଆକାଂକ୍ଷା ଏହି ପୁଂସର ଥାଇ ନବୀନା ହତ ଲଜ୍ଜରେ
ଅନଙ୍ଗେ ମତ୍ତ ହୋଇ ସେ ମତ୍ତ- କାଶିନୀ ଭିଡ଼େ ଭୁଜରେ ॥ ୨ ॥
ଅଯାଚତରେ ପ୍ରେମ ଚତୁରେ ନାୟକ ମୁଖ ଚୁମ୍ବଇ
ଆପଣା ମୁଖ ସେ ଶିଳୀମୁଖ ଫୁଲ ଚୁମ୍ବକୁ ଭାବଇ ॥ ୩ ॥
ଆମ୍ରେଶ୍ବରର ପୀଡ଼ି ଅଧର ରଦନ ଚିହ୍ନ ରଖଇ
ଅଧର ମଧୁ ପାନରେ ବଧୂ ସୁଧା ତୁଚ୍ଛରେ ଲେଖଇ ॥ ୪ ॥
ଅରଣ୍ୟ ପ୍ରିୟ ପକ୍ଷୀ ନଚୟ ଧ୍ୱନତ କଣ୍ଠେ ଶିଖଇ
ଅକ୍ଷି ମୁଦ୍ରିତ ମୁକୁଳକୃତ ଅପାଙ୍ଗେ ଡୋଳା ରଖଇ ॥ ୫ ॥

—ଶ୍ଳୋକ—

ଦାତ୍ୟୂହ ଲାବକମୟୂରକପୋତ ହଂସାଃ ।
ପାରାବତାଦ ରତିକଂ ଧ୍ୱନିତଂ ରତେଷୁ ।
(ଇତି ଚୂଡ଼ାନ୍ତରେ ଆଦ ଶଙ୍କୁମ୍ଭିକଂ ଗ୍ରହଣମ୍)

ଆପେ କି ଦେଖାଇ   କା କା କରଇ   କିଛି ଜାଣି ନ ପାରଇ
ଝଙ୍କନ ଧ୍ୱନ   କଲେ ମର୍ଦ୍ଦନ   ସୁଖେ ଚେତନା ହାରଇ ॥ ୬ ॥
ଆଂଠ ନାୟକ   ବେନି ଚୁଚୁକ   କରେ ସମା ମରଦଇ
ଆଶ୍ଳେଷେ ବାଳା   ବଲ୍ଲଭ ଗଳା   ଧରି ଲପନ ଲଦଇ ॥ ୭ ॥

ଆପେ କଦଳୀ   ଜଘନ ବାଳୀ   ମଧ୍ୟସିଂହକୁ ଛନ୍ଦଇ
ଅଳ୍ପ ମର୍ଦ୍ଦନ   କାମ ସଦନ   କଲେ ସେ ସ୍ତବ ବନ୍ଦଇ ॥ ୮ ॥

ଅତନୁ ମତ୍ତେ   ପ୍ରଚ୍ଛାଇତେ   ଆପେ କେ ବସି ଝୁଲଇ
ଅବଶ ପୀନ   ଘନ ଜଘନ   ଝଙ୍କଟରେ ନ ଚଳଇ ॥ ୯ ॥

ଅଙ୍ଗନା କଟୀ   କିଙ୍କିଣୀ ରଟି   ସୁରତ ଜୟ ଘୋଷାଇ
ଅଶେଷ ଘନ-   ରସ ଜନନ   ସ୍ୱେଦ ଛଳେ ବରଷଇ ॥ ୧୦ ॥

ଅଟଇ ଇଭ   ଉରଜ କୁମ୍ଭ   ସ୍ୱେଦ ମଦ କି ଗଳଇ
ଅଭିଷେକରେ   ଯୁବା ନକରେ   ନୀର କଳଶ ଢାଳଇ ॥ ୧୧ ॥

ଅଷ୍ଟାପଦର   ଲତା ସୁନ୍ଦର   ବାତ ଯୋଗେ ଦୋହଲଇ
ଆଲମ୍ବ ବେଣୀ   ବରଣ୍ଡ ଜାଣି   ନାଠରେ ଉଚ ବୋଲଇ ॥ ୧୨ ॥

ଅବଳା ମଧ୍ୟ-   ସିଂହ ପ୍ରସିଦ୍ଧ   ହସ୍ତୀ ଶୁଣ୍ଢ କି ଧରଇ
ଆମୁକ୍ତ କୁମ୍ଭ   ମୁକ୍ତା ଆରମ୍ଭ   ତୋଳେ ଯାଇ ନ ପାରଇ ॥ ୧୩ ॥

ଆଣି ଉରୁନେ   ରତି ବଚନେ   ଷ୍ଟୁବ ଭଗ ଭ୍ରମାଇ
ଅମୃତ ପାନ   ନଖ ରଦନ   ଘାତେ ସୁଖ ଜନମାଇ ॥ ୧୪ ॥

ଆରମ୍ଭ ରତେ   କଣ୍ଠ ଧରନ୍ତେ   ହୁଂ ହୁଂ ଶଙ୍ଖ କି ବାଜଇ
ଅତନୁ ହେମ   ଘଟ ସୁଷମ   କୁଚ ପାଣିରେ ମଜ୍ଜଇ ॥ ୧୫ ॥

ଆକର୍ଷଣେ   କେଶ ଧାରଣେ   ପିଠି ଶୟନ ମଣ୍ଡଇ
ଅମ୍ବୁଜ କର   ଯମୁନା ନୀର   ଧାରେ ଏ ଶୋଭା ଝଣ୍ଡଇ ॥ ୧୬ ॥

ଶ୍ଳୋକ— ଗ୍ରନ୍ଥଣମଥ ବଦଧ୍ୟାତ୍ର କଣ୍ଠଦେଶଗ୍ରନାନ୍ଦ—ଇତି ଗ୍ରନ୍ଥାନ୍ତରେ ।

ଅମ୍ବର ଦୂର   କରି ଉଦୁର   ମଧ୍ୟା ଉରୁନେ ଶୁଅଇ
ଅତନୁ ଗେହ   ଶୋଭା ସନ୍ଦୋହ   ବଲ୍ଲଭ ନେହେ ଦଅଇ ॥ ୧୭ ॥

ଅଚ୍ୟୁତ କର   ପ୍ରଫୁଲ୍ଲିତର   କଦମ୍ବ ଭୂତ କରଇ
ଆତପତ୍ର କ   ତ୍ର କୋଣେ ଟେକ   ରୋମାଳ ଦଣ୍ଡେ ଧରଇ ॥ ୧୮ ॥

ଅଧିକେ ସ୍ତନ   ମର୍ଦ୍ଦନେ ମନ   କେଉଁ ଅଙ୍ଗନା ରସଇ
ଆଣି ଗଳରେ   ପାଣି ବଳରେ   ପୟୋଧରେ ନବେଶଇ ॥ ୧୯ ॥

ଅନ୍ତ ଉଦ୍ଧତେ   ମଦନ ମତ୍ତେ   ରତିରେ ତୃପ୍ତି ନୁହଇ
ଅଙ୍ଗ କମ୍ପାଇ   ସୁରତ ପାଇଁ   ମୁକୁଳ ଜଂଘେ ରହଇ ॥ ୨୦ ॥

ଅନ୍ୟେ କେ ଭିଡ଼ି   ପ୍ରିୟ ନ ଛାଡ଼ି   ସ୍ତନ ଜଘନ ସଲଇ
ଅନର୍ଥ ବାଣୀ   ଆପେ ରମଣୀ   ମଦ୍ଧର ମତ୍ତେ ବୋଲଇ ॥ ୨୧ ॥

ଆଦର କର   ନବ କଶୋର   କାନ୍ତ ଯାହା ନ ଶୁଣଇ
ଆଶ୍ୱାସଂ ବନା   କହେ ନବୀନା   ପ୍ରିୟ ତା ହୃଦେ ଗୁଣଇ ॥ ୨୨ ॥

ଅଧିକେ ଗୁରୁ   କଟତ୍ରୁ ଗୁରୁ   କାମମତ୍ତେ ଯା ଗ୍ରାସଇ
ଅଟଇ ପ୍ରତି-   ଚକ୍ଷୁ ସେ ପ୍ରୀତି   ରସ ସୁବର୍ଣ୍ଣ ବଣଇ ॥ ୨୩ ॥

—ଗାଥା—

( କେଦାର ରାଗେଣ ଗୀୟତେ—ଅନୁବନ୍ଧ )

ଅନ୍ତ ସୁରତେ ଗୋପୀକାମାନେ ଉଭା ହୋନ୍ତି ଟଳଟଳରେ
ଅସ୍ତବ୍ୟସ୍ତରେ ବାସ ପିନ୍ଧନ୍ତି ବାନ୍ଧନ୍ତି ମାଳ ବାଳରେ ॥ ୧ ॥

—ଗୀତ—

( ଶ୍ରୀ ରାଗେଣ ଗୀୟତେ )

ଅବ ଦେଖୋ ମାଇ   ମଦନ ନଡ଼ାଇ
ଖୋଲ୍ଲ ବେଣୀ ଉଡ଼ତ ନଶାନ
ଆସେ ଋଷି ସକଲ   କୁଚ ଢ଼ାଲ ବଗଲ
ରୋମାବଲୀ ଛତୁଆର ଆନ ॥ ୧ ॥

ଆଙ୍ଗମେ ନଖ ଘାଉ  ପଥ ହୁଡ଼ଇ ଯାଉ
କଟି ସିଂହେ କଙ୍କିଣୀ ନାଗର
ଅଙ୍ଗୁ ଖସେକ ଚଢ଼ି  ଫିଙ୍ଗି ଆସେ ପଗଡ଼ି
ବଚ୍ଛେଦ ଉଡ଼େ ମଦନ ପଗ ॥ ୨ ॥

---

## ( ଚଉଦ )

### — ମଧୁପାନ ରଛାନ୍ତ ବୋଲି —

( କଂସ ସଂହାର ବାଣୀରେ )

ଅନଙ୍ଗ ରଙ୍ଗେ  ବେଶ ବଭଙ୍ଗେ  ଗୋପୀକା ଦ୍ୱାର ଗମନ୍ତ
ଅଧୀର ମତ୍ତ  ମାଦକ ମତ୍ତ  ପନ୍ତ ପନ୍ତରେ ଭ୍ରମନ୍ତ ॥ ୧ ॥
ଅମ୍ଭୋଜ ଗାର  କେ ହସ୍ତିଗାର  ଉପମା ଶୋଭା ପାଇଛୁ
ଅଚ୍ୟୁତ ପୁଂସ  ଇଭ ବଶେଷ  ମଣ୍ଟି ରମି କ ଯାଇଛୁ ॥ ୨ ॥
ଅନଙ୍ଗ ବାସ  ପତାକା ବାସ  ଖୋଷିଲେ ଗାଢ଼ ଫିଟଇ
ଅନ୍ତର ରତ୍ତ  କାଳରେ ଚନ୍ତ  ପଣନ୍ତ ମହା ଲୋଟଇ ॥ ୩ ॥
ଆଦର କର  କେଉଁ ସୁନ୍ଦରୀ  ପ୍ରବୋଧି ପୁନ ଖୋଷଇ
ଅବଲୋକନ  କୁଚ ଈଶାନ  ଚନ୍ଦ୍ର ଦେଖି କେ ହସଇ ॥ ୪ ॥
ଅଳପ ଦୂର  କର ଅମ୍ବର  ପୁଣ ଘୋଡ଼ାଇ ଦେଖଇ
ଆଣ୍ଠୁ ଜଘନ  ସନ୍ଧି ବସନ  କାଡ଼ି ଚନ୍ଧି ନରଖଇ ॥ ୫ ॥
ଆନ୍ଦୋଳ କରୁ  କା ଉରୁ ଗରୁ  ଚୁଲି ନ ପାରି ବସଇଁ
ଅଧିକ ଶ୍ୱାସ  କାମ ହୁତାଶ  ପୁନ ଜ୍ୱଳନେ ରସଇ ॥ ୬ ॥
ଅସିତ କେଶ  ପତ୍ତ ମାନସ  ଧରି ଭରି କେ ବାନ୍ଧଇ
ଅତସୀ ଧନୁ  ଗୁଣେ ଅତନୁ  ଚମ୍ପାବାଣ କ ସନ୍ଧଇ ॥ ୭ ॥
ଅର୍କଜା ତଟରେ  ଧୀର ସମୀରେ  ପୁଷ୍ପିତ ବନେ ବସନ୍ତ
ଅତନୁ ରସ  ମନେ ପ୍ରକାଶ  ଅବଶ ଲୋଟି ହସନ୍ତ ॥ ୮ ॥

—ଗୀତ—

( ଗଉଡ଼ ରାଗେଣ ଗୀୟତେ )

ଆଜ ମୋର ଜ୍ଞାନ ନାହିଁ ଏ ବାରୁଣି ଯୋଗେ
ଅବଲୋକ ହେମ ଘଟ ତସ୍କର ଜାଗେ ।। ଘୋଷା ।।
ଆଓଟରେ ମାଇ ଝାଡ଼ରେ ଛପଇ
ଆଓଟରେ ମାଇ ଝାଡ଼
ଅବ କୈସା ହୋୟେ ଜଗି ଆଓ ଛପି
ବେଗି ବେଗି ଦେଖି ଲାଗେ ଡର ବଡ଼ ।୧।

---

( ପନ୍ଦର )

— ମଧୁପାନ ବହ୍ଵଳ ବୋଲି —

( କଂସ ସଂହାର ବାଣୀରେ )

| | | | |
|---|---|---|---|
| ଅଜ୍ଞାନ ହୋଇ | କେ ଗୋପୀ କହ୍ନ | ଚନ୍ଦ୍ରର ବନିତା ରତ | |
| ଅନଙ୍ଗ ଯାଇ | ଆଣି ଶ୍ରେୟଇ | ତା ସଙ୍ଗେ ଆରମ୍ଭେ ରତ | ।। ୧ ।। |
| ଅମାବାସ୍ୟାରେ | ଚନ୍ଦ୍ର ଧ୍ୱଂସାରେ | ତା ସଙ୍ଗେ କଲା ସମର | |
| ଅନଳ ନେତ୍ର | ଗୃହାନ୍ତେ[୧] ଗାତ୍ର | ଭସ୍ମ ହୋଇଲା ଅମର | ।। ୨ ।। |
| ଆକାଶେ ତାର | ଭସ୍ମ ନକର | ପୂର୍ବ ଦେବ ଗୁରୁ ଯିବ | |
| ଅଧରୁ ତାର | ରମଣୀ ତାର | ସୁଧା ଦେଇ ଦେଲା ଜୀବ | ।। ୩ ।। |
| ଅଙ୍କୁର କଲା | ସକାରେ ହେଲା | ବୋଲାଇ ସେ ରତ ପତ | |
| ଅମୃତ ଧାମ | ସେ ବନୁ ନାମ | ସୁଖେ ବହରେ ଦମ୍ପତ | ।। ୪ ।। |
| ଆନ କେ କହ୍ନ | ବହ୍ଵଳ ହୋଇ | ସିନ୍ଧୁ ମନ୍ଥି ଗଲେ ହର | |
| ଆଶୁକ ପାଣି | ବୁଡ଼ଣା ପୁଣି | ଭସି ଭରେ ଥରହର | ।। ୫ ।। |

---

୧ । ଗୃହନ୍ତେ (ପୋଥିପାଠ)

ଅନଙ୍ଗ ଯାଇ     ମୀନେ ବସାଇ     ଉଦ୍ଧବ କୃପା ମନରେ
ଅନନ୍ଦ ଶିବ     ଲଭିଣ ଜୀବ     ସେ ଦିନୁ ବସେ ମାନରେ ॥ ୬ ॥

ଅମ୍ବୁଜା ଶଚୀ     ସେନେହ ସଞ୍ଚି     କାମକୁ କଲ ପ୍ରଦାନ
ଅଚ୍ଛ ସମ୍ଭାର     ବିଭୂତି ଘର     ରସେ ଯୌତୁକ ନଦାନ ॥ ୭ ॥

ଅନର୍ଥ ବାଣୀ     ରମଣୀ ମଣି     ବିଷ ଭକ୍ଷିଲେ ଈଶାନ
ଅରୁଣ ସୁଧା     ଦେଇଣ ବାଧା     ହରିଲ ନୂହଇ ସାନ ॥ ୮ ॥

ଆୟୁଧ ଅନ୍ଧ     ସଙ୍ଗରେ ଯୁଦ୍ଧ     ହେବାକୁ ତା ରୂପ ଶିବ
ଅଙ୍ଗରେ ହାରି     ପଳାଇ ଡରି     ଚନ୍ଦ୍ର ପାଦେ ରହେ ଶିବ ॥ ୯ ॥

ଅନ୍ଧକାରର     ପ୍ରବଳତର     ଦେଖି ଚନ୍ଦ୍ର ଘଉଡ଼ାଇ
ଅସ୍ଥିର ହୋଇ     ପଳାନ୍ତେ ସେନ୍ଧ     ସମୁଦ୍ରେ ମାରେ ବୁଡ଼ାଇ ॥ ୧୦ ॥

ଅନଳ ତାର     ଶ୍ୟାମସୁନ୍ଦର     ଦେବର ସଂଖ୍ୟା ବିଶେଷ
ଅଷ୍ଟାଧିକରେ     ପଞ୍ଚାଶତରେ     ଶ୍ରମ ଶତପଦେ ଶେଷ । ୧୧ ॥*

---

* ମୋଟ ପଦ ସଂଖ୍ୟା ୩୪୮ ।

## — ଚତୁର୍ଥ କୁସୁମ —

### ॥ ପ୍ରଥମ ଛାନ୍ଦ ଲେଖନ ॥

# ମନ୍ମଥ ବେଶ

( ରାଗ—କଲ୍ୟାଣ ଆହାର )

ଅନୁପ୍ରାସ—

ଅଟବୀ ଦେବୀ ନିର୍ମାଣି ଆଣି କଳ କୁଟୁଣି ଯନ୍ତରେ ମକର
ଅଙ୍ଗ ସ୍ୱର୍ଣ୍ଣ କର୍ଣ୍ଣ ମାଳ ରତ୍ନ ଶୁଣ୍ଡ ପ୍ରବାଳ ଦନ୍ତ ହାରକର
ଅଦ୍ଭୁତ, ଅକ୍ଷି ନିର୍ମିତ ମାଣିକ୍ୟର
ଆନନ ରସନା ପୁଷ୍ପରାଗ ଗୁର ଚରଣ ମଳନ ନକର ॥ ୧ ॥

ଅଶ୍ୱ ଅନ୍ତକ ଉଦ୍‌ଗାର × × ଶୋଭା ନଖରାଜେ ଗୁରୁ ମୋତିରେ
ଆସନ ଚରମ ମନୋରମ ହେମ ମଣ୍ଡପ ସେ ମଣି ଜ୍ୟୋତିରେ
ଅଦ୍ଭୁତ, ଆମଣ୍ଡନ ପୁଷ୍ପଛତ୍ରରେ
ଅଣ୍ଡଜ କେତନ ଘଟ ଚନ୍ଦେ ଉଡ଼େ ସ୍ତମ୍ଭ ଚନ୍ଦ୍ର କାନ୍ତ କାନ୍ତରେ ॥୨॥

ଅଟନ୍ତି ସାକ୍ଷାତ ମନ୍ମଥ ମନ୍ମଥ ମନମଥ ଗୋପ ରାମାର
ଆବେଷ୍ଟନ ସେ ମକରେ କରେ କରେ ଫୁଲ କୋଦଣ୍ଡ ପରା ମାରୁ
ଆଶୁଗ, ଆ କଳନା ଲଳନା ମାର
ଅକ୍ଷୟ ଉପାସଙ୍ଗ ସଙ୍ଗ କେତକୀ ଛୁରି ଖେଷି କଟୀ ସୀମାର ॥ ୩ ॥

ଅସି କଂଶୁକ ଅଂଶୁକ ପରେ ଶୋଭେ କୁସୁମ ମେଖଳା ବନ୍ଧନ
ଅଙ୍ଗୁଳିରେ ପୁଷ୍ପ କଙ୍କଣି ଗ୍ରନ୍ଥଣି ବଞ୍ଜୁଳ ଚନ୍ଦ ଆରୋପନ
ଆସନ, ଅଙ୍କେ ପ୍ରିୟା ଶୋଭା ବର୍ଦ୍ଧନ
ଅଭିନବ ରତି ରତି ବଲ୍ଲଭରେ ଜାତ ଉଭୟ ପ୍ରେମ ଧନ ॥ ୪ ॥

ଆମଣ୍ତ୍ରନ ହାର କେୟୂର କୁଣ୍ଡଳ ପୁଷ୍ପ ଗନ୍ଧ ବୃନ୍ତ ବେଶରେ
ଅଳି ଗୁଣ ଧନୁ ଝଙ୍କାର ଝଙ୍କାର ଝୁମ୍ପା ବାନା ପଦ୍ମକେଶରେ
ଅଚ୍ୟୁତ, ଅନକୁଳ ନାରୀ ନାଶରେ
ଅଟବୀ ଦେବୀ ଯେ କାମଧ୍ୱଜେ ପୁଜେ ଆରତି ବନ୍ଦାଇ ତୋଷରେ ।୫।

ଅନିଳ ମନ୍ଦ ମନ୍ଦ ସ୍ୱରେ କଳ କଳ ଯନ୍ତ୍ରେ ଯାନ ଚଳଇ
ଅନଙ୍ଗ ସ୍ୱରସ ଅକୂପାର ପାର ନ ପାଇ ବ ମଧ୍ୟେ ଖେଳଇ
ଆଲେକ, ଅବଳା ଆବଳୀ ଢାଳଇ
ଅତନୁ ଦ୍ୱକାର ଆକାର ଗ୍ରନ୍ଥିରେ ଜନ୍ମା ରଚି ଅଗ୍ରେ ମିଳଇ ।୬।

ଅମରଷରେ ବିଶେଷରେ ଉରଜ ଶମ୍ଭୂ ପରେ ଶର ପଡ଼ିଲା
ଅଧିକେ ଚମକ ଚମରୀ ନୟନା ମୋହେ ଅବମାରେ ପଡ଼ିଲା
ଅବଳା, ଆବନ୍ଧ କଞ୍ଚୁକ ଛୁଡ଼ିଲା
ଅନ୍ୟ ବାଣ ବୃନ୍ତେ ଗଣ୍ଡେ ଚୁମ୍ବଦେଲେ ଚେତି ପୁନ ବାସ ଭିଡ଼ିଲା ।୭।

ଅମ୍ବୁଜକର ପୁଲଶର ନକର ପଡ଼ିବା କାଳେ କେ ଆଡ଼ିଲା
ଅଞ୍ଜନ ଗୁଣ ଯୋଗ ଭ୍ରୂଚ୍ଛ କୋଦଣ୍ଡ ଅପାଙ୍ଗ ନାରାଚ ଛୁଡ଼ିଲା
ଅଚ୍ୟୁତ, ଅଣି କଂଶୁକୁ ଫେଡ଼ିଲା
ଅଙ୍ଗନା ଚନ୍ଦ୍ରହାସ ହାସ ଦେଖାଇ ଅଧରେ ରଦନ ଭିଡ଼ିଲା ।। ୮ ।।

ଅସ୍ତ୍ରବ୍ୟସ୍ତ କେ ହସ୍ତ ନ୍ୟସ୍ତ ଉରଜେ ବାଣ ପଡ଼ନ୍ତେ ଘନ ଘନ
ଅସମ୍ଭାଳ ବାଳୀ ଚରମ ଦେଖାଇ ମୁକୁଳ କୁନ୍ତଳ ସଘନ
ଆଲେକ, ଆଶୁଗ ନ କରେ ଲଂଘନ
ଅନ୍ତରେ ଚନ୍ଦ୍ର ତରୁଣୀ କେ ଲୁଚଇ ଦ୍ୱକାରେ କମ୍ପେ ଅପଘନ । ୯ ।।

ଅସକତେ କେ ନାରୀ ମଧ୍ୟେ ଲୁଚନ୍ତେ ବାଣ ମନଭେଦ ଭେଦଇ
ଅମ୍ବୁଜ କଳିକା ମୁଦ୍‌ଗରେ ବାଳିକା ଛିଡ଼ି ଭାଷି ନେହ ମୁଦଇ
ଅଚ୍ୟୁତ, ଆଗେ କେଳି ସମରଜଇ
ଆଶୁଗ ଆଶୁଗତି କରି ବଦ୍ଧାବ ଉଚଲେ ହେ ପୃଷ୍ଠେ ଖେଦଇ । ୧୦ ।

ଅବର ଅବରତ ମୁଷ୍ଟିବନ୍ଧରେ କୁଚ ଶମ୍ଭୁ ପରେ ମାରନ୍ତି
ଅଜସ୍ତ୍ରଗ ଘାତ ଅଙ୍ଗରେ ହେବାରୁ କରୁ ଧାରଧାର ଝରନ୍ତି
ଅଧିକ, ଅନୁରାଗ କସେ ଧରନ୍ତି
ଆକାଶ ଅରୁଣ ବତାନ ବନ୍ଧନ ପର ମାନସକୁ ହରନ୍ତି ।। ୧୧ ।।

ଆପଦନ୍ତ ମାର ପନର ପିଚକା ଗୃହଦ୍ୱାରେ ବରଷଇ
ଆନନ ସୁଧା କରୁ ସୁଧା ଜନ ନପ ଚଳେ ଶୋଭନ ଦଶଇ
ଅଙ୍ଗନା, ଅଙ୍ଗେ ଏଣ୍ଟ ଲକ୍ଷ ଆସଇ
ଆଜ କି ଘନ ଜଘନା ଘନରସ ବରଷାରେ ମନ ତୋଷଇ ॥ ୧୨ ॥

ଆଲୋକ ଚନ୍ଦ୍ର ଧାପ ତୁଳା ବର୍ତ୍ତୁଳା ମନ ସର୍ବାଁ ଯାନ ପ୍ରବେଶ
ଆଖଣ୍ଡଳ ଦିଗେ ମିଳନ୍ତେ ଲଳିତା ତାମ୍ବୁଳ ସେବାରେ ଆବେଶ
ଆଲୋକ, ଅଚ୍ୟୁତ ମନମଥ ବେଶ
ଆଳାପ ରମଣୀ ଫୁଲ ବାଣେ ଭେଦ ମଣି କୁଚ ଉମା ଗାବେଶ ॥ ୧୩ ॥

ଅର୍ଦ୍ଧ ଚନ୍ଦ୍ର ଭ୍ରମ କରଜ ଚିହ୍ନରେ କସ୍ତୁରୀ ମଦର ଗରଳ
ଅମୃତ କର ରଜ ଭ୍ରମ ବିଭୂତି ଅମ୍ବବର ଦ୍ୱାର ତରଳ
ଆମଧ, ଅଷ୍ଟ ରୋମାବଳୀ ସରଳ
ଆଲୋଚନା କରି ଉମ୍ବରୁ ତ୍ରିଶୂଳ କୁଳାଙ୍ଗନା କର ତରଳ ॥ ୧୪ ॥

ଅନ୍ତର ଏମନ୍ତ ରସଗର୍ଭେ ଶୁଣି ସୈଶାନ୍ୟେ ବିଶାଖା ପାଶରେ
ଆନନ୍ଦ ସମ୍ପତ୍ତି ଦମ୍ପତ୍ତି ଦୃଢ଼େ ସେ ଗନ୍ଧ ଚନ୍ଦନ ବିଶେଷରେ
ଅବଳା, ଅଗ୍ରେ କଲେ ବନ୍ଧ ଷ୍ଟନର
ଆଜ ବୃନ୍ଦାରକ ବୃନ୍ଦାବନ ଚନ୍ଦ୍ର ଦୃଷ୍ଟି ରାଧା ଭୋଗ ତୋଷରେ ॥ ୧୫ ॥

ଅମ୍ଭୋଜନୀ କୁଳ ବ୍ୟାକୁଳ କରଅ କର ଶରେ ବନ ଦୟନେ
ଅନୋଚିତ ଚିତ୍ତ ଅନ୍ଧକାର ଆଣି ଘୋଟାଅ ଅବଳା ନୟନେ
ଆଲୋକେ, ଆପେ କୁମୁଦ ବିଶୟନେ
ଅମର ସରସ ଜଳେ କୁଚ କୋକ ଯୁଗ ସଂସ୍ଥିତ ବିଚୟନେ ॥ ୧୬ ॥

ଆପୀଡ଼ିତ କରି ପାଣି ପ୍ରବଳରେ ବିହାର ମକର ଅଷ୍ଟୁ ତ
ଅନଙ୍ଗ ବାଣ ସଂଘାତ ବିଘାତରେ ଅଦ୍ୟରେ ଆମ୍ଭେ ମୁହୂର୍ତ୍ତିତ
ଅଚ୍ୟୁତ, ଆଶୁଗ ମାରଣ କୁହିତ
ଆପ୍ୟାୟିତ ଚିନ୍ତ ଅମୃତ ନିକର ଓଷ୍ଠ ଦେଇ ଅଭିବାଞ୍ଛିତ ॥ ୧. ॥

ଆଳାପ ଆଶ୍ଳେଷ ଶ୍ଳେଷ ଶୁଣି ତମାଲତା ପାଶେ ମିଳି ଉତ୍ତରେ
ଆଲୋକ ଭ୍ରମର ବିଗ୍ରହ ଗୃମର ସେବ କହେ କାମ କାତରେ
ଅଚ୍ୟୁତ, ଆଖଣ୍ଡଳ ବଳ ଭିତରେ
ଅଭ୍ର ଦନ୍ତ ବ୍ୟାଘ୍ର (?) ମକର ନୂତନ ଶତ ଅଙ୍କେ ପ୍ରେମ ଜାତରେ ॥ ୧୮ ॥

ଅଶନ ବାଣ ପ୍ରହାର ଏଣୁ କୁଚ ଗିରି ବକ୍ଷେ ବନ୍ଧ ଉଦରେ
ଅପଘନ ଘନ ଘନରସ ଯୋଗ କାମଚାପ ନାଶ ବାଦରେ
ଅଚ୍ୟୁତ, ଅଙ୍ଗ ବୁଡ଼େ ମାର ନାଦରେ
ଅବଲମ୍ବ ତବ କୋଇଳି ପିକ କଳ ବାଣୀ ରୁନ୍ଧଇ କଣ୍ଠ ଦରେ । ୧୯ ।

ଅନଳ ଦରେ ସୁଦେବୀ ପ୍ରାଣେ ମିତ୍ରଂ ସେବିଲେ ସେ ଜଳ ସୁବାସେ
ଅର୍ଚ୍ଚନ ସୁମନ ଅଞ୍ଜଳି ବଚନ ରଚନ ଇନ ପୀତବାସେ
ଆରୋହ, ଅଛ ମକର ସୁତ ବାସେ
ଆମ୍ଭୁ କ୍ଷେତ୍ର ପ୍ରାପ୍ତେ ତନୁ ମଜ୍ଜନ କର କର୍ମେ ଉତ୍ସଭ ବ ସେ । ୨୦ ।

ଅଟ ବୃନ୍ଦାବନ ଦ୍ୱିଜରାଜ ଯେନ ହେମ କୁମ୍ଭ ପାଣି ବହିତ
ଅବସୃବେ ତିଳ ତଣ୍ଡୁଳ ଦାନକୁ ଦେବୁଂ ଯେନ କୋଳ ସହିତ
ଅଚ୍ୟୁତ, ଆମଜ୍ଜନ ଦାନ ଯେ ହିତ
ଆଚରଣ କର ଯଥୋକ୍ତ ଫଳଦ ନ ପୀଡ଼ିବ ହର ଅହିତ ।। ୨୧ ।।

ଅରୂପ ତ ଦଣେ ରଙ୍ଗଦେବୀ ପ୍ରାଣେ ମିତ୍ରଂ ସେବେ ରାଗରଙ୍ଗରେ
ଆପଣେ ଦର × × ଚଢ଼ି ମକର କୋଳେ ଭର୍ଗବୀ ତରଙ୍ଗରେ
ଆପଗା, ଅଙ୍ଗନା ସେବନ୍ତି ସଙ୍ଗରେ
ଅଟେ କୃଷ୍ଣବେଣୀ ଶୋଭନା କେ ପୁଣି ସ୍ଥିତ ଚନ୍ଦ୍ରଭାଗା ଅଙ୍ଗରେ ।୨୨।

ଆନନ ପୁଷ୍କର ଭାସ୍କରଜା କତ ବିକଚ କୁମୁଦ ପ୍ରଭାସେ
ଉଛନ୍ତି ନର୍ମଦା ପ୍ରମଦା କେ ପୁନ ରଙ୍ଗେ ସରସ୍ୱତୀ ପ୍ରଭାସେ
ଅଚ୍ୟୁତ, ଆମ୍ଭ ମନକୁ ଏ ଆଭାସେ
ଆପୀଡ଼ିତ ଶର ଶରବ୍ୟ ଏ କୁଚ କଳଶ କ ହେତୁ ନ ଭାଷେ । ୨୩ ।

ଅସ୍ତ୍ରପ ଦଗରେ ଚସାର ଆଗରେ ପରବେଶ ପୂନ ହୋଇଲେ
ଅମ୍ବର ନଉଚ୍ଛଳ ବାଳ କରଣ ବାସ ସେବା ସେବ ବୋଇଲେ
ଆପଣେ, ଅନୁଜାତ କ ଅଇଲେ
ଅଙ୍କେ ଅଭିନବ ଗଜଘ ଧରଣ ମାରଯାନେ ଶୋଭା ପାଇଲେ ।। ୨୪ ।।

ବ୍ୟାଖ୍ୟାନୋପମେୟଂ — ଯଦୁକ୍ତଂ—

ଶ୍ଳୋକ — ନ ପଦ୍ମମୁଖମେବେଦଂ ନ ଭୃଙ୍ଗୌ ଚକ୍ଷୁଷି ଇମେ
ଇତି ବିଶିଷ୍ଟସ୍ୟାଦୁତ୍ତର ବ୍ୟାଖ୍ୟାନୋପମା ଯଥା ।

ଅନଙ୍ଗ ଆଶ୍ରିତ କୁଚ ଭ୍ରମେ ପ୍ରହାର କୁସୁମ ସାୟକ
ଅଶୋକ ଅଙ୍ଗୁଳି ସପ୍ରଭା କଳିକା ନଖ ମଣ ବାଣ ପ୍ରତ୍ୟେକ
ଅଚ୍ୟୁତ, ଆମ୍ର ସଞ୍ଜରଭ କାମୁକ
ଅକ୍ଷି ଉତ୍ପଳ କମଳ ମୁଖ ମଣ ବାଣ ରଖେ ରତି ନାୟକ ॥ ୨୫ ॥

ଅତସୀ ଧନୁ ଭ୍ରୂ ନୋହେ ଭ୍ରମର ଗୁଣ ନୋହେ ଲଞ୍ଜି ଅଞ୍ଜନ
ଅରଣ୍ୟ ପ୍ରସୂ ବାଡ଼ୀ ନୋହେ ଶ୍ୱାସ ଏ ନୋହେ ମଳୟ ପ୍ରଭଞ୍ଜନ
ଅଚ୍ୟୁତ, ଅଙ୍ଗ ସୁକେତକୀ ରଞ୍ଜନ
ଅନେକ କୁସୁମ ସୁଷମ ସଜାଇ ନୁହଇ ଏ ତନୁ ସଜନ ॥ ୨୬ ॥

ଅନ୍ତକ ହଣରେ ପାଶରେ ମିଳନ୍ତେ କୃଷ୍ଣ ଭୁଙ୍ଗବଦ୍ୟା ହରଷ
ଅମ୍ବୁଜ କୁମୁଦ ମାଳ ଦେଇ ମୁଦ ବଲ୍ଲିକା ବାଦନ ସରସ
ଅଙ୍କରେ, ଅଛନ୍ତି ଯା ବାସ ସାରସ
ଅବଳା ଶୋଭା ସରସ୍ୱାନ ଆଖିଲ୍ଲକ ମଜ୍ଜନରେ ଜାତ ତରସ ॥ ୨୭ ॥

ଅମ୍ବର ପର ମଣିଲେ କ ବେଣୀ ଉରଜ ମଣିଲେ ମନ୍ଦର
ଅଭ୍ରମୁଂ ବଲ୍ଲଭ ଗତି ଦେଖି ଲୋଭ ଲଭରେ ହେବ ପୁରନ୍ଦର
ଅଚ୍ୟୁତ, ଅଧର ଅମୃତେ ସାଦର
ଅପାଙ୍ଗ ବୃଷମ ହିସ ମନେକର ସନ୍ଧି ହୋଇବ କ ବିତର ॥ ୨୮ ॥

ଅନୁକ୍ରୋଶ କର ଆକ୍ରୋଶ ବଧିରେ ନ ମଜ୍ଜ ଏ ନବ ଅବଳା
ଅଧିକେ ମରମେ ନସରମେ ପଶେ ତବ ନେତ୍ରପାତ ସବଳା
ଅଚ୍ୟୁତ, ଆମ୍ଭେ ନୋହୁଁ ରଣ ପ୍ରବଳା
ଆଲୋଚନା ସୁଲୋଚନା ଠାରୁଂ ତେଜ ଅଳତା ବ ନା ବନ୍ଧା ବଳା ॥ ୨୯ ॥

ଅଗ୍ନି ହଗରେ ବେଗରେ ପରବେଶ ଇନ୍ଦୁଲେଖା କଲେ ଅର୍ଚ୍ଚନ
ଆଦର ଆଦରେଶ ସେବା ଆଚରି କହନ୍ତି ସରସ ବଚନ
ଅଚ୍ୟୁତ, ଆଗମ ମଧୁର ରଞ୍ଜନ
ଅଧାହାର ରତି ନାହାର ବସନ୍ତ ବାସ ଆମନ୍ତ୍ରଣ କାଞ୍ଚନ ॥ ୩୦ ॥

ଅତି ସୁହୃଦ ପଣ ହେବ ଆପଣ ବାହାରିଛ ମିତ୍ର ଛଦରେ
ଅଶେଷ କୁସୁମ କାନ୍ତି ଦନ୍ତ ହଅ ପରାଗ କପଟ ଅଦରେ
ଅଚ୍ୟୁତ, ଅଯୋଗୀ ଲେଖା ନୋହୁଂ ଯାରେ
ଅସହ ମାନ ମାନବନ୍ତ ବହିର ସନ୍ଧିବେ କ ରତ୍ନ ଦବରେ ॥ ୩୧ ॥

ଅର୍ଦ୍ଧାଙ୍ଗେ ମାରକତ ଉମା ରଖିଲେ ସ୍ମରହରେ ମୁଖ ଧାତାର
ଅକ୍ଷି ସହସ୍ରେ ଆଖଣ୍ଡଳ ଆଲୋକେ ବହୋରେ ଉପେନ୍ଦ୍ର ବନତାର
ଅଚ୍ୟୁତ, ଅମୃତ କର ରମା ତାର
ଅମରବନ୍ତ ହୋଇ ଭୂବ ବଞ୍ଚିବେ ସେ ସ୍ୱାମବନ୍ତ ଜାମାତାର ।୩୨॥

ଅସ୍ତୁ, ପରମ ଶ୍ରେଷ୍ଠ ସଖୀ ଏ ପରଶ୍ଳେଷ ସ୍ଥଳ ବଦ ଭାରତୀ
ଅଧ ଊର୍ଦ୍ଧ୍ୱ ଯାନ ଭ୍ରମଣ ରମଣ ମଦନ ପ୍ରିୟା ଶୋଭା ରତି
ଅଚ୍ୟୁତ, ଧର ଧନସ୍ଥାରେ ପୀରତି
ଆନ କେ ବୋଲେ ଉଚିତ ଏ ମକରଯୁତ ଧନସ୍ଥାରେ ମୁରତି ।୩୩।

ଅନୋଚିତ କାସ୍ଥାବଳୀର ହରଣ ଅତନୁର ବେଶ୍ଟ ପ୍ରସଙ୍ଗ
ଆଦ୍ରର ଦକ୍ଷିଣ ମୁଖ ହେଲେ ଦୁଃଖ ଏ ହେତୁ ତେଜନ୍ତୁ ପ୍ରସଙ୍ଗ
ଅବଳା, ଆନ ବୋଲେ ରଙ୍ଗ ପିଶଙ୍ଗ
ଅହିତ ବହିତ କଲୁ ଯେଣେ ମାଭ ଶୂନ୍ୟ କରବ ଉପାସଙ୍ଗ ।୩୪।

ଆସି ଜ୍ୟେଷ୍ଠା ଦାଶେ ମିତ୍ରଂ ବୋଲେ କ୍ଷମ ଦୋଷ ନୋହେ ଶଠ ରମଣ
ଅଭ୍ରୁ ଇଭ କୁଚ କୁମ୍ଭର ଆରମ୍ଭ ମଧ୍ୟକୁ ଅଶନ ନ ମଣ
ଅରଣ୍ୟେ, ଆଗେ ଇନ୍ଦ୍ର ହୋଇ ଭ୍ରମଣ
ଅପସର ଶଶିକଳା ଚନ୍ଦ୍ରଲେଖା ଗୋପିକା ନାମ ସାର ମଣ ॥୩୫॥

ଆନ କେ ବୋଲେ କନଷ୍ଠା ବେଗୀ ହୋଇ ଜ୍ୟେଷ୍ଠା ନ କର ପରଗ୍ରହ
ଅତନୁ ବାସ ପିପ୍‌ପଳ ମନ୍ଦ ହନ ହନା ଅଷ୍ଟରଣ ବଗ୍ରହ
ଆଶ୍ଲେଷା, ଆଲୋକ ରୂପ ଅବଗ୍ରହ
ଆଜୁଁ ମଦନ ଗୋପାଳ ନାମପାଳ ଗୋପୀଙ୍କି ନ କର ବଗ୍ରହ ।୩୬।

ଆସି ମଞ୍ଜରୀଗଣେ ମଧ୍ୟେ ମିଳନ୍ତେ ପୂଜଲେ ଯୁଗଳ ଚରଣ
ଅତନୁ ବସନ୍ତ ବାସ ହୋଇ କର ଆମ୍ରର ବୃକ୍ଷ ଆଚରଣ
ଅଚ୍ୟୁତ, ଆମ୍ର କୁଚ କୁମ୍ଭ ବାରଣ
ଆଲୋକ ଖଣ୍ଡ ନଖାଙ୍କୁଶ କର୍ମାଇ ଗେଲେ ହୋଇ ଅପବାରଣ ।୩୭।

ଅକ୍ଷୟ ତୃଣ ଲକ୍ଷ ଲକ୍ଷ ନ,ରତ ବୃଷ୍ଟି ଦେଖି କେହ୍ଣୁ କହଇ
ଆଶୁରେ ମଞ୍ଜରୀ କର୍ମିକା କ ଚନ୍ଦ କୁଚ ଗିରି କର୍ମ ବହଇ
ଅଚ୍ୟୁତ, ଆମ୍ର ମତ ବୋଧ ନୁହଇ
ଅଟ ହରି ହରିଣାକ୍ଷୀ ବକ୍ଷ ତରୀ ନଖ କିଂଶୁକ ଏ ଶୋହଇ ॥୩୮॥

ଅଛି ବାଣ ଘାତୁଂ ଏ କୁସୁମ ବାଣ ଅଧିକ ନକ କେ ଘଟିଲା
ଅଙ୍ଗ ସ୍ୱେଦ ସାତ୍ତ୍ୱିକରେ କୃଷ୍ଣଚନ୍ଦ୍ର ଦେଣୁ ଦ୍ରବାଅ ଦୋଷଟୀଲା
ଅନଙ୍ଗ, ଅକୃପାରେ ତନୁ ଭାସିଲା
ଅକୋଳବନ୍ତ ହେଲେ କୋଳ ଦେ଼ଇକ ନ ତାରବାରୁ ଆଭାସିଲା ।୩୯।

ଅର୍କଜା କୂଳରେ ସକଳ ଦୁକୂଳ ଶୋଷି କୂଳ ଯେନ ହରଇ
ଆଲୋକ ଧନ୍ଦୁଡ଼ ଚନ୍ଦ୍ରଘାତ ଜ୍ୟୋତ୍ସ୍ନା ଜଳମଧ୍ୟେ ଆସେ ଲହରି
ଆଳି କେ, ଆଲୋକ ବୋଲେ ଦେଖ ହରି
ଅସି ଧରି କାମ ଝମକାଇ ଏହା ମଧ୍ୟରେ ଲୁଚି ନ ଓହରି ॥ ୪୦ ॥

ଅନ୍ତର ଲବେ ଜାଣିଲେ ଅବଲମ୍ବେ ଏହୁ ଶସ୍ତ୍ରେ ତନୁ ଭେଦିବ
ଅଙ୍ଗୀକାର ଅଙ୍ଗୀକାର ପଟେତରି ସିନ୍ଧୁଲେ କେ ଜଡ଼ ଛେଦିବ
ଅନଙ୍ଗ, ଅ × × ବୋ଼ଲେ ଥିଲି ଜୀବ
ଅନୁକମ୍ପା ସ୍ଥାନେ ହ୍ରଦ ସଂସ୍ପୃଷ୍ଟକେ ଭରି ଏହୁ ଅର୍ଗ ମୁଦିବ । ୪୧ ॥

ଆନ କେ ବୋଲେ ଆନ ନୋହେ ମଦନ ବହ୍ନି ଏହା ହୃଦେ ଜ୍ୱଳତ
ଅଶ୍ରୁ ଉତ୍ପଳ ମକରନ୍ଦ ବରଷି ନିଷ୍ଫଳ ନୟନ ଲଳତ
ଅଙ୍ଗରେ, ଅମ୍ବୁ କଣ ସ୍ୱେଦ କଳତ
ଆଲୋକେ ସ୍ତମ୍ଭ ଅମ୍ବୁରୁହ ରୋମାଞ୍ଚ ନାଦସ୍ୱର ଭଙ୍ଗ ମିଳତ ॥ ୪୨ ॥

ଅଧିକ ତରଙ୍ଗେ ବେପଥୁ ବୈବର୍ଣ୍ଣ ଅସିତ ପ୍ରଳୟ ରୂପରେ
ଆନ ବୋଲେ ଆମ୍ଭ ସପତ୍ନୀ ଏ ହ୍ରଦ ଜଳେ ମାନ ଜାତ ରୂପରେ
ଆନ କେ, ଆଣ ଦୃଷ୍ଟି ଏହୁ ରୂପରେ
ଅମ୍ବୁଦ କୋଟୁଂ ଅଭିମାନେ ବଜୁଳି ଆସି ଲୁଚନ୍ତି ଏ ଆଗରେ । ୪୩ ।

ଆଦ୍ୟା କେ ବୋଲେ ସୁତା ଗର୍ଭେ ଲୁଚି ଦେଖେ ରାଧାକୃଷ୍ଣ ଲୀଳାକୁ
ଅମୃତ କର ଶଙ୍କର ସେବ ଦେଖେ ସୁରତେ ରତି କୁଶଳାକୁ
ଅଧିକ, ଅଭାଗ୍ୟ ବଶରୁଁ ବାଳାକୁ
ଆଲିଙ୍ଗନ ରତେ କେହୁ ମୋ ପୁରତେ ନାଚନ୍ତି କାମ କଳାକୁ ।୪୪।

ଅନୁରାଗ ଲତା ଧରେ ମଞ୍ଜୁଳତା କେ ବୋଲେ ଯମୁନା ହ୍ରଦରେ
ଆରକ୍ତକରେ ବୃନ୍ଦା ବୋଲେ ଏ ପକ୍ଷୀ ରୁତ ହୁଳହୁଳି ସାଦରେ
ଆଳି ଯେ, ଅନୁରୂପେ ବାଣୀ ବାଦରେ
ଅତ୍ୟନ୍ତ ପ୍ରଶେ ରାଧା ରୂପେ ଅନେକ ମଜ୍ଜନ ମାଧୁର୍ଯ୍ୟ ମୁଦରେ । ୪୫ ।

ଅବରୋହି ଏହି କାଳରେ ମକର ଯାନୁଂ କୃଷ୍ଣପ୍ରିୟା ସହରେ
ଅକ୍ଷୟ ତୂଣ ପୃଷ୍ଠ ବାଣ କମାଣ ବୀରବେଶ ଯେତେ ଦେହରେ
ଆପଣେ, ଅଟବୀ ଦେବୀ ତା ସଂହରେ
ଆଭରଣ ଲଳିତାଦି କାନ୍ତ ଶୂନ୍ୟ ଦେହେ ରାଧା ନେହ ବହରେ ।୪୬।

ଅଶନ ଘୃତ ପକ୍ୱ ଯାହା ଯାବନ୍ତୁଂ ଆଣିଥିଲେ ଘୃତ ବକାରେ
ଅମୃତକୁ ବାଦ ଆମ୍ର ଫଳ ଆଦି ବୃନ୍ଦା ଦେଲେ ବହୁ ପ୍ରକାରେ
ଅଚ୍ୟୁତ, ଅଧରାମୃତ ରାଧିକାରେ
ଅବଶେଷ ବେନି ଆଚମନ ଅନ୍ତେ ବାଣ୍ଟିଲେ ସର୍ବ ଗୋପୀକାରେ ।୪୭।

ଆଭରଣ ପୂତ ଅବାରଣ ଆଚରଣ ରଣ ରଣ ହକାରେ
ଆମନ୍ତ୍ରିନ କରି କବରୀ କୁସୁମେ ବେଶର ମଣ୍ଡି ନାସିକାରେ
ଆଳାପ, ଅଲକ୍ଷ ଏତ ଲସିକାରେ
ଆଦର ଶ୍ରୀ ଶ୍ୟାମସୁନ୍ଦର ଦେବର ହରିପଦ ଭବ ଶଙ୍କାରେ ।। ୪୮ ।।

— ଚତୁର୍ଥ କୁସୁମ —

॥ ଦ୍ୱିତୀୟ ଛାନ୍ଦ ॥

# ବିହାର ସୁରତ

( ରାଗ — ଦେଶାକ୍ଷ )

( ସପ୍ତମୀ ଚଉତିଶା ବାଣୀରେ )

ଅଚ୍ୟୁତ ପ୍ରିୟା ବସାଇ ଅଙ୍କରେ    ଅଙ୍ଗୁଳି ମଣ୍ଡି ଗୃହ୍ଣି ଚିବୁକରେ
ଅଭିନବ ବାଣୀ ଆକାଂକ୍ଷା କରେ    ଆମ୍ର ଆଗମ ଯେମନ୍ତ ପିକରେ
ଅଙ୍ଗନା, ଆଜ ନବ ବାଣୀକି
ଅଳ୍ପ କଣ୍ଠ ଭଙ୍ଗ ବୀଣା ଆଣିକି ॥ ୧ ॥

ଅଧର ପ୍ରବାଳ ଶୋଭେ ରାଗରେ    ଅଛି କୁଚ ତୁମ୍ବି ବକ୍ଷଭାଗରେ
ଅତି ଗୁଣାକର କଣ୍ଠ ରାଗରେ    ଆଶ୍ରୟ ତ ସରସ୍ୱତୀ ବାଗରେ
ଅବଳା, ଅଦେହର ସଙ୍ଗୀତେ
ଅଭିଳାଷ ମାତ୍ର ବିଳାସ ଗୀତେ ॥ ୨ ॥

ଅଙ୍ଗନା ମଧ୍ୟ ଭାବକୁ ରଖାଇ    ଅମୃତ ହାସ ନେତ୍ରକୁ ଚଖାଇ
ଅରଣ୍ଡି କୋରକ ଦ୍ରୁମେ ଦେଖାଇ    ଆପେ କର୍ଣ୍ଣ କାହା ରୂପ ଯୋଖାଇ
ଅଚ୍ୟୁତ, ଅବଲୋକି ଭାଷନ୍ତି
ଆବଳି ଚନ୍ଦ୍ରକଳା ଏ ଦିଶନ୍ତି ॥ ୩ ॥

ଅଲ୍ପ ଆଳାପରେ ଛିଦ୍ର ପାଇ    ଅଙ୍ଗନା ବଚେ କହେ ଭ୍ରୂ କମ୍ପାଇ
ଆଳସ୍ୟ ହୃଦେ ବିଚ୍ଛେଦ ନ ପାଇ    ରାଧିକେ ଲକ୍ଷ ନୋହିବ କମ୍ପାଇ
ଅଚ୍ୟୁତ, ଆଜ୍ଞା ଦେଲେ ବସ୍ତ୍ରର
ଅନ୍ତେ ଚନ୍ଦ୍ରାବଳୀ ରୂପ ସଂହର ॥ ୪ ॥

ଆଶ୍ୱାସ ଶୁଣି ବଲ୍ଲଭ କାତରେ    ଆଶ୍ଳେଷ ଦେଇ ଅଶାନ୍ତ ରତରେ
ଅଞ୍ଚିତ ସ୍ୱାଦୁ ଗଙ୍ଗା ଅମୃତରେ    ଅମ୍ବୁଧି ମାର ଲେଖେ ରସୋତ୍ତରେ
ଅବଳା, ଅଷ୍ଟାପଦକୁ ଲଭି
ଆରକୁ ଠେକ ସେ ନେବ ବଲ୍ଲଭି । ୫ ॥

ଆଳସ୍ୟ ଯେଉଁ ମରାଳ ମାନସ    ଆନ ସରସୀର ସେବ ମାନସ
ଅମୃତ ଭୋଗୀ ଯେଉଁ ସୁମନସ    ଅତି ସ୍ୱାଦୁରେ ଲେଖେ କ ପନସ
ଅବଳା, ଅଳି ଦେଖାଇ ବନ୍ଧ
ଅଟେ ଏ କୃଜନ ପୁରୁଷ ବନ୍ଦୀ ॥ ୬ ॥

ଅତି ସୁମନ୍ତ ଦେଖି ଚାତକର    ଆପଗା ଅଛନ୍ତି ପଦ୍ମ ଆକର
ଆତପ ତୃଷା ଦ୍ୱାରା ତାପକର    ଆକାଶ ମାର ତା ସୁଖ ନକର
ଅଚ୍ୟୁତ, ଆପେ କହେ ମଧୁରେ
ଅଳି ଲାଳସୀ ଅଟଇ ମଧୁରେ ॥ ୭ ॥

ଅମ୍ଭୋଜନମା ବିୟୋଗ ସମାଧାନ    ଆନ ସୁମନ ନ କରେ ବିଧାନ
ଅମ୍ବୁଦ ଚାତକ ଅନୁସନ୍ଧାନ    ଆକାଶ ସ୍ଥାନ ନସ ଚୈନ୍ୟ ଆଧାନ
ଅବଳା, ଅଙ୍କ ପ୍ରାପ୍ତେ ଭ୍ରମଇ
ଆଜନ୍ମରୁ ନ ଜାଣଇ ନ ରମଇ ॥ ୮ ॥

ଆଳାପ ଏପରି ପରିଭାଷଣେ    ଅନ୍ତରୁ ସାପୁକେ ଲଭେ କଷଣ
ଅଙ୍ଗ ଷଣ ପୁଷ୍ପ କରେ ଦୂଷଣ    ଅମଣ୍ଡନ ହୋଇ ଗୁରୁ ଭୂଷଣ
ଅବଳା, ଆଚ୍ଛାଦଲେ ତାରେ
ଅତି ମୁକ୍ତ ଶେଯ ମଞ୍ଜୁଳତାରେ । ୯ ।

ଧୀର ଲଳିତ ନାୟକୋ ଯଥା — ଉକ୍ତଂ ଚ

ଶ୍ଳୋକ — ବିଦଗ୍ଧନବତାରୁଣ୍ୟପରିହାସବିଶାରଦଃ
ନିଶ୍ଚିନ୍ତୋଧୀର ଲଳିତଃ ସ୍ୟାତ୍ ପ୍ରିୟ ପ୍ରେୟସୀ ବଶଃ ।୧।

ଅନନ୍ତ ନାୟକ ଧୀର ଲଳିତ    ଅକୃପାର ପ୍ରେମ ନୋହେ କଳିତ
ଅଞ୍ଜନରେ ହରିତାଳ ଦଳିତ    ଅଙ୍ଗେ ଅଙ୍ଗେ ଏବେ ଶୋଭା ମିଳିତ
ଅଚ୍ୟୁତ, ଆରମ୍ଭିଲେ ରତିକି
ଆପୀଡ଼ନ ସ୍ତନ ହରେ ମନ୍ଥିକି ॥ ୧୦ ॥

ଆନମିତ କଚ ଆକର୍ଷଣ   ଅଦ୍ଭୁତ ସୁଖ ହୋଏ ବର୍ଷଣ
ଅଧିକ ନଖଘାତେ ଘର୍ଷଣ   ଅତନୁ ରସେ ଜାତ ହରଷଣ
ଅଚ୍ୟୁତ, ଆପେ ବଦ୍ଧ ମୁରତି
ଆଖିଏ ବାରେ ଆରମ୍ଭି ସୁରତି ॥ ୧୧ ॥

ଆନନ୍ଦେ ରସିଲେ କାମରସରେ   ଅମୃତକର ଉଦେ ଆକାଶରେ
ଅଙ୍ଗନା ଆରତ ବପା ବାସରେ   ଅମୂର୍ଚ୍ଛିତ ନେଶ ଚାମରସରେ
ଅବଳା, ଅମ୍ବରକୁ ଲୋଡ଼ଇ
ଆମ୍ରେଶ୍ୱର ଜାଣି ଗାଢେ ଭିଡ଼ଇ ॥ ୧୨ ॥

ଅଧିକ ବାରେ ହୁଅ ପରସନ   ଆକାଂକ୍ଷା କାମ ଗୃହରେ ଶୟନ
ଆଶ୍ଳେ ରସନାରେ ଦଂଶି ଦଶନ   ଆଶ୍ଳେ ଜଂଘେ ଛନ୍ଦ କରେ ବସନ
ଅବଳା, ଅଙ୍ଗ ସଉଦାମିନୀ
ଅତି କମ୍ପାଇ ଅର୍ଜୁନ ଯାମିନୀ ॥ ୧୩ ॥

ଅଣି କରେ ଧର କର୍ପୂର ରଜ   ଆକ୍ଷିପ୍ତ ନାୟକ ଅକ୍ଷି ମାରଜ
ଆଲିଙ୍ଗନେ ପତି ଧରେ ଉରଜ   ଅତି ବନିତରେ ବୋଲେ ବରଜ
ଅଚ୍ୟୁତ, ଆଜ ଏ ନିଶୀଥରେ
ଆସିବ ନାହିଁ ଜାଣିଥାଅ ଥରେ ॥ ୧୪ ॥

ଆମ୍ରେଶ୍ୱର ବେଗେ କର ଚରମ   ଅମ୍ବର ପିନ୍ଧେ ହୋଇ ସଭ୍ରମ
ଆମୁକ୍ତ କୁନ୍ତଳ କି ମନୋରମ   ଅମ୍ବୁଦ ଘୋଡ଼ାଇ ଦେଲା ଚରମ
ଅବଳା, ଅକ୍ଷି ସଂକୋଚିତରେ
ଅନାଇବା ଭଙ୍ଗୀ ରହେ ଚିତ୍ତରେ ॥ ୧୫ ॥

ଅଟବୀ ଦେବୀ ଶୀତ ଉପଚାରେ   ଅଙ୍ଗ ଶ୍ରମ ସ୍ୱେଦ ଶାନ୍ତ ପଚାରେ
ଆପଣାଗଣ ସ୍ନେହ ସମାଚାରେ   ଅଷ୍ଟସଖୀ ନିଜ ସେବା ପଚାରେ
ଅଚ୍ୟୁତ ଅର୍ଦ୍ଧାଙ୍ଗ ସେବା ତତପରେ
ଅଚ୍ଛନ୍ତି ମଞ୍ଜୁଷା ଏ ସମୀପରେ ॥ ୧୬ ॥

ଅରଣ୍ୟ ମଧ୍ୟେ ଏ କାଳେ ଭ୍ରମଣି   ଆଳି ସଙ୍ଗେ ଯେନ ବର ରମଣୀ
ଅର୍କଜା ଜଘନ ପୁଳିନ ମଣି   ଆସେବିଲେ ଗୋପ ରଜନୀ ମଣି
ଅଚ୍ୟୁତ, ଅବଲୋକିଲେ କୂଳ
ଅଟେ କେବଳ ବଟପୀ ସଂକୁଳ ॥ ୧୭ ॥

ଅଜସ୍ର ନବଢ଼ ଗଡ କାମର      ଅପସରନ୍ତ ଦୂରନ୍ତୁ ଅମର
ଅଟେ ସାଳ ସାଳ ଶୋଭା ଧାମର      ଆରବ ପ୍ରତିହାର ଏ ଭ୍ରମର
ଅର୍କଜା, ଅଟେ ପରିଖା ଧାର
ଅଚଳ ଚଳ ନାହିଁ ବସୁଧାର ॥ ୧୮ ॥

ଅଟେ ବସନ୍ତ କାମ ସେନାପତି      ଅଶ୍ୱ ମାତଙ୍ଗ ସ୍ୟନ୍ଦନ ସମ୍ପତ୍ତି
ଅଛନ୍ତି ଶକୁନ୍ତ ନଶାଦ ପନ୍ତି      ଅଜନ ଯୋନ ଆଦି ସର୍ବ ପତ୍ତି
ଆନକ, ଅଶୋକାଦି ସ୍ତବକ
ଆରବ ରଚିତ ପକ୍ଷୀ ସେବକ ॥ ୧୯ ॥

ଅଗସ୍ତି କଳି ବଳି ଶରାସନ      ଅଟେ ପାଟଳି ତୃଣ ପରସନ
ଆମ୍ର ଆଦି ବାଣେ ଦେବ ଶାସନ      ଅରି ବଞ୍ଜୁଳ ଏ ଅରି ନାଶନ
ଆଢ଼େଣି, ଅଟେ ଗୃନ୍ଥ ଚରାଟ
ଅସି କିଂଶୁକ ଧରେ କାମରାଟ । ୨୦ ।

ଅଧିକ କୁନ୍ତ କେତକୀ ରଜତ      ଆୟୁଧ ଚମ୍ପକ ଶେଳେ ବଜିତ
ଆର୍ଭିଗଳ ଗଦା ପୋଟଗ ଅର୍ଜିତ      ଅଛି ସେବତି ମୁଦ୍‌ଗର ଉର୍ଜିତ
ଆଲୋକ, ଅଛି ପରିଘ କୁନ୍ଦ
ଅଳି ପୁଙ୍ଗେ କାହାଳ ମୁଚୁକୁନ୍ଦ । ୨୧ ।

ଅଶ୍ୱଲ୍ଲକ ଏ ଅଟେ ନଟକାର      ଅରଣ୍ୟ ପ୍ରିୟ ଗାୟକ ଆକାର
ଅଛି ଶୁକ ପୌରାଣିକ ସ୍ୱୀକାର      ଅମାତ୍ୟ ପାରବତ ଅଧିକାର
ଅଧିକେ, ଅଟେ ଶାରି ପଣ୍ଡିତ
ଅନ୍ୟ ପକ୍ଷୀ ଭୃତ୍ୟଚୟ ମଣ୍ଡିତ ॥ ୨୨ ॥

ଅଛି ଟିଟ୍ଟିଭ କୋଟପାଳ ପଣ      ଅଟେ ଡାହୁକ ଡାକୁଆ ଆପଣ
ଆସିବ ବଚର ବାର୍ତ୍ତା ଅପିଣ      ଅଧିକାର ସଂବାଦ ଚଣ ପଣ
ଅନଳ, ଅଧିକାର ବଗୃରେ
ଅମୃତାଂଶୁ ମିତ ଛତ୍ରୋପଗୃରେ । ୨୩ ॥

ଅନଙ୍ଗ ଦୁର୍ଗେ ଏପରି ଖଟନ୍ତି      ଅବଲୋକ ଯୁବା ଧୀର ଭୁଟନ୍ତି
ଅଧିକେ ସର୍ବ ସୁମନ ଫୁଟନ୍ତି      ଆଶବ ମତ୍ତେ ମଧୁପ ରଟନ୍ତି
ଅଚ୍ୟୁତ, ଅଭିନବ ମଦନ
ଅଜା ଦୁର୍ଗ କି ଜାଣି ସଦନ ॥ ୨୪ ।

ଆସି ପକ୍ଷୀ ମୃଗ ସେବେ ସେବାରେ    ଆସବ ଶୁଭ୍ର ସ୍ୱଚ୍ଛ ପିବାରେ .
ଅଗ ନମି ତୋଷ ଫଳ ଦେବାରେ    ଅଶେଷ ପୁଷ୍ପବନ୍ତ ଲତା ବାରେ
ଅଚ୍ୟୁତ, ଆସି ପୁଷ୍ପ ତଳ୍ପରେ
ଆରୋହି ପୁଣ୍ଡରୀକ ମଣ୍ଡପରେ ।। ୨୫ ।।

ଅଷ୍ଟସଖୀ ନିଜ ସେବା ସେବନ୍ତି    ଅଧିକେ ବଲ୍ଲଭୀ ଶୋଭା ପ୍ରବନ୍ତି
ଅକ୍ଷି ଲାବଣ୍ୟ ପୀୟୂଷ ପିବନ୍ତି    ଆନ ପାନରେ କ୍ଷଣେ ନ ଜିବନ୍ତି
ଅଙ୍ଗନା, ଅଧୀନରେ ଆବେଶ
ଅଙ୍ଗେ ବସାଇ କରନ୍ତି ପ୍ରବେଶ ।। ୨୬ ।

ଆଣି ପ୍ରସାଧିକ ଗୁଚ୍ଛ କେଶରେ    ଅଳ୍ପ ଗଳ ଜୁଡ଼ା ରଞ୍ଜି ତୋଷରେ
ଆମଣ୍ଡନ ପୁଷ୍ପମାଳ ବଂଶରେ    ଅତି ଶୋଭନ ଝୁମ୍ପ ତପସରେ
ଅବଳା, ଅର୍ଦ୍ଧଚନ୍ଦ୍ର ଭାଲରେ
ଆପେ ତିଳକ ଲେଖି ମଞ୍ଜୁଳରେ ।। ୨୭ ।

ଆମଣ୍ଡନ ନାକ ନଥ ବେଶରେ    ଅଳକା ଆବ୍ଧ ଖଞ୍ଜି ହରଷରେ
ଅଟିତ ତାଟଙ୍କ କର୍ଣ୍ଣ ପାଶରେ    ଅଲମ୍ବିତ ହାର ଉରଦେଶରେ
ଅଚ୍ୟୁତ, ଅଙ୍ଘ୍ରି ମଣ୍ଡୁ ହରଷେ
ଅଙ୍ଗନା ନିଷେଧେ କର ସାରସେ ।। ୨୮ ।

ଆଣି କସ୍ତୁରୀ ଦଳ ମକରୀକ    ଅମର ନିବାସ କୁଚ ଗିରିକ
ଅଧିକାର ତହେ ମାଗୁଂ ଗୋରକ    ଆନନ କମ୍ପାଇ ପାଇ ହରିକ
ଅଙ୍ଗନା, ଆଣ୍ଟେ ଗ୍ରେଲ ଭିଡ଼ଇ
ଅଚ୍ୟୁତ କରଜ ଚିପି ପେଢ଼ଇ ।। ୨୯ ।

ଅଳ୍ପ ନଖ କଣ୍ଠ କକ୍ଷ ଦେଶରେ    ଅବଳା ମଜ୍ଜିଲା ଅତି ହାସରେ
ଅବକାଶ ପାଇ ଏ ଅବସରେ    ଆଣି ରଖି ଶମ୍ଭୁ ଢଗବାସରେ
ଅଙ୍ଗନା, ଅବଲୋକଇ ନାହିଁ
ଅନ୍ତେ ତୋଷ ବ୍ୟାଜେ କରଇ ନାହିଁ ।। ୩୦ ।

ଆନନ ଶୋଭା ଗୃହିଁ ଉଲ୍ଲୁକରେ    ଅତି ପଦ୍ମିନୀ ତ୍ରିବଧାନ କରେ
ଅଙ୍ଗୁଳି ଦେଇ ଗୁଚ୍ଛ ଚିବୁକରେ    ଅନୁରାଗେ ବୋଧି ଗୃହିଁ ପ୍ରକରେ
ଅଙ୍ଗନା, ଅନଙ୍ଗର ଏ ଦୃଶ
ଅଜସ୍ର ଜସ୍ର କଲ୍ଲ ତବ ଦୃଶ ।। ୩୧ ।

ଅନୁସରି ଅଛି ଏ ଆଶୟରେ  ଅନୁଗ୍ରହ ଥିବ ମୋ ବିଷୟରେ
ଅମୃତ କର ନଶି ଆଶ୍ରୟରେ  ଅତୁଳ ମଞ୍ଜୁଳ ନିଃସଂଶୟରେ
ଅଙ୍ଗନା, ଅନ୍ତ ହେଲେ ଯାମିନୀ
ଅନ୍ତରେ କି ହୋଇବୁ ତୁହିଁ କାମିନୀ ॥ ୩୨ ॥

ଆଭାସ ଏହିପରି ସରସରେ  ଆବେଷ୍ଟିତ କରି କଣ୍ଠଦେଶରେ
ଅନାବୃତ ହୋଇ କୁସୁମ ଶରେ  ଆସି ପରବେଶ କୁଞ୍ଜବାସରେ
ଅଧିକ, ଅକଥନ ଯେ ଶେଷେ
ଅଛନ୍ତି ମଣ୍ଡି ଶ୍ରୀ କୁଞ୍ଜ ବିଶେଷେ ॥ ୩୩ ॥

ଅଷ୍ଟସଖୀ ଅଷ୍ଟଦଳ କୁଞ୍ଜରେ  ଅଖଣ୍ଡଳ କୁଞ୍ଜେ ଚିତ୍ରା ସଜରେ
ଅନଳେ ଚନ୍ଦ୍ରରେଖା ବିରାଜରେ  ଅନ୍ତକେ ଚମ୍ପକଲତା ଉଜରେ
ଅସୃପ, ଆଗ୍ନେ ରଙ୍ଗ ଦେବୀ ଯେ
ଅମ୍ବୁପତିରେ ତୁଙ୍ଗବିଦ୍ୟା ବିଜେ ॥ ୩୪ ॥

ଅନିଳ ଦିଗେ ସୁଦେବୀ ଶୋହନ୍ତି  ଆଳି ଲଳିତା ଉତ୍ତରେ ରହନ୍ତି
ଅନଙ୍ଗଜିତ ବିଶାଖା ମୋହନ୍ତି  ଆଶ୍ରିତ ଅସଂଖ୍ୟ ଗୁଣୀ ନୁହନ୍ତି
ଅଦ୍ଭୁତ, ଅନେକ ରୂପ ହରି
ଅନଙ୍ଗ ପରି ନାରୀରେ ବିହରି ॥ ୩୫ ॥

ଆନ ନ ଜାଣେ ଏ କରି ସୁରତି  ଅନ୍ତେ ପାଞ୍ଚ କୃଷ୍ଣ ମୋରେ ପିରତି
ଅଳ୍ପ ପ୍ରକାଶେ କି ଯିବ ବିରତି  ଆଜ ହେବ ପରିହାସେ କିରତି
ଅବଳା, ଅତଏବ ଲୁଚାଇ
ଅଧର ଉରଜ କ୍ଷତ ବଞ୍ଚାଇ ॥ ୩୬ ॥

ଅଚ୍ୟୁତ ଅଙ୍ଗ କେ ମଣ୍ଡି କ୍ଷତରେ  ଆପେ ବୋଧେ ପରିହାସ ଉତ୍ତରେ
ଆନ ଦେଖିଲେ ଯେ ମାରି କାତରେ  ଅଙ୍ଘ୍ରି ଧନୁଇବ କ୍ଷଣ ଭିତରେ
ଅଚ୍ୟୁତ, ଅଳକା କପୋଳରେ
ଅରୁଣ ପଙ୍କ ରଜିବ ବଳରେ ॥ ୩୭ ॥

ଅଚ୍ୟୁତ ରାଧା ବିଜେ ଶ୍ରୀକୁଞ୍ଜରେ  ଅଧିକ ମଣ୍ଡଣି ଶୋଭା ପୁଞ୍ଜରେ
ଅବରଣ ଚନ୍ଦ୍ରାତପ କଞ୍ଜରେ  ଅମୂଲ୍ୟ ପଲଙ୍କ ପୁଷ୍ପ ଶେଯରେ
ଅଚ୍ୟୁତ, ଅଙ୍କେ ଧରି ବଲ୍ଲଭୀ
ଆନନେ ଚୁମ୍ବ ଦେଇ ସୁଖ ଲଭି ॥ ୩୮ ॥

ଅନିଳ ମନ୍ଦ ପୁଷ୍ପ ଗବାକ୍ଷରେ      ଆପ୍ରଚ୍ଛ ଭଙ୍ଗି ଜ୍ୟୋତ୍ସ୍ନା, ବଳକ୍ଷରେ
ଆଉଜାଇ ପଟ୍ଟ ଧରେ ବକ୍ଷରେ      ଆଶ୍ଳେଷ କରାଇ ମନ୍ଦ ଅକ୍ଷରେ
ଆଲୋକେ, ଅଳ୍ପ ଚନ୍ଦ୍ରାତପରେ
ଆପଣ ଦର୍ଶାଇ କାନ୍ତ ଉପରେ ॥ ୩୯ ॥

ଅନା ବୋଲୁଁ ନ ଅନାଇ ରମଣୀ      ଅଭ୍ୟାସେ ନତ କୁମୁଦ ଦ୍ୟୁମଣି
ଆଜ ନଗ୍ନ ବୋଲୁଁ ନାସିକାମଣି      ଅଙ୍ଗ କମ୍ପାଇ ମୁଖ ଦଶାମଣି
ଅଚ୍ୟୁତ, ଆକ୍ଷେପ ବନ୍ଧ ଠାଣିରେ
ଆଣି ରଖିଲେ ଶୁଆଇ ଅଙ୍କିରେ ॥ ୪୦ ॥

ଅଚ୍ୟୁତ ବୋଲେ ଗୋ ଖୋଲ ଭବନ ଅଭିଳାଷ ଦଶଂ[୧] ସତ୍ତ୍ୱ ଚୁମ୍ବନ
ଅମ୍ବୁଜ ରକ୍ଷଣେ ଯଥା ଜୀବନ      ଅନୁବନ୍ଧ ତଥା ମମ ଜୀବନ
ଅବଳା, ଅଳ୍ପେ ପ୍ରୀତି ଜନନ
ଅଧର ନିବେଶେ ପ୍ରେୟ ଆନନ ॥ ୪୧ ॥

ଅକଟ ଦେଲ୍ଲ ନ ଦେଲ୍ଲ ପରରେ      ଆମଞ୍ଜନ ହୋଇ ହର ବାରରେ
ଆଶ୍ଳେଷ ମାଧବ ସମ୍ବାଧିରେ      ଅଣିମାଦ ଭୋଗ କି ଶରୀରରେ
ଅଚ୍ୟୁତ, ଅତନୁ ରସେ ରସି
ଅଙ୍ଗୀକ୍ଷେ ଦଂଶକ ମାନ ସରସୀ ॥ ୪୨ ॥

ଆସି ମହାନିଶା ପରବେଶରେ      ଅଚ୍ୟୁତ ରାଧା ନିଦ୍ରା ଆବେଶରେ
ଅକ୍ଷି ସୃଷ୍ଟିତ ତନୁ ଅବଶରେ      ଆଉଜି ବକ୍ଷ କୁଚ ଅପସରେ
ଅଚ୍ୟୁତ, ଆଚମ୍ବିଲେ ସ୍ୱପନ
ଆଲିଙ୍ଗନ ପ୍ରିୟା ମୁଦ୍ର ନୟନ ॥ ୪୩ ॥

ଅଞ୍ଜନ କି ହରିତାଳେ ମିଶିଲେ      ଅସିତ ଘନେ ବିଜୁଳି ଦିଶିଲେ
ଅଷ୍ଟାପଦ ରାଜ ପଟ୍ଟେ କହିଲେ      ଆଖଣ୍ଡଳ ମାଚ୍ଛ ହେମେ ବସିଲେ
ଅଙ୍ଗନା, ଆନନରେ ଆନନ
ଅଧିକ ପ୍ରେମରେ ସମ ଆନନ୍ଦ ॥ ୪୪ ॥

---

୧ । ଦଅଇ (ପୋଥିପାଠ)

ଅରୁଣ୍ୟ ଦେଖି ପ୍ରାତ ଆଗତରେ     ଆରମ୍ଭେ ଶୁକଶାରି ଜାଗ୍ରତରେ
ଅଚ୍ୟୁତ ନାମ ଧରି ତରତରେ     ଆଳସ୍ୟ ତେଜ ପଡେ ନିରନ୍ତରେ
ଆଲୋକ, ଆସି ନିଶି ବିରାମ
ଆମୁଞ୍ଚ ପ୍ରିୟା ସଙ୍ଗ ଅଭିରାମ । ୪୫ ।

ଛଳ— ଆହେ କୃଷ୍ଣଚନ୍ଦ୍ର ପାଦ ସଗ୍ଭର     ଆଲୋଚ ରାଧା ଚେଳବା ବଗ୍ଭର
ଆଶା ନୋହୁଂ ଅନୁରାଗୀ ପ୍ରଗ୍ଭର     ଆଳସ୍ୟ ଗୁରୁ ରତ୍ନଚୋପଗ୍ଭର
ଅକାର, ଅପହତ ଜ୍ୟୋତ୍ସ୍ନାରେ
ଆଦ୍ୟେ ସମ୍ମିଳନୀ ଚରି ନିଷ୍ଠାରେ । ୪୬ ।

ଅକ୍ଷି କରେ ମନ୍ଦି ଉଠି ଦମ୍ପତି     ଅଳକେ ନଶିଲା ଇନ୍ଦ୍ର ସମ୍ପତି
ଅଙ୍ଗ ସଙ୍ଗ ଭଙ୍ଗ ଭୟେ କମ୍ପନ୍ତି     ଆଶ୍ଳେଷ ଆନନେ ଚୁମ୍ବନ ପନ୍ତି
ଅଙ୍ଗନା, ଉନ୍ନତ ସଙ୍ଗରୁ
ଅଧିକ କି ଯିବ ଯିବା ଅଙ୍ଗରୁ । ୪୭ ।

ଧରଣ୍ୟେ ଦେଖି ଜନମାଇ ଦର     ଅତି କଷ୍ଟେ ସେ ସୁନ୍ଦରୀ ସୁନ୍ଦର
ଆଗ ପଦ କରି ପଛେ ଆଦର     ଆସି ପରବେଶ ମନ୍ଦରୋଦର
ଅଚ୍ୟୁତ, ଅଙ୍ଘ୍ରି ନାବ ଭବର
ଆଶ୍ରୟ ଶ୍ୟାମସୁନ୍ଦର ଦେବର ।। ୪୮ ।।

ଇତି ଶ୍ରୀ ଅନୁରାଗ କଳ୍ପଲତା ପଞ୍ଚମ ସ୍ତବକ ଚତୁର୍ଥ କୁସୁମ ଦ୍ୱିତୀୟ ଛାନ୍ଦ ସମାପ୍ତ ।

— ପଞ୍ଚମ କୁସୁମ —

# ଆଠ ଚଉପଦୀ

( ଏକ )

## — ମୁଗ୍ଧା ଲକ୍ଷଣ-ରତ୍ନୌବାମା —

॥ ରାଗ — ଭୈରବ ॥

( ତାଳ — ସଶମାନ )

ଆହେ ପ୍ରିୟ ସଖା ନବ ରାମା ଶାନ୍ତ ମନ ହରେ ।
ଆଜି ଯେ ଦେହଳି ବଳାଇଲେ ବାଳୀ
ନ ବଢ଼ାଇ ପାଦ ସନ୍ଦେହରେ । ପଦ ।

ଅତି କଷ୍ଟେ କେଳି ପୁରେ କଲେ ନ ରହିଲା ପୁରେ
ଗମେ ପୁନ ସଖୀଙ୍କ ସହରେ
ଆଣ୍ଟରେ ପୃଷ୍ଠ କବାଟ ଦେଉ ନ ପାଇଲା ବାଟ
ଉଭା ପୃଷ୍ଠ କରି ମୋ ମୁହଁରେ । ୧ ।

ଆଣି ବସାଉଂ ଅଙ୍କରେ ଆଳିଙ୍ଗନ ନିଃଶଙ୍କରେ
ବନ୍ଧିଥିଲା କମ୍ପକୁ ଦେହରେ
ଆଦରଣ ଖଣ୍ଡେ ଦଣ୍ଡେ ଦେଉଥିଲା ଝୁଲ ଗଣ୍ଡେ
ଘୁଞ୍ଚାଇଲା ଚୁମ୍ବ ସମୁହରେ । ୨ ।

ଅବୁଝ ପରାଏ ହୋଇ ଗୃହ୍ଣୁ କର୍ଣ୍ଣେ ନ ଶୁଣଇ
ଶକାଇ ବଢ଼ାଇ ବଦେହରେ
ଆତୁରେ କାମ କାତରେ ମାଳ ଫେଡୁଂ ତରତରେ
ନଷେଧିଲା କରରେ ପ୍ରହାରେ । ୩ ।

ଅବସ୍ଥିବ ସୁକଣ୍ଠରେ          ନ ଚଳି ହାରି କାତରେ
ପ୍ରତିବନ୍ଧ ବନ୍ଧ ନବୀନାଦରେ
ଅପାଙ୍ଗ ରଖିଲି ଡୋଳା          ଚଳି ନ ହେବାରୁ କଳା
ମୁଖ ନରସେ କାମ ଦାହରେ ॥ ୪ ॥

ଅଙ୍ଗ ମଧ୍ୟକୁ କମ୍ପାଇ          ନଖ କ୍ଷତାଦିକ ପାଇ
ସ୍ୱରପୂରେ ରଙ୍ଗେ ନ ବହରେ
ଅରଣ ଶ୍ୟାମସୁନ୍ଦର          ଦେବର ଶ୍ୟାମସୁନ୍ଦର
କ୍ରୀଡ଼ଇ ମୋ ହୃଦସ୍ଥ ଗେହରେ ॥ ୫ ॥

---

( ଦୁଇ )

— ଅଜ୍ଞାନ ସୁରତା —

॥ ରାଗ — ସିନ୍ଧୁ ଦେଶାକ୍ଷ ॥

॥ ତାଳ — ପହପଙ୍କେ ॥

ଆଜ ମୁଁ ଅଭିନବ ନଧି ବନେ ଗୋ ।
ଅତନୁ ମାଦକେ ଅନାସ୍ୱୃତ ପ୍ରିୟ ମୁଖ ମଣ୍ଡିଲି ଚୁମ୍ବନେ ଗୋ ॥ ପଦ ॥
ଅଜଣା ଯେଣୁ ଜଣା ହେଲା ପନ୍ଥା ମୁଁ ପଡ଼ି ଉନ୍ମଦା ବନେ
ଅଟଳ ଲାଜ ଚଳଦଳ ଚଞ୍ଚଳ ଉଡ଼େ ଅଧୈର୍ଯ୍ୟ ପବନେ ଗୋ ॥ ୧ ॥

ଅମ୍ବରସ୍ଥାନ କପଟ ହେଲା କାମ ନଧାରେ ଚେତା ପ୍ଲବନେ
ଅସମ୍ଭବ କାନ୍ତ ନେଇ ପଡ଼ିଥିବ ପରା ମଦନ ଭବନେ ଗୋ ॥ ୨ ॥

ଅଧରୁ ଅମୃତ ହରି ନେଲେ ହରି ମନସିଜ ସଞ୍ଜୀବନେ
ଅପହୃତ ଜ୍ଞାନ କ କଲି କ ହେଲି ମୀନକେତନ ସେ ବନେ ଗୋ ॥ ୩ ॥

ଅପସରି ଧୈର୍ଯ୍ୟ ଅବସ୍ଥା କାଳରେ ହେଲି ମୁଁ ଅଛି ଜୀବନେ,
ଅଧିକେ ଶ୍ୟାମସୁନ୍ଦର ଦେବ ବୋଲେ ମଜ୍ଜିଲି ଭାବ ଭୁବନେ ଗୋ ॥ ୪ ॥

( ଭଜନ )

— ମାନେ ମୃଦୁ —

॥ ରାଗ — ଧନାଶ୍ରୀ ॥

ଅସୂୟା ସପତ୍ନୀ ବସେ ଏକ ଦିନେ
ଅପରାଧ ହେଜ ମୋ ବସିଲ ମାନେ ॥ ୧ ॥

ଅଶ୍ରୁଜାତ ପର ନେତ୍ର ପୋଛେ ବାସେ
ଅନ୍ତେ ପ୍ରେମ ଜରଜର ଏ ଆଶ୍ୱାସେ ॥ ୨ ॥

ଆଳି ଅନ୍ତ କହନ୍ତେ ପରୁଷ ବାଣୀ
ଆରକ୍ତ ଚକ୍ଷୁ ହୋଇଲ ସାଣାପାଣି ॥ ୩ ॥

ଅଳ୍ପ ପ୍ରକାଶନ୍ତେ ଗୂଢ଼ ଭାବୁକର
ଅମ୍ବୁଜ ମୁଖ ମୁକୁଳ ଶୋଭାକର ॥ ୪ ॥

ଅଙ୍ଗୁଳି କ ପ୍ରେମେ ଦେଇ ଚିବୁକରେ
ଅପସରି ଗଲ ମାନ ଲକ୍ଷ ଦୂରେ ॥ ୫ ॥

ଅଞ୍ଚଳ ଧରୁ ଜଟିଳା ସମାଗତ
ଆଳୟକୁ ଗମିଲେ ସେ ଦରସ୍ମିତ ॥ ୬ ॥

ଅମୃତ ଓଷ୍ଠୁ ନ ପାଇ ତାପ ସହେ
ଅଳପ ଶ୍ୟାମସୁନ୍ଦର ଦେବ କହେ ॥ ୭ ॥

( ଗୃହ )

— ମଧ୍ୟା ଲକ୍ଷଣ —

## ପ୍ରରୂଢ ଯୌବନା

॥ ରାଗ — କାଫି ଭାଟିଆରୀ ॥

( ତାଳ—ଝଡ଼ତାଳ )

ଅମୃତ କର କିରଣେ ଝଟେ ରତ୍ନ ଆଭରଣେ
କୁସୁମ ଚଳଟେ ମନୋରମା
ଅର୍ଜୁନ ସଙ୍ଗେ ଉଦ୍ୟତ ପର ଅଙ୍ଗ ଦ୍ୟୁତି ଦ୍ୟୋତ
କାମେ କମ୍ପୁଥିଲା କେତେ ବରଷ ସେ ॥ଘୋଷା॥

ଅକ୍ଷି ଯୁଗଳ ଅଣିମାଦ୍ଧ ନାଭି ଲଭୁଥିଲା କେବଳ
ଅଭିମତ ସିଦ୍ଧ ହେଲା କାମ ସଫଳ ॥ ୧ ॥

ଅନଙ୍ଗ ମଙ୍ଗଳ ହେମ କୁମ୍ଭ ଉରଜ ସୁଷମ
ପାଣି ପୃଷ୍ଟ କଲା ଭାଗ୍ୟବଳେ
ଅର୍ଦ୍ଧଚନ୍ଦ୍ର ମୁଦ୍ରା ଭକ୍ଷ ନଖ ଲେଖରେ ଅଲେଖ
କେଉଁ ସୁଖ ଜାତ ନୋହିଲା ସେ କାଳେ ସେ ।୨।

ଆକରଷଣେ କୁନ୍ତଳ ଫିଙ୍ଗି ଲୋଟିଥିଲା ତଳ
ଚଳପ ନ ତେଜି ଶ୍ୟାମଘନ
ଅଛୁଟେ ଜୀମୂତ ପର ଉଗ୍ରାନ କର କଣୋଘ
ବନ୍ଧ ବନ୍ଧ ଶକ୍ର ଧନୁର ଶୋଭନ ସେ । ୩ ।

ଅମ୍ବର ବନ୍ଧନେ ସୁର ଅଗାର ନୋହେ ବନ୍ଧୁର
ରାଜେ ମାରକତ ମୀନାଲତା
ଆଖଣ୍ଡଳ ମାଳ ହେମ ପଦକେ ବସାଇ କାମ
ବସ୍ତି ରୋମାଳି ଗୁନ୍ଥିଛି କଳାସୂତା ସେ । ୪ ।

ଅପସବ୍ୟ ସବ୍ୟେଶର ବନ୍ଧି ଶିଖେ ପଞ୍ଚଶର
ବେନ ଦରେ ଖେଳାଇ ନୟନ

ଅମୃତ ମୟୂଖ ସୁଧା  ଦେଉଥିଲା କରି ଶ୍ରଦ୍ଧା
ତଥା ମନ୍ଦହାସେ ପ୍ରସନ୍ନ ଆନନ ସେ । ୫ ।

ଅଧିକ ମଧୁରେ ନାହିଁ  ନାହିଁ ଘଷିବାର ସନ୍ଧି
ଇଚ୍ଛା ବାଣୀ ବୀଣା ଜିଣିମାରେ
ଅନ୍ତରେ ଶ୍ୟାମସୁନ୍ଦର  ଦେବ କରଇ ବର୍ବର
ମଧ୍ୟା ପ୍ରରୂଢ଼ ଯୌବନା ଗୀତ ବାରେ । ୬ ॥

---

( ପାଞ୍ଚ )

— ବ୍ରୀଡ଼ିତା —

॥ ରାଗ — ଜସନ ପୁରିଆ ଚୋଡ଼ ॥

( ଦ୍ରୁତ ପଡ଼ତାଳ )

ଆଳିମାନଙ୍କୁ ଯେ ଅବଳା ପଣ୍ଟରେ ହସି
ଅବିରତ ରତି କାନ୍ତ ସେ କେମନ୍ତେ ବିପରୀତ ମାରେ ହସି ॥ ପଦ ॥
ଆକର୍ଷିତ ପୁଣି ବେଣୀ ସେ ଶ୍ୟାମ କନ୍ଧ କମ୍ପାଇ ଲପନ
ଆରବିନ କାର କ ରଭସେ ପୁନ ପୁନ କରଇ ଜଳ୍ପନ ସେ ॥ ୧ ॥
ଅତି ଝଟିତିରେ ଶୁଣି ସେ ଶ୍ୟାମ ଲଜ୍ଜାପଦ୍ମ ଦେଲା ସୁଖେ
ଅହ ଶେଷେ ବିନେ ଯୂଥିକା କୁସୁମ ମାଳ ମଣ୍ଡି ହୋଏ ସୁଖେ ସେ । ୨।
ଆସେ କଣୀ ସଙ୍କେତରେ ସେ ଶ୍ୟାମର × × ହଲା ବଚନ
ଅଙ୍ଗନା ରଣିକା ଭୂଷଣ ଶୁଣି ସେ ମୋ ଉରେ କଲା ମଣ୍ଡନ ଯେ । ୩॥
ଅହ ପ୍ରମୁଖରେ ବିନେ ସେ ଶ୍ୟାମ ମୋ ପାଶୁଁ ଯିବା ବେଳରେ
ଅଳକା କପାଳେ ଦେଖି ଚଞ୍ଚଳରେ ପୋଛିଦେଲା ଅଞ୍ଚଳରେ ସେ ।୪।
ଅରୁଣୋଦୟେ ଭ୍ରମନ୍ତେ ବିନେ ସେ ଶ୍ୟାମ ବଧି ବଣେ ପୁଷ୍ପବଣ୍ଟ
ଆଶ୍ଳେଷ ଆତୁର ଦେଖି ମୋର ବାସେ ସିନ୍ଦୂର ପୋଛେ ସୁବଣ୍ଟ ସେ ।୫।

ଆକାଂକ୍ଷା ମୋ ଅନ୍ତ ନନ୍ତ ସେ ରାମା ଶୁଣି ଅଧୋମୁଖେ ରହି
ଅଟେ ସେ ମଧୁପ ଶ୍ରୀ ଶ୍ୟାମସୁନ୍ଦର ଦେବ ବୋଲେ ଏତେ କହି ଯେ ।୭॥

---

( ଛଅ )

— ପ୍ରରୂଢ଼ ସ୍ୱୟା —

॥ ରାଗ — ମୁଖାରି ॥

( ଏକତାଳି )

ଅଙ୍ଗନା ଯେଉଁ ଭାବ ବହିଲା
ଅନ୍ତେ ଅନ୍ତର ହଣେ ନୋହି ରହିଲା ।ପଦ।

ଅଣି ମୋ ଡହପଟ ହୋଇ ପ୍ରେମ ଲମ୍ପଟ
ରହେ ଚୁମ୍ବନ ଯାଚେ ମହିଳା ॥ ୧ ।

ଅମ୍ବର କର ଦୂର ଦେଖେ କୁଚ ଶଙ୍କର
ଅର୍ଦ୍ଧଚନ୍ଦ୍ର ନଖନ ମୋହିଲା । ୨ ।

ଅନେକ ଲଟାଳରେ ମିଳଲ ଖୁରତରେ
× × ନ ଗୃହ୍ନି ମଣ୍ଡି ଗୃହ୍ନିଲ । ୩ ।

ଆଲମ୍ବ ଚୁମ୍ବା ବେଣୀ ନାସେ ନାସିକା ମଣି
କହିଲ ନାଚବାର ନୋହିଲା । ୪ ।

ଆନ ମୋର ତରୁଣୀ ଟୁମ୍ବ ସୁର ତରୁଣୀ
ହେବୁ କ ବୋଲି ହୃଦେ ଲାଜିଲା । ୫ ।

ଆଳଙ୍କି ପଗ୍ରହର ସେ ମାନ କେ ଜାଣଇ
ଅଧିକ କୁ କାଳ ନ ସହିଲା ॥ ୬ ।

ଓଡ଼ଇ ଏ ପ୍ରରୂଢ- ସ୍ୱୟା ଚରିତ ଗାଇ
ଶ୍ୟାମସୁନ୍ଦର ଦେବ କହିଲା । ୭ ।

( ସାତ )

— ବିଚିତ୍ର ସୁରତା —

॥ ରାଗ — ସିନ୍ଧୁଡ଼ା ॥

॥ ତାଳ — ରୂପକ ॥

ଅଙ୍ଗନା ବିଚିତ୍ର ସୁରତେ ଧରାଇ ରଙ୍ଗେ ଚିତ୍ରଲେଖା ପ୍ରନ
ଆପଣ କଳାବତୀ ଭେଗ କରାଇ ହରଇ ମୋହର ମନ ସେ ॥ ଘୋଷା ॥

ଆପେ ରତି କ × × ଦେଇ ଅଭିନବ ମଦନ କରଇ ସେ
ଅଡ଼ ଚୁମ୍ବ ଶ୍ରୀମୁଖେ ଦିଆଇ ସେ, ଅଙ୍ଗେ ଗଉଣ ଜଡ଼ି ରହଇ ସେ ॥ ୧ ॥

ଅଧିକେ ଚନ୍ଦ୍ରକଳା ଭିଷ ନଖରେ ସୁଖ ଲଭେ ଏ ଦୁର୍ଲ୍ଲଭ
ଅଶରଣ ପରି ରମ୍ଭା ଚରଣକୁ ଧରାଇ ଏ ବଡ଼ ଲଭ ସେ ॥ ୨ ॥

ଆମ୍ଭେଇ ମୋତି ନାଚ × × ମୋ ନାକରେ ହୋପ୍ସେ ଆଲୋକ
ଅଶେଷେ ମଦାଳସା ଭେଗେ ଲାଳସା ପୂର୍ଣ୍ଣେ ଭୁଞ୍ଜ ସ୍ୱର୍ଗଲୋକ ସେ ॥ ୩ ॥

ଅଳତା କୁଙ୍କୁମ ଅଞ୍ଜନ ଅଙ୍କରେ ମୋ ଅଙ୍ଗେ କରେ ଜର୍ବର
ଅଙ୍ଗରାଗ ପାନ ପିକା ଦୃଢ଼ ବନ୍ଧରେ ଶ୍ୟାମସୁନ୍ଦର ଦେବ ସେର ॥ ୪ ॥

---

( ଆଠ )

— ରତାନ୍ତ —

॥ ରାଗ — ପୁର ॥

( ତାଳ — ଦଡ଼ତାଳ )

ଅଣି ଦେଖ ଆଦରଣ । ପଦ ।
ଆନନ ଶୋଭା ନରମ,
ଏତ ରାସ କର ବଧୂ ବଧୂନୂଦ ରଖିନାହୁଁ ସୁଧା ରସ ॥ ୧ ॥

ଅରୁଣ ନବ ତରସ,
ଆଶୁଗ ଘାତ ହରଣ ପର ନେତ୍ର ଯୁଗଳ ଲୋଳ ସରସ ॥ ୨ ॥
ଅଧରର ମଧୁ ରସ,
ଅନୁଚର୍ବଣେ ସିଠା ଚାହିଁ ରଖିଛୁ ପୂର୍ତ୍ତି କର ତା ତରଷ ॥ ୩ ॥
ଆଳସ ଗତି ସାରସ,
ଅନଙ୍ଗ ଜର ଟୋପିରେ ସୂଚ ଚହ୍ନ ସ୍ତନ ଏ ଛବ ସ୍ଫୁରଣ ॥ ୪ ॥
ଆଣ୍ଠି କରୁ ଆକରଷ,
ଆମୁକ୍ତ ବଚନରୁ କେଶ ପକାନ୍ତି ଖ୍ୟାତଂ ଭୟାନକ ରସ ॥ ୫ ॥
ଅଙ୍ଘ୍ରି ସ୍ଥଳ ତାମରସ,
ଅଳ୍ପ ଝୁମୁ ଝୁମୁ ନୂପୁର ଏ ଚସ ଜୟବାଦ୍ୟ ଶାର ରସ ॥ ୬ ॥
ଅମ୍ବର ଚେଳ ହରଷ,
ଅବନ ଲୋଟେ ବୋଲେ ଶ୍ୟାମସୁନ୍ଦର ଦେବ ଚେଳଦେଲୁ ରସ ॥ ୭ ॥

---

୧ । ଛାତ (ପୋଥିପାଠ)

## — ଷଷ୍ଠ କୁସୁମ —

# ଚଉତିଶା

।। ରାଗ—କୌଶିକ ।।

### — ଶୁକ୍ଳାଭିସାର —

ଶ୍ଳୋକ—

ଦୁର୍ବାରଦାରୁଣମନୋଭବବନ୍ଧିତପ୍ରାଃ
ପର୍ଯାକୁଳାକୁଳତମାନନମୁଦ୍‌ବହନ୍ତୀ
ନିଃଶଙ୍କିନୀ ବ୍ରଜତି ଯା ପ୍ରିୟସଙ୍ଗମାର୍ଥଂ
ସା ନାୟିକା ଖଳୁ ଭବେଦଭିସାରିକେୟଂ ।୧।

(ଇତି ନାୟିକା ଲକ୍ଷଣେ)

ରୂପକ ଶ୍ଳେଷ—

ଆଗତ ପ୍ରଦୋଷ ମଳନ ଝଟନ୍ତ ପ୍ରୋଷିତା ଯୋଷିତା ପ୍ରାୟେକ
ଅଦୃଶ୍ୟ ହେବାରୁ ବଳପ୍ରଭ ମୁଦେ ନାକ ମଣ୍ଡିଲେ କଉଶିକ
ଆସି ଏ କାଳେ, ଆକାଶେ ଉଦେ ହରିଣାଙ୍କ
ଅବଦାତ କଲେ ଚହ୍ଲାଇ ହଏ କ ମୂର୍ଚ୍ଛି କୁମୁଦନୀ ନାୟକ ।୧।।

ଉତ୍ପ୍ରେକ୍ଷା—

ଯଦୁକ୍ତଂ କାବ୍ୟାଦର୍ଶେ—

ଶ୍ଳୋକ— ଅନ୍ୟଥୈବ ସ୍ଥିତାବୃତ୍ତିଶ୍ଚେତନସ୍ୟେତରସ୍ୟ ବା
ଅନ୍ୟଥୋତ୍ପ୍ରେକ୍ଷତେ ଯତ୍ର ତାମୁତ୍ପ୍ରେକ୍ଷାଂ ବିଦୁର୍ଯଥା ।୧।*

---

* ଅନ୍ୟେ ଚୈବ ସ୍ଥିତ ବୃତ୍ତିଂଶ୍ଚ ନେତରସ୍ୟ କଦାଚନ
ଅନ୍ୟଥୋ ପ୍ରେକ୍ଷତେ ଯତ୍ର ତାମୁତ୍ପ୍ରେକ୍ଷା ବହୁବୁଧାଃ । (ପୋଥିପାଠ)

ଅବନୀରେ କି ଉଜ୍ଜ୍ୱଳ ରସ ଯଶ ପ୍ରକାଶିଲା ସିତ ମୟୂଖ
ଅଳି ଭ୍ରମଇ ନ ଚନ୍ଦ୍ରେ କୁମୁଦନୀ ତ୍ୟଜନ ଶୁଣି ହାସମୁଖ
ଅଭ୍ର ଶୁଭ୍ରରେ, ଅସଂଶୟ ଏ ଦୃଷ୍ଟମୁଖ
ଅମର ନଦୀ କର ବ୍ୟୋମକେଶର ତାରାବଳୀ ବଧୂ ଫେନ ଯୋଷ ॥୨॥

ଅଙ୍କକ ପର ଅଚଳର ମଞ୍ଜୁଳ ହର ଆଣିଲେ ସର୍ବ ନଗ
ଅବନୀ ରଜନୀକରଙ୍କୁ ରଜ ନକର ରଜନକର ଯୋଗ
ଆଜ କି ବର୍ଣ୍ଣ, ଅଙ୍ଗନା ହାସରେ ସରାଗ
ଅଟେ ଦନମଣି କରେ କରେ ପୁଣି ରଜାର ଏ ପ୍ରସନ୍ନ ଭଙ୍ଗ ॥ ୩ ॥

ଅଭିସାରକୁ ବେଢ଼ି ସାତ୍ତ୍ୱସାକ୍ଷୀକ ବେଶ କରନ୍ତ ଆଳି ଓଘ
ଅପଘନ ଘନସାର ଚନ୍ଦନରେ ଲେପନ କି ଶରଦ ମେଘ
ଅଙ୍ଗ ସୁଚାରେ, ଆମଣ୍ଡନ ବେଶ ଅନର୍ଘ
ଆଚ୍ଛାଦିଲେ ମଲ୍ଲୀ ମାଳରେ କବରୀ ଅତନୁର ଜୟ ପରଘ ॥ ୪ ॥

ଅଳକା ସୀମନ୍ତ ତାଟଙ୍କାଦି ଗ୍ରୀବସର ହାର ମୁକ୍ତା ମଣ୍ଡନ
ଅଙ୍ଗଦ ବଳୟ ଚୁଡ଼ି ନୂପୁରାଦି ମୁଦ୍ରିକା ହୀରକ ରଞ୍ଜନ
ଆଣି କର୍ପୂର, ଅକ୍ଷିରେ ରଞ୍ଜିତ ଅଞ୍ଜନ
ଅବଦାତ ଚେଳ ନଚେଳ ମଞ୍ଜୁଳ ଭାଲ ଶୋଭେ ବନ୍ଧୁ ଚନ୍ଦନ ॥ ୫ ॥

ଆଣି ସିତପଦ୍ମ ପଦ୍ମ କରେ ବୃନ୍ଦା ଦେଇ ଅଗ୍ରେ ଗମେ ବବତ
ଅନଙ୍ଗ ଦୂତର ପିପାସିତ ନାୟକ ଓଷ୍ଠ ଅମୃତ ପାନ ପାଞ୍ଚ
ଅଂଶୁ ଚନ୍ଦ୍ରର, ଅଂଶୁକେ ନବାଇ ଉଚ
ଆସି ଯମୁନା ପୁଳିନ କୁଞ୍ଜୋଦରେ ଆନନ ନନ୍ଦନ ବଞ୍ଚତ ॥ ୬ ॥

ଆଳି ଜାଣି କଳ୍ପ ପାଦପ ବେଦୀରେ କୁସୁମ ତଳ୍ପ ରଚ୍ଚ ସ୍ୱଚ୍ଛ,
ଅନାଗତ କାନ୍ତ କି କାରଣେ ଚିନ୍ତା ଚିତ୍ତ ଚଢ଼ିତ ସମକକ୍ଷ
ଅମୃତ କର, ଆଲୋକେ ନଭେ ନେଷମକ୍ଷ
ଅଚ୍ୟୁତ ଗତ ମତେ ଆସି ଗୁପତେ ଭୁଜେ ଭିଡ଼ିଲେ ରଚ୍ଚ ପଛ ॥ ୭ ॥

ଅଙ୍ଗନା ଚମକ ହେଲେ କଲା କୁଚ ମୂଳେ ନିପିବାରୁଂ କରଜ
ଆସ୍ୟ ହାସେ ଚଣ୍ଡି କସଗୋ ଏ ବୋଲୁଂ ଚୁମ୍ବିଲେ ଶ୍ରୀମୁଖ ନୀରଜ
ଆଜ ପ୍ରମାଦ, ଆସି ଚେତ୍ର ପର ବରଜ
ଅଳପ ହାସରେ କହ୍ନ ଜଣୁଥିଲା ଅମୃତଙ୍କ ସ୍ୱାଦୁ ସମାଜ ॥ ୮ ॥

ଅଣି କେତକୀ ଦଳ ଦଳ କସ୍ତୁରୀ ଲେଖିଲେ ବର୍ଣ୍ଣ ତହିଁ ମାହିଁ
ଅଛ ବଢ଼ × × ବେନ ବେନ ବର୍ଣ୍ଣେ ଆଦ୍ୟ ବର୍ଣ୍ଣକୁ ପଢ଼ି ବୁଝି
ଅବଲମ୍ବରେ, ଆଚରି ସେହ୍ବ ରସେ ଶୁହିଁ
ଅମ୍ବୁଜ ମୁଦ କେ କରେ ହତ ଦକ୍ଷ ବିଚାନ କେ ଯଥା ଅବୁହିଁ ॥ ୯ ॥
ଆଚରନ୍ତି ଋଷିମାନେ କିସ ଗୃହ ଅମ୍ଳ ଲବଣେ କି ବର୍ଦ୍ଧନ
(ତପ, କଫ)
ଅର୍ଭକ ନାଶ ଗର୍ଭରେ କେ କରଇ ବୈ × କି କରଇ ରଚନ
(ରେଚ, ରସ, ଆପଗାବୋଧ)
ଅଟେ କି ନାମ, ହେଜ ମନ ସ୍ଥିର × × ×
ଅରଣ୍ୟ କେ ଜନନେ ଦାହ ହୁଅଇ କେ ସ୍ବର ସରଣୀ ପ୍ରଧାନ
(ଦାବ, ନଭ) ।୧୦।

ଅବମାଶକୁ କୃଷି କର୍କଶ ହଏ ଗ୍ରୀଷ୍ମେ ମଧ୍ୟରେ କି ପ୍ରକଟ (କର, ରଜ)
ଅଙ୍ଗନା ପ୍ରଗଲ୍‌ଭା ଭାବକୁ ଆଚରି ମଣ୍ଡି ପ୍ରକାଶ ହାସ ଅଛି
ଅତି ଆନନ୍ଦେ, ଅଙ୍ଗୁ ହରଲେ ହଟପଟ
ଅଚରେ ବଚରେ ଜଗନ ଶଯ୍ଯନେ କି ଶୋଭା ସ୍ତନ ହେମଘଟ ।୧୧।

ଅନଙ୍ଗ ବାସ ମୁଖରସ ଜଳେ କି ପ୍ରକାଶେ ଜଘନ କମଠ
ଅସିତ ଲୋମ ଜାଲ କି ସେ ଶୈବାଳ ଲାଗି ମଞ୍ଜୁଳ ଆସ୍ୟପୃଷ୍ଠ
ଅତନୁ ବାସ, ଅଚ୍ଛି ରୋମାଳି ଦଣ୍ଡକାଷ୍ଠ
ଅବଳା ବଳା ଅବରତେ ଘୋଷିଲେ ଯୁବତୀ ପୁଂସ ରତିପାଠ ॥ ୧୨ ॥

ଅଙ୍କ ମୃଗ ମୃଗରାଜ କୋଳେ ଖେଳେ ତଥା ନୟନ ଲୋଳ ଖେଡ଼ି
ଆସିବା ମତ ରେବତୀର ଚଞ୍ଚଳ ପାଦ ଭୁଜ ଭିଡ଼ା ନବଢ଼ି
ଆକାଶ ବଟ, ଆସ୍ୟକୁ ଗୃହ୍ଣି ଲଜ୍ୟା ଜଡ଼ି
ଆଲୋକ ଉଭୟର ବାଦ ପଡ଼ିଲା ରସିକେ ଭୁଲ କେହ୍ନ ବଡ଼ ।୧୩।

ଆକରଷଣେ ଗୋବିନ୍ଦ ଅରବିନ୍ଦ କରକେଶ ଭୃଙ୍ଗେ ଆରୂଢ଼
ଅକ୍ଷିରେ ଚୁମ୍ବ କଦମ୍ବ ସରଜନ୍ତେ ମୁଦ୍ଧେ କମଳ ଯଥା କଢ଼
ଅଗ୍ର କୁଚଦ୍ବରେ, ଅଣି ରମଣା ଭ୍ରମ ବେଢ଼
ଅଦ୍ଭୁତ କୁଚ ଅଚଳ କରପଦ୍ମେ ପୀଡ଼ା ଲଭିଲା ମହାଗାଢ଼ ।୧୪।

ଅନ୍ତ ହୋନ୍ତେ ରତ ଉଠିଲେ ଯୁବଣ ପୁଷ୍ପ ଶେଯରୁ ସେହ୍ନକ୍ଷଣ
ଅମ୍ବର ଅ × ××× ସଭ୍ରମେ ଭ୍ରମାଇ ଖଞ୍ଜନ ଈକ୍ଷଣ
ଆଲୋକ ପନ୍ତି, ଅଧିକ ହାସ ବଚକ୍ଷଣ
ଆଚ୍ଛାଦ ସ୍ତନେ କର ସ୍ମର ସଦନ ଜଂଘେ ଛନ୍ଦ କରେ ସେକ୍ଷଣ । ୧୫।

ଆସ୍ୟରେ ହେମଜର ନେ୍ୟାଭରୁ ଚନ୍ଦ୍ର ବସନ ପିନ୍ଧିଲେ ତ୍ୱରିତ
ଅବରତ ହାସ ଜନ୍ମାଇ ×× ××× ହାସ ଚରିତ
ଅଟେ ଅମ୍ବର, ଆପଣଙ୍କର ସେଣୁ ପୀତ
ଅବଶ୍ୟ ଭ୍ରମ ସମୟରେ ଦେଖିବା ସେକାଳ ଚରିତ କେମନ୍ତ । ୧୬ ।

ଅଙ୍କେ ବସାଇ ପ୍ରିୟାକୁ ଉଷସାଇଂ ଅଙ୍କ ବଳୋକ ସ୍ମରପଥ
ଅପରାଧ କ୍ଷମା କ୍ଷମା ମଣ୍ଡିମା ମୋ କରିବୁ କହେ ବୋଧିନାଥ
ଅସମ ସୋମ, ଆସ୍ୟକୁ ଭୁଲ ଅଯଥାର୍ଥ
ଅଧର ଅମୃତ ନ ପାଇ ସେ ମୃତ ଅମାବାସ୍ୟାରେ ହୋଇ ବ୍ୟର୍ଥ ।୧୭।

ଆନନ୍ଦାନ୍ତସ୍ୟ କୁଣେଶସୁନ୍ଦରୀ ବଲ୍ଲଭର ପ୍ରେମ ସମ୍ବାଦ
ଆବେଷ୍ଟିତ ଗଳେ ଭୁଜ କେଳେବେଳେ ବନ ଭ୍ରମଣ ଲଭି ମୁଦ
ଅର୍କଜା ମଧ୍ୟେ, ଅଳ ଚୁମ୍ବେ ସ୍ଫୁଟ କୁମୁଦ
ଅନ୍ୟେ ସୁମନେ ପୁଳନ ବନେ ଚୁମ୍ବେ ଦେଖି ସୁମୁଖୀ ହସି ମନ୍ଦ ।୧୮।

ଅଧର ଗୋଜ କରନ୍ତେ କାନ୍ତ ଦେଖି ମାଗିଲେ ଚୁମ୍ବ କର ସଧ
ଅଗଣିତ ଚୁମ୍ବ ପ୍ରିୟର ଜାଣି ସେ ଗଣି ଦେଲେ ନାହିଁ ବରୋଧ
ଆଳ କୁସୁମ, ଅଣି ତଳ୍ପ ରଚ ସେ ସ୍ନେଧ
ଅନେକ କର୍ପୂର ରଜ ସିଞ୍ଚି କଲେ ପ୍ରଚ୍ଛଦପଟେ ତାକୁ ଅଧ । ୧୯ ।।

ଅଧୀରେ ଅନେକ ବଧିରେ କଲେ ସେ ମନସିଜ କେଳ ରଚନ
ଅମ୍ବର ପିନ୍ଧ ବାନ୍ଧ ଗନ୍ଥୁ କବରୀ ସୁମନରେ କଲେ ମଣ୍ଡନ
ଆଲୋକ ପୁଷ୍ପ, ଆଣନ୍ତ ତୋଳ ବୁଲ ବନ
ଅତ ସେହେ ଦୁହେଁ ଦୁହିଁଙ୍କ ମଣ୍ଡନ୍ତ କର ପ୍ରେମରମ ବର୍ଦ୍ଧନ । ୨୦ ।

ଆସି ବୃନ୍ଦାବନେ କୁଞ୍ଜ ଗୃହେ ପଣେ ଶଯ୍ୟନରେ ଦ୍ରବ୍ୟ ତଳପ
ଆଶ୍ଳେଷ ହସ୍ତେ ହସ୍ତ ପାଦ ପାଦରେ ଶୋଭେ ଯଥା ଲତା ପାଦପ
ଅଷ୍ଟ କୁଞ୍ଜରେ, ଅଷ୍ଟସଖୀ ଗୋପୀ ବଳାପ
ଅରଣ୍ୟ ଦେଖା ସଭସ୍ତ ଜାଣି ପୁନ ରଜନୀ ଥିବାରୁ ଅଳପ । ୨୧ ।

ଆଦେଶ ପାଇ ପଢ଼ନ୍ତି ଶୁକ ଶାରିକା କୁସୁମେ ଝଙ୍କାର ଦ୍ୱିରେଫ
ଅସେ ଜଟିଳା କଖଟୀ ମରକଟୀ ଡ଼ାକେ ଧର ଫଳ ସତ୍ତେଫ
ଇତି ସାଧ୍ୱସ, ଆସି ପୂରିଲା ହୃଦଗୁମ୍ଫ
ଆଶ୍ଳେଷ ଚୁମ୍ବ ଦେଇ ସ୍ୱରେ ଗମନ୍ତେ ପଛକୁ ଆସେ ପଦଗୁଳ୍ଫ ॥୨୨॥

ପ୍ରଗଲ୍‌ଭା ଲକ୍ଷଣ—

ଶ୍ଳୋକ— ସ୍ମରାନ୍ଧାଗାଢତାରୁଣ୍ୟା ସମସ୍ତରତକୋବିଦା
ଭାବୋନ୍ନତା ଦରବ୍ରୀଡ଼ା ପ୍ରଗଲ୍‌ଭାଽଽକ୍ରାନ୍ତନାୟିକା
(ଇତି ସାହିତ୍ୟରତ୍ନାକରେ)

ଭାବୋନ୍ନତା —

ଅପାର ସମ୍ପତ୍ତି ଦମ୍ପତି ତେଜଣ ସୁତଲେ ଅପାରରେ ଜବ
ଅନ୍ତରେ ହରି ବାହ୍ୟରେ ସଖୀ ମେଳେ ପ୍ରଖ୍ୟାତ କଲେ ପ୍ରିୟାଭାବ
ଆମ୍ଭ ପ୍ରିୟାଙ୍କୁ, ଅନୁରାଗେ କେ ଲକ୍ଷ ହେବ
ଅନ୍ତର ପାଶୁଂ ହେଲାବେଳେ କାତର ପିଣ୍ଡରୁ ଗଲାପରି ଜୀବ ॥ ୨୩ ॥

ଅରଣ୍ୟ ଗମନ ମୋ ଆଲୋକେ ମନ ଆରୋହାଇ ଆତୁର ଇଭ
ଅକ୍ଷି ହରଣୀ ହୋଇ ବନଚରଣୀ ଲୋଡ଼ଇ କୃଷ୍ଣସାର ଶୋଭ
ଆଗେ ପଡ଼ିଲେ, ଆଠରେ ଅଣିମାଦ ଲଭ
ଆନତିତ ଭ୍ରୂକୁ କର ବାହୁପାଶ ପଞ୍ଜରେ ଦେଖାଇ ଦୁର୍ଲ୍ଲଭ । ୨୪ ॥

ଆକ୍ରାନ୍ତ ନାୟିକା—

ଅନ୍ତ ହୋଇନ୍ତେ ରତି ମୋ ଉରେ ପୀରତି କରଇ ପୀଡ଼ା ଶର ସମ
ଆକରଷଣେ ଭଙ୍ଗି ଦେଲ କବରୀ ବାନ୍ଧିବାକୁ ମୋତେ ସରମ
ଆଜ ଜାଣିମା, ଆପେ ବାନ୍ଧିବ କି ସୁଷମ
ଉପବନ ଫୁଲ ମାଳିକା କାଳିକା କୁଞ୍ଚେ ମଣ୍ଡ ଗୁନ୍ଥି କୁସୁମ ॥ ୨୫ ।

ଅଟ୍ଟୁ ତୁଟି ମାଳ ଗ୍ରନ୍ଥି ମଣ୍ଡ ଗଲ ନିର୍ମଳ ଏ ଚନ୍ଦ୍ର ଉଦୟ
ଅଞ୍ଜନ ସିନ୍ଦୂର ଚୁମ୍ବି ଲଗାଇଲ ଶୋଭନେ ଲେଖ ଦେଇ ଲୟ
ଅଙ୍ଗନା ଠାରୁ, ଆଳାପ ଶୁଣି ରସମୟ
ଆବେଶ ବେଶ ରଚନେ ପୁନରତି ରସିଲା ପାଇ ସୁ ସମୟ । ୨୬ ।

ସମସ୍ତ ରତି କୋବଦା—

ଆରମ୍ଭ ବନ୍ଧ ସୁରତ କୋଳେ ଧନେ ବସି ଭଷିଲ ମୁଁ ନାଗର
ଅଙ୍ଗନା ଚତୁର ଭୁଜଭୁଜାରେ ଉରୁ ମୋ ଉରୁରେ ଯୋଡ଼ ସତ୍ୱର
ଆଶସ୍ତରେ ମୁଁ, ଆଜ ବୋଲୁଁ ରତି ସୁନ୍ଦର
ଅବଲମ୍ବେ ବେଳରେ ତାଙ୍କୁ ଆଣି ସଂଯୋଗ କଲ ମୋ ସ୍ତନର ॥୨୭॥

ବନ୍ଧ ଲକ୍ଷଣମ୍—

ଶ୍ଳୋକ — ଉରୁମୂଲୌପରସ୍ଥିତ୍ୱା ଯୋଷିଦୂରୁଯୁଗଂ ଯଦା
ଗ୍ରୀବାଂ ଧୃତ୍ୱା କରାଭ୍ୟାଂ ତୁ ବନ୍ଧୋ ନାଗରକୋ ମତଃ ।
(ଇତି ସ୍ମରଦୀପିକାୟାମ୍)

ତଥା ତତ୍ରୈବ—

ନାସ୍ତ ପାଦଦ୍ୱୟଂ କାମୀ ଧାରୟେଦୂର୍ଦ୍ଧ୍ୱଦେଶତଃ
କୁଚୌ ଧୃତ୍ୱା ପିବେଦ୍‌ବକ୍ତ୍ରଂ ବନ୍ଧୋଽୟଂ ରତିସୁନ୍ଦରଃ[୧] ।
ଆତୁର ସ୍ୱର ଗଦ ଗଦ ଉଚ୍ଚର ଲଳନା କାମେ ହୋଇ ଭୋଳ
ଆଲକ୍ତ ପଦ ପଦ୍ମରାଗ ମଦକ ଆଣି ମଣ୍ଡିଲ ହୃଦସ୍ଥଳ
ଅଞ୍ଜନାଦରେ, ଅଙ୍ଗ ମୋ ଚିତ୍ରିତ କେବଳ
ଅଧର ଉପରେ ଦନ୍ତ ନଖ ନର୍ତ୍ତନରେ ଫିଟଇ ଲୋଟଇ କୁନ୍ତଳ ॥ ୨୮ ॥[୨]

ସ୍ମରାନ୍ଧା—

ଆବେଷ୍ଟିତ ହୋଇ ବାଳକାଙ୍କୁ ଧନେ ପରୁଥିଲେ ଆଳିସବ
ଅମୃତ କରଣେ ହାର ଅବାରଣେ ରଚିଲୁ ସୁରତ ଉତ୍ସବ
ଅବଳା ହବେ, ଆଳାପେ ବୋଧକଲ୍ଲ ଜବ
ଅନଙ୍ଗ ବକାର ଘଜଡ଼ିଲ ଧୀର ସହାସ୍ୟ ପାଇ ନଶା-ଧବ ॥ ୨୯ ॥

---

୧ । "ନାସ୍ତପାଦଦ୍ୱୟଂ କାମୀ ଧାରୟେତ୍ ସ୍ତନ ମଣ୍ଡଳେ
କଣ୍ଠେ ଧୃତ୍ୱା ରମେତନ୍ତୁ ବନ୍ଧୋଽୟଂ ରତିସୁନ୍ଦରଃ ।" (ପୋଥିପାଠ)

୨ । ଶ୍ଳୋକ— ଯୋ × × × × ସ୍ଥିତ୍ୱା କରାଭ୍ୟାଂ ତାଡ଼ୟେତ୍ କୁଚଂ
ଯଥେଷ୍ଟଂ ତାଡ଼ୟେତ୍ ଯୋନିଂ ବନ୍ଧ ସ୍ମର ପଦସ୍ମୃତୋ । (ପୋଥିପାଠ)
(ଇତି ସ୍ମରଦୀପିକାୟାଂ)

ଅମ୍ବର ଦୂର ହେବାର ନ ଜାଣଇଁ କି ହୋଇଲା କାମେ ଅବଶ
ଆଚରି ଶରଣ ରଣ ରଙ୍ଗେ କାନ୍ତ କି କଲେ ନ ଜାଣିଲା ଲେଶ
          ଅନ୍ତ ସୁରତେ, ଅଟ୍ଟ ଜାଡିଲା ପିଠି କେଶ
ଅଧର ସ୍ତନ ଜଘନ କ୍ଷତ ଜଣା ସ୍ୱେଦ ଲଗି ହେଲା ହୁତାଶ ।। ୩୦ ।।

ଅନୁଭବେ ଜଣା ଧୈର୍ଯ୍ୟ ହୋଏ ବଣା ନାଭିର ଦରଶନେ ପୁଂସ
ଅନ୍ତର ଲତାରେ ରତ୍ନ ବଧି ବଶେ ଶୁଣିଲା ଏ ମଧୁର ଭାଷ
          ଅଗ୍ରେ ମିଳନ୍ତେ, ଅବଗୁଣ୍ଠନ ଦ୍ରାବରଷ
ଆନ ଲକ୍ଷ ନକ ଆନନ କମ୍ପାଇ ଜାତ କଲା ହାସ ପୀୟୂଷ ।। ୩୧ ।।

ଦରବ୍ରୀଡ଼ା—

ଅଲକ୍ତ ସିନ୍ଦୂରେ ଅଙ୍ଗ ଶଙ୍ଖ ମେରୁ ରଚି ବନ୍ଧ ରତି ସରସ
ଆକାଂକ୍ଷା ପିଧାନେ ସାବଧାନେ ଧରେ ଶ୍ରୀଖଣ୍ଡକୁ କର ସାରସ
          ଅନୁରାଗକୁ, ଅଙ୍ଗନା କରବୁକ ଧ୍ୱଂସ
ଅପାଙ୍ଗେ ଗୃହ୍ଣି କନ୍ତୁ କେତେ ଦଶଇ କାନ୍ତି କି ଲକ୍ଷକର କସ ।।୩୨।।

ଅଧର ରଦ ଚନ୍ଦ୍ରକୁ କି ଉପାୟ ପ୍ରକାଶ ହେଲାବେଳେ ଅହ
ଆଳାପ ନ କର କଳାପ କୁନ୍ତଳା ତାମ୍ବୁଳ କର ପୂର ସହ
          ଆଣି ଭୁଞ୍ଜାନ୍ତେ, ଆଲୋକ ବୋଇଲା କି ସ୍ନେହ
ଆଚ୍ଛନ୍ନ ଔଷଧି ବେନ ବଧି ସିଦ୍ଧି ଶୁଣି ଜାତ ହାସ ସମୂହ ।। ୩୩ ।।

ଗାଢ଼ ତାରୁଣ୍ୟ —

ଆଳସ୍ୟ ବଙ୍କ ବାଣୀରେ ତା ମଙ୍ଗଳ ନାମ ମୋଟେ ହୁଏ ଅଲକ୍ଷ
ଅଚଳ କୁଚ କରପୀଡ଼ା ସହଇ ଯେଣୁ ସେ କର୍ଦ୍ଦନରେ ଦକ୍ଷ
          ଆଣ୍ଠୁ ଭିଡ଼ାକୁ, ଅଙ୍ଗ ସହେ ସେ ଭୁଲା ଲକ୍ଷ
ଅଧିକେ ଶ୍ୟାମସୁନ୍ଦର ଦେବ କହେ ପ୍ରଗଲ୍ଭା ରତିକ ପ୍ରତ୍ୟକ୍ଷ ।।୩୪।।

— ସପ୍ତମ କୁସୁମ —

# ଡଗ ଲେଖନ

( ଦଶ ଡ଼ଗ ବୃତ୍ତ )

ଆଗତ ମଧୁ     ସମସ୍ତ ସାଧୁ     ଅରଣ୍ୟ ପ୍ରିୟ ଡାକେ ଷସ୍ତ ବଧୂ
ଅଟବୀ ରମା     ଲାବଣ୍ୟ ଧାମା     ଆସିବେ କଳା ଗ୍ଲେ କନ୍ଧ ଅମା ॥ ୧ ॥

ଅର୍କ ପୂଜନେ     ହରଷ ମନେ     ଆସି ଠାକୁରାଣୀ ବିଜୟେ ବନେ
ଅନ୍ତରେ ରସି     ତେଲଙ୍ଗ ଦେଶୀ     ଅଙ୍ଗନା ସଦୃଶେ ହୋଇ ସୁବେଶୀ ॥ ୨ ॥

ଅସିତ କେଶ     ଖୋଷା ବିଶେଷ     ଅଧିକ ବର୍ତ୍ତୁଳ ତାଳ ସଦୃଶ
ଅଚ୍ଛି ଗର୍ଭକ     ସୀର ବ୍ୟାପକ     ଅଟଳ କର୍ତ୍ତନ ଯୁତେ ଆଲୋକ ॥ ୩ ॥

ଅଶେଷ ପ୍ରଭା     ସଗିଡ଼ ଶୋଭା     ଆଲମ୍ବିତ କରି କୁସୁମ ଗଭା
ଅର୍ଦ୍ଧେନ୍ଦୁ ଭାଲ     ବିନ୍ଦୁ ମଞ୍ଜୁଳ     ଅଚ୍ଛି ରଚିତା ମୋତି ସଂକୁଳ ॥ ୪ ॥

ଅନେକ ବାଲୀ     କେଶ ସିଞ୍ଜଳ     ଆଲମ୍ବିତ ଝୁମ୍ପ ତାଟଙ୍କ ଝଳ
ଅଧିକେ ମୋତି     ନଥ ସଜନ୍ତି     ଅମ୍ବର ତପନୀୟ ଜରି ଖଚିତ ॥ ୫ ॥

ଅନେକ ବାଳା     ଭଦ୍ରା ଶ୍ୟାମଳା     ଆଦରେ ଯେ ଯୂଥେଶ୍ୱରୀ ବିମଳା
ଅମ୍ଭୋଜନୀ କେ     ଚନ୍ଦ୍ରିଣୀ କେ କେ     ଅନ୍ତେ ଶଙ୍ଖିନୀ ହସ୍ତିନୀ ଠିକେ ॥ ୬ ॥

ଅନନ୍ତ ସାଥେ     ଅରଣ୍ୟ ପଥେ     ଅଚ୍ୟୁତ ଦରଶନ ମନୋରଥେ
ଆତୁରେ ହରି     ବନେ ବିହରି     ଆଲୋକ କୃଷ୍ଣଙ୍କୁ ଜନିତ ହରି ॥ ୭ ॥

ଅଳପ ହାସ     କରି ପ୍ରକାଶ     ଅଭିନବ ବେଶ ଗୃହି ସହରଷ
ଅଧିକ ରସ     ଦେବ ଏ ବେଶ     ଅଟେ ଇକ୍ଷୁରସ ଯଥା ଅଶେଷ ॥ ୮ ॥

ଅଙ୍ଗନାଗଣ     ଯେନ ଗହଣ     ଅଚ୍ୟୁତ କରନ୍ତି ବନ ଭ୍ରମଣ
ଆଜ କୁସୁମ     ହୋହଦ ରମ୍ୟ     ଆଲୋକିବା ବୋଲେ ପୁରୁଷୋତ୍ତମ ॥ ୯ ॥

ଶ୍ଳୋକ— ଶ୍ୟାମା ସଙ୍ଗୀତଗାପୃନେ ସ୍ଫୁଟନ୍ତି ବୈ ତଳ୍ପଷଟେ କେତକୌ
ନାଗଣ୍ଡାଂ ମଧୁପାନପତ୍ତ୍ରବଚନାଶ୍ରାନ୍ତେ ତଥା ଚମ୍ପକଃ
ହେଦ୍ବାଲାଙ୍ଗନକୁଡ୍ମକେ ତମଶକସ୍ତୂତକରସ୍ପର୍ଶନେ
ମାପଃ ଷ୍ଷଷନଖଷତେ ଚ ଫଂଲମା ସମ୍ୟଗ୍‌ଗୀରେ ଶୀତଳେ ।୧।

ଶ୍ରୁତ୍ୱା କୌତୁକସିନ୍ଧୁବାର ବକଟଃ ପୁନ୍ନାଗ ହାସେନ ବୈ
କୁର୍ବିତାଶୋକପାଦଘାତବକୁଳଃ ସ୍ୱାମଦୁଧୁସଂସ୍ମୃତେ
ସଂପୀଡ଼ିତଃ କୁରୁଣ୍ଟକଃ କୁଚ ଯୁଗେ ସ୍ୟାତ୍‌କର୍ଣ୍ଣିକାରସ୍ୟବୈ
ସମଭ୍ରେପର ଲ୍ପଷଣେ ଚ କୁସୁମ ଶୀବେରୁହାସ୍ରାଦନେ ।। ୨ ।

ପୁନ୍ନାଗ ଦୋହଦ—

ଅପୃଷ୍ଟ ଅଗ ପାଶେ ପୁନ୍ନାଗ ଅତି ହାସରେ ଦେଶଭ୍ରଷ ସଙ୍ଗ
ଅନେକ ଫୁଲ ଜାତ ମଞ୍ଜୁଳ ଅଚିରେ ଉରେ ମଣ୍ଡି ରଚି ମାଳ ।୧୦।

କୃଷ୍ଣ—

ଅଚ୍ୟୁତ ଗୃହ୍ବିଁ ବହ ସ୍ନେହେ କହ୍ନ ଆଜ ପୁନ୍ନାଗରେ ସେନେହ ସନ୍ଧ
ଅଟଇ ସ୍ତନ ଯୁଗ ଈଶାନ ଅଣି ରଖିଲୁ ସମ୍ଭାବତ ସ୍ଥାନ ।। ୧୧ ।

ଆମ୍ର ଦୋହଦ—

ଆମ୍ର ମୂଳରେ ମିଳଲେ ଖରେ ଅମୂକୂଳ ଦେଖି ଶାଖି ଶିଖରେ
ଅବଳା କରେ ସ୍ମରଣ କରେ ଅତି ମୁକୁଳ ତୋଷେ ମଧୁକରେ ।୧୨।

ନାୟକ—

ଅଚ୍ୟୁତ କହ୍ନ ଗୋ ପରଶ ସନ୍ଧ ଅନଙ୍ଗକୁ ଶର ଦେଲୁ ବେଢାଇ
ଆପେ ନମିତ କର ଯେମନ୍ତ ଅଙ୍ଗରେ ଶସ୍ତ୍ରକାର ହୋଯ୍ୟେ ହତ ।୧୩।

ବକୁଳ ଦୋହଦ—

ଆସି ବକୁଳ ମୂଳେ ସକଳ ଅକୁସୁମିତ ଦେଖି ଶାଖାକୁଳ
ଅଧର ମଧୁ ଦଅନ୍ତେ ବଧ ଆମୋଦ କୁସୁମ ବକାଶେ ସାଧୁ ।୧୪।

ନାୟକ—

ଆଲୋକ ହର ବୋଲନ୍ତି ଗୋ ନାହିଁ ଅନୁଗ୍ରହ କଲୁ ଅଚେତ ଶିଖି
ଅଜ୍ଞାନ ଏହି ହେଜଇ ନାହିଁ ଅଚିରେ ମଧୁପରେ ରତସହି । ୧୫ ।

ଅଶୋକ ଦୋହଦ—

ଅଶୋକ ଶାଖି ଶାଖାକୁ ଦେଖି ଅଙ୍ଘ୍ରି ଘାତ କଲା ସରୋଜମୁଖୀ
ଆଶୁ ଜନନ ଗୁଚ୍ଛ ସୁମନ ଅବଳା କବରୀ କର୍ଣ୍ଣ ମଣ୍ଡନ । ୧୬ ।

ନାୟକ—

ଅଦ୍ଭୁତ ଗୃହିଁ ମାଧବ କହି ଅତ୍ର ପଦଘାତେ ସୁମନ ଏହି
ଅବଳା ମାନ କାଳେ ଯେସନ ଅଙ୍ଘ୍ରି ବନ୍ଦ ଧ୍ୱଂସ ଲଭେ ସୁମନ ।୧୭।

କର୍ଣ୍ଣିକାର ଦୋହଦ—

ଅକୁସୁମିତ କେ ବୋଲେ ମିତ ଆଜ ଦେଖ କର୍ଣ୍ଣିକାର ଅମିତ
ଅବଳାମଣି ସମସ୍ତ ବାଣୀ ଆକର୍ଣ୍ଣି କର୍ଣ୍ଣିକାର ପୁଷ୍ପଶ୍ରେଣୀ ।୧୮।

ନାୟକ—

ଅବଳା ହସି ସେ ନବ ବୟସୀ ଅବତଂସ କଲେ କର୍ଣ୍ଣରେ ରସି
ଅନ୍ୟୋତ ପୁନ ବସ ବଚନ ଅମ୍ଭୋଜନମ୍ନି କର୍ଣ୍ଣିକାରେ ଶୋଭନ ।୧୯।

ସିନ୍ଧୁବାର ଦୋହଦ—

ଅନେକ ସିନ୍ଧୁ- ବାରକୁ ବନ୍ଧୁ ଆଣ ପାଷାଣ ଦେବା ବୋଲେ ବଧୂ
ଅନ୍ତେ ନ ପଶ ଗୋ ଓଷ୍ଠର ଆସ ଅବଳାମ୍ୱେ ଶୁଣି ପୁଷ୍ପ ବିକାଶ । ୨୦ ।

ନାୟକ—

ଆଲୋକ ସନ୍ତି ମଧ୍ୟମା ଦୂତି ଅଚ୍ୟୁତ ବଦନ୍ତି ପ୍ରମାଣ ଖିନ୍ତି
ଅତେ ଶମ୍ବର ସୂଷସ ମାର ଅବଗାହନେ ନ କର ସାଦର । ୨୧ ।

କୁରୁଣ୍ଟକ ଦୋହଦ—

ଅବଲୋକନ ରହରେ ପୁନ ଅତ୍ର କୁରୁଣ୍ଟକ ଦ୍ରୁମ ଶୋଭନ
ଅମ୍ବର ତନୁ କାଢ଼ ସୁତନୁ ଆଶ୍ଳେଷ ଗାଢ଼ରେ ପୁଷ୍ପିତ ଅନୁ ।୨୨।

ନାୟକ—

ଅଚ୍ୟୁତ ରତ୍ନ  ରୂପରେ ସ୍ୱର୍ଣ୍ଣ  ଅଗୋଚର କିଛୁ ନୋହିଲ କନ୍ତ
ଅଟେ ଅମ୍ଳାନ  ମହାସତ୍ତା ସ୍ୱନ  ଅଟଳ ସତ୍ତ୍ୱ ନୋହିଲ ମଳିନ ॥ ୨୩ ॥

କୁସୁମ୍ଭ ଦୋହଦ—

ଅଛି କୁସୁମ  ଗୁଳ୍ମ ସୁଷମ  ଅନୁରାଗେ ପୁଷ୍ପ କଲା ଜନମ
ଆମୁକ୍ତ କଚ  ପିଧାନେ ସଞ୍ଚ  ଅଳି ରସି ସେ କୁସୁମ୍ଭ ବିକଚ । ୨୪ ।

ନାୟକ—

ଅଚ୍ୟୁତ ସୃଷ୍ଟି  ଗୋ ରକ୍ତ ଲଜ୍ଜସି  ଅଛୁ କି ଏତ୍ତ ପ୍ରବଂଗରେ ରସି
ଅଳି କୁସୁମ-  ବର୍ଣ୍ଣରେ ପ୍ରେମ  ଆଚରାଇ ରଖାଇଲୁ କି ସମ । ୨୫ ॥

କେତକୀ ଦୋହଦ—

ଆନ କୁସୁମ  କେତକୀ ଗୁଳ୍ମ  ଅବଳା ସେଣୁ ପୁଲେ ଭର ପ୍ରେମ
ଆସି ବଦନ  ସ୍ୱତ ପ୍ରଦାନ  ଅଚରେ ପୁଷ୍ପ କବରୀ ମଣ୍ଡନ । ୨୬ ॥

ନାୟକ—

ଅଚ୍ୟୁତ କନ୍ତ  ଉଚିତ ଏତ୍ତ  ଅତି କଣ୍ଟକେ ଘାତ କଲୁ ସନ୍ତ
ଅଛୁ ମନୀଷା  ଏ କିବ ନିଶା  ଆଜ ବରଦ କୁଚ ସମ୍ପୃକ୍ତ ଭୂଷା । ୨୭ ।

ଶ୍ୟାମା ଦୋହଦ—

ଆଲୋକ ଶ୍ୟାମା  ଲତା କେ ବାମା  ଆରମ୍ଭେ ସଙ୍ଗୀତ ସେ ମନୋରମା
ଅପୂର୍ବ ଗୀତ  ଶୁଣି ଭରିତ  ଆନନ୍ଦ ଲଭି ହେଲା ମୁକୁଳିତ । ୨୮ ।

ନାୟକ—

ଅଚ୍ୟୁତ ଭଙ୍ଗି  ଅଟୁ ଶ୍ୟାମାଙ୍ଗୀ  ଅଙ୍ଗୀକାର ପ୍ରୀତି ସଙ୍ଗୀତ ସଙ୍ଗୀ
ଆଜ ଏ ପିକ  ହୋଇବ ମୂକ  ଆଉଥରେ ଶୁଣି ମୁଞ୍ଚିବ ଓକ । ୨୯ ॥

କିଞ୍ଚନ ଦୋହଦ—

ଅଛି କୁଦ୍ଦାଳ  ବଜନ ସ୍ଥଳ  ଆଲିଙ୍ଗନ ସେହେ କଲା ଚପଳ
ଅଧିକ ଫୁଲ  ହେଲା ମୁକୁଳ  ଅଳି ଲଭିଲ ତା ମଧୁ ଅତୁଳ । ୩୦ ।

କୃଷ୍ଣ—

ଅନ୍ତରେ ରତ୍ନ  ଗୋବିନ୍ଦ କନ୍ତ  ଅଙ୍ଗନା କୋବଦାର ଅଟେ ଏତ୍ତ
ଆଦ୍ୟ ବର୍ଣ୍ଣକୁ  କର ଲେପକୁ  ଅବଲୋକେ କରଥାଅ ଅଙ୍ଗକୁ ।୩୧

ଚମ୍ପକ ଦୋହଦ —

ଆସବ ଆଣି ସବ ତରୁଣୀ ଆସ୍ୱାଦତ କଲେ କର ଭ୍ରମଣି<br>
ଅଙ୍ଘ୍ରି ସ୍ଖଳନ ରକ୍ତ ନୟନ ଉଚ୍ଚହାସେ ମିଳି ଚମ୍ପକ ବନ ॥ ୩୨ ॥<br>
ଅନର୍ଥ ବାଣୀ କହେ ତରୁଣୀ ଅନ୍ଧାର ଗିଳିଲା ଆଜ ତରୁଣୀ<br>
ଆସି ଖଦ୍ୟୋତ କଲେ ମୁକତ ଆଲାପ ଶୁଣି ଚମ୍ପକ ପୁଷ୍ପିତ ॥ ୩୩ ॥

ପ୍ରିୟଙ୍ଗୁ ଦୋହଦ —

ଆଲୋକ ଫଳ ଲତା କେ ବାଳୀ ଅଟେ ପ୍ରିୟଙ୍ଗୁ ବେଳ ବର୍ଣ୍ଣ ଝୁଲୀ<br>
ଅତି ଶୀତଳ ବାଣୀ ମଞ୍ଜୁଳ ଅବଳମ୍ବେ ହେଲା ପୁଷ୍ପ ମୁକୁଳ ॥୩୪॥

କୃଷ୍ଣ—

ଅଚ୍ୟୁତ କନ୍ଧ ପ୍ରିୟଙ୍ଗୁ ଏନ୍ଧ × × ମଧ୍ୟେ ଦେଲେ ଗ୍ରନ୍ଥ ହୋଇ<br>
ଆପଣେ ବାସ ହରଣେ ତୋଷ ଅଙ୍ଗନା ଶୁଣି କଲା ମନ୍ଦହାସ ॥ ୩୫ ॥

କଦମ୍ବ ଦୋହଦ —

ଆସି କଦମ୍ବ ମୂଳରେ ବମ୍ବ ଅରୁଣ ପଲ୍ଲବ ଓଷ୍ଠ କଦମ୍ବ<br>
ଅଙ୍କୁସ୍ମିତ କରଜ କ୍ଷତ ଆଚରବାରୁ ଅଚିରେ ପୁଷ୍ପିତ ॥ ୩୬ ॥

କୃଷ୍ଣ—

ଅଚ୍ୟୁତ ଭାଷ କଲେ ପ୍ରକାଶ ଆଜ ହୋଇଲୁ ପ୍ରିୟ କରେ ବଶ<br>
ଅନାପ୍ତତରେ କାମ କାତରେ ଆଚର ପ୍ରଗଲ୍ଭ ରାତ୍ର କ୍ଷତରେ ॥୩୭॥<br>
ଅଙ୍ଗନା ପୁଂସ ହୋଇ ହରଷ ଆଣି ପୁଷ୍ପ ପରସ୍ପର ସୁବେଶ<br>
ଅଟେ ଏ ସବ ଦୋହଦ ଭାବ ଆର୍ଯ୍ୟ.ତ ଶ୍ରୀ ଶ୍ୟାମସୁନ୍ଦର ଦେବ ॥୩୮॥

## — ଅଷ୍ଟମ କୁସୁମ —

# ବନ୍ଧ ମନାସ

( ରାଗ – ଗଡ଼ମାଳଶ୍ରୀ )

ଅଧୋମୁଖ ରତି ପାଶ, ଗୌଣ ପ୍ରିୟ ସୁର ଚନ୍ଦ୍ର ବିଶେଷ ଯେ
ଅଛି ବିପରୀତ ହାସ୍ୟ ।
ଆସ୍ତିକ ଉରୁ ପୀଡ଼ନ, କାମପ୍ରଦର ଅପ୍ରିୟ ତୋଷଣ ଯେ
ଅଟେ ଏକାଦଶ ଭେଦ । ଅଙ୍ଗନା ଗୋ ॥ ୧ ॥

ଅଧୋମୁଖ ସେ ଧେନୁକ, ପ୍ରିୟ ତୋଷ ଦେବ ହାସ୍ୟ ସ୍ୱସ୍ତିକ ଯେ
ଅଟେ ଏକ ପାଦ ଟେକ ।
ଅଛି ବିପରୀତ ହଂସ, ସୁର ଚନ୍ଦ୍ର ପଦ୍ମ କୁରୁମ ରସ ଯେ
ମତ୍ସ୍ୟପୃଷ୍ଠ ଚତୁର୍ଦ୍ଦଶ । ଅଙ୍ଗନା ଗୋ ॥ ୨ ॥

ଅଛି ବୃଷଭ ହାସ୍ତିକ, ରତିପାଶ ମତ୍ସ୍ୟପୃଷ୍ଠ ସ୍ୱସ୍ତିକ ଯେ
ଅଟେ ଗାନ୍ଧର୍ବ ଶୌନକ ।
ଅଧୋମୁଖ ସେ ମାର୍ଜାର, ପ୍ରିୟ ତୋଷଣ ଦେବ ବନ୍ଧ ସାର ଯେ
ପଦ୍ମ ମର୍କଟ ଏ ତେର । ଅଙ୍ଗନା ଗୋ ॥ ୩ ॥

ଅଧୋମୁଖ ସେ ସ୍ୱସ୍ତିକ, କର୍ଣ୍ଣାକର୍ଷଣ ଗାନ୍ଧର୍ବ ଶୌନକ ଯେ
ଅଛି ମାର୍ଜାର ଷଟ୍‌କ ।
ଅଦ୍ଭୁତ ସର୍ବତୋମୁଖ, କାମପ୍ରଦ ହଂସ ରସକୁ ଲେଖ ଯେ
ଅଟେ ବାର ସଂଖ୍ୟା ଦେଖ । ଅଙ୍ଗନା ଗୋ ॥ ୪ ॥

ଆସ୍ତିକ ସେ ମତ୍ସ୍ୟପୃଷ୍ଠ, ସର୍ବତୋମୁଖ ଶୌନକ ମର୍କଟ ଯେ
ଅଛି ବିପରୀତ ପୃଷ୍ଠ ।
ଅଙ୍ଗ ନିପୀଡ଼ନ ଧ୍ୱଜ, ଅଧୋମୁଖ କୂର୍ମବନ୍ଧ ବିରାଜ ଯେ
ଅଦ୍ଭୁତ ଏଗାର ଭେଦ । ଅଙ୍ଗନା ଗୋ ॥ ୫ ॥

ଅଦ୍ଭୁତ ବନ୍ଧ ଧେନୁକ, ଉରୁ ପୀଡ଼ନ ଗାବର ସ୍ୱାସ୍ତିକ ଯେ
ଆବର ବନ୍ଧ ଖର୍ପକ ।
ଅଧୋମୁଖ ବନ୍ଧ ଦାସ୍ୟ, ଅଛୁ ଚାଷ ଦେବ ବନ୍ଧ ବିଶେଷ ଯେ
ଅଟେ ଧ୍ୱଜ ଏକାଦଶ । ଅଙ୍ଗନା ଗୋ ॥ ୭ ॥ *

— ଗୀତ —

( ରାଗ— କେଦାର )

(କି କରିବ ସଖୀ କହ, ଜଳ ଉଠୁଅଛି ଦେହ—ଏ ବାଣୀରେ)
ଅଙ୍ଗନା ଚଳୁ ତଳରେ  ଅଙ୍ଘ୍ରି ଯୁଗଳ ଗଳରେ
ଅଟେ କାମପ୍ରଦ ବନ୍ଧ ଏ ସୁଖଦ ଯେ
X X X ଙ୍ଗ ପ୍ରଚଳରେ । ଅଙ୍ଗନା ଗୋ ॥ ୧ ॥

ଉକ୍ତଂ ଚ—
ପାଦୌ ପୁଂସ୍କନ୍ଧଯୁଗ୍ମସ୍ଥା କ୍ଷିପ୍ତ୍ୱା ଲିଙ୍ଗଂ ଭଗେ ଲଘୁ
କାରୟେତ୍ତୁ କାମୁକଃ କେଳିଂ ବନ୍ଧଃ କାମପ୍ରଦୋ ହ୍ୟସଃ ।୧
(ଇତି ସୁରଦୀପିକାୟାମ୍)

---

* ବନ୍ଧ—(୧) କାମପ୍ରଦ । (୨) ଉପସ୍ଥିତ । (୩) ଦାସ୍ୟ । (୪) ରତିପାଶ । (୫) ରସବନ୍ଧ (୬) ପ୍ରିୟତୋଷଣ । (୭) ଅଧୋମୁଖ । (୮) ବୈଦ୍ୟୁତ । (୯) ଉରୁପୀଡ଼ନ (୧୦) ସୁରତ । (୧୧) ଆସ୍ତିକ । (୧୨) ଏକପାଦ । (୧୩) ଧେନୁକ । (୧୪) ସ୍ୱସ୍ତିକ (୧୫) ପଦ୍ମବନ୍ଧ । (୧୬) ହଂସବନ୍ଧ । (୧୭) ମତ୍ସ୍ୟପୁଚ୍ଛ । (୧୮) କୂର୍ମବନ୍ଧ । (୧୯) ଦେବବନ୍ଧ (୨୦) ମର୍କଟ । (୨୧) ମାର୍ଜାର । (୨୨) ଶୌନକ । (୨୩) ଗାବର । (୨୪) ସ୍ୱାସ୍ତିକ (୨୫) ବୃଷଭ । (୨୬) ଖର୍ପକ । (୨୭) ଅଦ୍ଭୁତ । (୨୮) ସର୍ବତୋମୁଖ । (୨୯) କର୍ଣ୍ଣାଭରଣ (୩୦) ଅଙ୍ଗ ନିପୀଡ଼ନ । (୩୧) ଧ୍ୱଜବନ୍ଧ । (୩୨) ଚାଷବନ୍ଧ । (ପୋଥିପାଠ)

୧ । ପୀନଦ୍ୱୟଂ X ଜେ କୃତ୍ୱା କ୍ଷିପ୍ତ୍ୱା ଲିଙ୍ଗ ଭଗେ ଲଘୁ
କାମୟେତ୍ କାମୁକଂ କାନ୍ତାବନ୍ଧ କାମପ୍ରଦୋ ହ୍ୟସଃ । (ପୋଥିପାଠ)

ଅଙ୍ଗନା ଧବ ଉପରେ ଆରମ୍ଭେ ରତି ତଳ୍ପରେ
ଅଟେ ବିପରୀତ ସୁବେଶୀ ନର୍ତ୍ତକୀ ଗୋ
ନାୟିକାମଣି ସେ ରୂପରେ । ଅଙ୍ଗନା ଗୋ ॥ ୨ ॥

ଅବିରତ ସୁରସରେ ଅଧିକ ପ୍ରେମ ହାସରେ
ଅଛି ପରକାଶ ବନ୍ଧ ନାମ ହାସ୍ୟ ଗୋ
ଆଚରିବୁ ବିଶେଷରେ । ଅଙ୍ଗନା ଗୋ ॥ ୩ ॥

ଅବଳାର ରତିପାଶ ଆବନ୍ଧନେ ରଖେ ପାଶ
ଅଚଳୁ ରଙ୍ଗେ ପୀଡ଼ନ ଉରୁ ଯୁଗ ଯେ
ବନ୍ଧ ନାମ ରତି ପାଶ । ଅଙ୍ଗନା ଗୋ ॥ ୪ ॥*

ଆରମ୍ଭି ଅଚଳୁ ରସ ଅବଳା ଜଂଘ ସରସ
ଆଣି ଉରୁରେ ଦେଇ ଭୁଜେ ଆଶ୍ଳେଷ ଯେ
ରମିଲେ ଏ ବନ୍ଧରସ । ଅଙ୍ଗନା ଗୋ ॥ ୫ ॥

ଅବଳା ବେନି ଚରଣ ଉର୍ଦ୍ଧ୍ୱ କନ୍ଧରେ ଧାରଣ
ଉପଚି ସ୍ତନେ କର କରି ରମିଲେ ଗୋ
ଏ ବନ୍ଧ ପ୍ରିୟତୋଷଣ । ଅଙ୍ଗନା ଗୋ ॥ ୬ ॥★

ଅରବିନ୍ଦ ନିନ୍ଦେ ମୁଖ ଆଜ ମୋ ଠାରେ ସୁମୁଖ
ଅଧୋମୁଖ ବନ୍ଧ ଆଚରଣ କରି ଯେ
ହରି ସ୍ମର ଶିଳୀମୁଖ । ଅଙ୍ଗନା ଗୋ ॥ ୭ ॥

ଅନାଦୃତ ଭୁ ଗଜସ୍ଥ ଅବନୀ ଚମ୍ପା ଚନ୍ଦ୍ରସ୍ଥ
ଆଚରି ଗଜସ୍ଥ ପ୍ରିୟ ବନ୍ଧ ତୋଷ ଗୋ
ପ୍ରିୟ ମୁଁ ତୋର ଶଗସ୍ଥ । ଅଙ୍ଗନା ଗୋ ॥ ୮ ॥

---

* ପୀଡ଼ୟେଦୂରୁଯୁଗ୍ମେନ କାମୁକୋ ଯଦି ସୁନ୍ଦରୀଂ
ରତିପାଶଂ ତଦାଖ୍ୟାତଂ କାମିନାଂ ଚ ସୁଖାବହଃ ।
(ଇତି ସ୍ମରଦୀପିକାୟାଂ) (ପୋଥିପାଠ)

★ ନାର୍ଯ୍ୟାଃ ପାଦୌ କନ୍ଧେନ ଧାରୟନ୍ କୁଚୟୋ ଯଦି
ସ୍ତନୌ ପୀଡ଼ୟେତ୍ କାମୀ କାମୟେତ୍ ପ୍ରିୟତୋଷଣଃ । (ପୋଥିପାଠ)

ଅବଳା ଊରୁଯୁଗରେ       ଆତ୍ମେଶ୍ୱର ସରାଗରେ
ଅର୍ପିତ ବେଣ୍ଣ କନ୍ଧରେ ପ୍ରାଚୀନ ଯେ
ବନ୍ଧ ସମ୍ମତ ନାଗରେ । ଅଙ୍ଗନା ଗୋ ॥ ୯ ॥

ଅବଳା ପୁଂସ ଭାବରେ       ଆଣି ପାଣିକ ଜବରେ
ଅର ପରଭ୍ରମି ଚୁମ୍ବନ ସୁରତେ ଗୋ
ଏ ଚକ୍ରବନ୍ଧ ପ୍ରବରେ । ଅଙ୍ଗନା ଗୋ ॥ ୧୦ ॥*

ଆତ୍ମେଶ୍ୱର ହସ୍ତ କରେ       ଅନ୍ତରେ ମୁଦ ପ୍ରକରେ
ଆଲମ୍ବିତ ପାଦକଣ୍ଠେ ଭଡ଼ୁ ଚୁମ୍ବେ ଯେ
× × ପ୍ରେତ ବନ୍ଧ ଆଜ୍ଞକରେ । ଅଙ୍ଗନା ଗୋ ।୧୧।

ଆତ୍ମେଶ୍ୱର ଧରେ ପଦ       ଆଉ ପଦ ସୁଖପ୍ରଦ
ଆଲମ୍ବି କଣ୍ଠେ ନାୟକର ରତରେ ଯେ
ବନ୍ଧ ନାମ ପ୍ରେଙ୍ଖ ପଦ । ଅଙ୍ଗନା ଗୋ । ୧୨ ।★

ଅବଳା କର ଗୁମ୍ଫିତ       ଆଦରେ ଊରୁ ବନ୍ଧିତ
ଅବଳା ସେ ସ୍ତନଯୁଗ କୁମ୍ଭ ଧରି ଯେ
ଧେନୁକ ବନ୍ଧ ଏହି ତ । ଅଙ୍ଗନ ଗୋ । ୧୩ ॥+

---

* ଉକ୍ତଂ ଚ—
ପୁଂ ଭାବ ସଂସ୍ଥିତନିତି ସୁମୁଖୀ ପ୍ରିୟସ୍ୟ ପଷ୍ଟ ତ୍ର ବର୍ତ୍ତିତ୍ୟ
କେ × ଷ୍ଟ କରୌ ନିପୀଡ଼୍ୟ
ଯା ଚକ୍ରବତ୍ ଭ୍ରମତି ଚୁମ୍ବନା × × × × ଚକ୍ରବନ୍ଧମିତି ନ୍ନି ଗୁଣା ବଦନ୍ତି ।
(ଇତି ଚନ୍ଦ୍ରାମଣୌ) ॥ ପୋଥିପାଠ ॥

★ ଉତ୍ତିଷ୍ଠତି ପ୍ରିୟସ୍ୟ ଗୃହୀତପଦଃ କରେଣ
ସ୍ଥିତ୍ୱା ପଦେନ ଭୁବନାୟକକଣ୍ଠଲମ୍ବୀ
ତତ୍ପାଣିପଲ୍ଲବ ଗୃହୀତକୁଚ୍ଛତି ଦନ
ପାଣି ରତି ସମୁପଯାତି ଯଦେକପାଦଂ ।
(ଇତି ଚନ୍ଦ୍ରାମଣୌ) ॥ ପୋଥିପାଠ ॥

\+ ବନମତି ନଜ ଦେହେ × × ×
ସ୍ୱ ଊରୁଯୁଗଗୃହୀତ୍ୱା ବା ରସ ଯାତି ବ୍ରତଃ
ଭୁଜଯୁଗକୃତହସ୍ତେ ସ୍ୱେଚ୍ଛୟା ସଂଗୃହୀତଃ
ସ୍ତନକଳଶଯୁଗସ୍ୟାତ୍ର ପ୍ରିୟାୟୈ ଧେନୁକଂ ତତ୍ । (ପୋଥିପାଠ)

ଆଣି ଗୁଲ୍‌ଫେ ନିରନ୍ତର        ଆଲିଙ୍ଗନ ଦୃଢତର
ଆଚରନ୍ତେ ରତି ସ୍ୱସ୍ତିକ ଏ ଖ୍ୟାତ ଯେ
ଚଣେନା ବନ୍ଧ ଭିତର । ଅଙ୍ଗନା ଗୋ ॥ ୧୪ ॥

ଶ୍ଲୋକଃ— ତଦନୁ ନିକ୍ଷିପ୍ତ ଗୁଲ୍‌ଫେ ଗାଢାଲିଙ୍ଗନମାଚରନ୍
ଆସୀନାର୍ଯାରତିର୍ଜାତଂ ସ୍ୱସ୍ତିକଂ ପରିକୀର୍ତ୍ତିତମ୍ ।

ଅଧିକେ ମୃଦୁ ପ୍ରକାର        ଆଣି ଗୁଲ୍‌ଫେ ବେନି କର
ଆଗୃହୀତ କଣ୍ଠପଦ୍ମ ବନ୍ଧ ଶ୍ରେଷ୍ଠ ଯେ
ସୁଖଦାତା ନାୟକର । ଅଙ୍ଗନା ଗୋ ॥ ୧୫ ॥*

ଅପସରିବ ସ୍ୱଦେହ        ଅଧସ୍ଥିତ ଊର୍ଦ୍ଧ୍ୱ ଦେହ
ଅଙ୍‌ଘ୍ରି ଦ୍ୱୟ ପୃଷ୍ଠୀକୃତ ସୁରତରେ ଯେ
ହଂସବନ୍ଧ ନିଃସନ୍ଦେହ । ଅଙ୍ଗନା ଗୋ ॥ ୧୬ ॥★

ଆମ୍ରେଶୁଙ୍କ ଜଘନରେ        ଅବଳା ପଦ ଘନରେ
ଅଚଳ କୁଚ ନାୟକ ହୃଦେ ନିଦ୍ଧ ଯେ
ମତ୍ସ୍ୟପୃଷ୍ଠ ବିଧାନରେ । ଅଙ୍ଗନା ଗୋ ॥ ୧୭ ॥+

ଅବଳା କୁଚ ପ୍ରାନ୍ତରେ        ଅଙ୍‌ଘ୍ରି ରଖି ନିରନ୍ତରେ
ଅଙ୍ଗଭଗେ ନାଗପାଦ କରେ କରିଜେ
କୂର୍ମବନ୍ଧ ନିତାନ୍ତରେ । ଅଙ୍ଗନା ଗୋ ॥ ୧୮ ॥*

---

* × × ଗୁଲଫ କରଯୁଗ୍ମେନ ଗୃହ୍ୟ କଣ୍ଠପ୍ରଦେଶେନ ରୁ
ମଣିନୈର୍ଯାରତଃ ହେତେ ପଦ୍ମବନ୍ଧ ମୁଦାହୃତମ ।

★ ଅଧଃସ୍ଥିତୋଽର୍ଦ୍ଧ୍ୱଦେହାୟାଂ ପୃଷ୍ଠୀକୃତ ପଦଦ୍ୱୟୋ
× × × ସୀନେନ କ୍ରିୟମଣ୍ ହଂସବନ୍ଧସ୍ତଦୁଚ୍ୟତେ ।

+ ଶଯ୍ୟା ନିବିଷ୍ଟ ପଦହସ୍ତ ଯୁଗସ୍ୟ ପୁଂସୋ
ଜଂଘଦ୍ୱୟେ ନିଜପଦ ହସ୍ତୀୟଂ ବିଧାୟ
ଘର୍ଷା ରୁରଜଯୁଗଳଂ ହୃଦ ନାୟକସ୍ୟ
ସମ୍ଭୋଗ ମେତ ଘନ ମତ୍ସ୍ୟପୃଷ୍ଠଂ ତଦେତି

× କାନ୍ତାକୁଚପ୍ରାନ୍ତନିବିଷ୍ଟପାଦ
ସ୍ତସ୍ୟ ପଦଦ୍ୱନ୍ଦ୍ୱଦସ୍ପିତାଙ୍ଗଭଗଃ
କରୌଗୃହୀତ୍ୱା ସ୍ୱକରଦ୍ୱୟେନ
ରମେ ଯତଃ ସୋଽପି ଚ କୂର୍ମବନ୍ଧଃ ॥ (ପୋଥିପାଠ)

ଅଙ୍ଗ୍ରି ବନ୍ଧସ୍ତ ଉପରେ  ଆଣି କର କୁଚ ପରେ
ଅଟେ ଦେବ ବନ୍ଧ ନାମ ଏ ପ୍ରସିଦ୍ଧ ଗୋ
ଚଳନ୍ତୁ ସୁଖ ଅନଳୁରେ । ଅଙ୍ଗନା ଗୋ  ॥ ୧୯ ॥*

ଅନଙ୍ଗ ଶାସ୍ତ୍ର ପ୍ରକଟ  ଅଭ୍ୟାସ ବନା ସଂକଟ
ଆଜ ଶିଖାଇବ ରତ୍ତ ଲାଳସୀରେ ଯେ
ଯେମନ୍ତ ବନ୍ଧ ମର୍କଟ । ଅଙ୍ଗନା ଗୋ  ॥ ୨୦ ॥

ଅନଙ୍ଗ କେଳି କୋବଦା  ଅଟୁ ସେ ସୁଖ ସଂବଦା
ଅଟ୍ଟ ପ୍ରଗ୍ରୁର ବନ୍ଧ ନାମ ମାର୍ଜାର ଗୋ
ଆଚରବୁ ରସବଦା । ଅଙ୍ଗନା ଗୋ  ॥ ୨୧ ॥

ଅଙ୍ଗ ତୋ ଦାହ କନକ  ଅକ୍ଷିର ଆସେଚନକ
ଆଜ ମନୋହାସ୍ୱ ହରବୁକ ମନ ଗୋ
ବରଚ ବନ୍ଧ ଶୌନକ ଅଙ୍ଗନା ଗୋ  ॥ ୨୨ ॥

ଅତନୁ କେଳି ସନ୍ଦର୍ଭ  ଆଚର ବନ୍ଧ ଗାବଭ
ଅଟ୍ଟ ଅଣସୃକ ନାମରେ ପବନ ଗୋ
ତୃଣରେ ଯେମନ୍ତ ଦର୍ଭ । ଅଙ୍ଗନା ଗୋ  ॥ ୨୩ ॥

ଆଜ କାମ ନାସ୍ତିକରେ  ଅପେ ଦେବ ଶାସ୍ତିକରେ
× × × କୁମ୍ଭୀ କୁମ୍ଭୀ କୁମ୍ଭ ସ୍ତନା ସୁରତ ଗୋ
ବନ୍ଧ ନାମ ହାସ୍ତିକରେ । ଅଙ୍ଗନା ଗୋ  ॥ ୨୪ ॥

ଅନଙ୍ଗ ଅଭସ୍ତୁକର  ଅଛନ୍ତି କୁଚ ଶଙ୍କର
ଅବଶ୍ୟ ବୃଷବନ୍ଧ ଯୁତ ଉଚତ ଗୋ
ଚିତ୍ତରେ ବଗୃର କର । ଅଙ୍ଗନା ଗୋ  ॥ ୨୫ ॥

ଅନଙ୍ଗ ଲୀଳା ସଜକ  ଅନ୍ତକେ ପୁଷ୍ପ ପର୍ଯ୍ୟଙ୍କ
ଆଜ ସାଜ ତନୁ ଅତନୁ କେଳିରେ ଗୋ
ରଚବୁ ବନ୍ଧ ଷାର୍ପକ । ଅଙ୍ଗନା ଗୋ  ॥ ୨୬ ॥

---

* ହପ ର୍ଯ୍ୟ ପଶ ବନ୍ଧସ୍ତ ପାଦୌ ବକ୍ଷୋ × ହୃଦ୍ୱୟେ
କରୌ ନକ୍ଷିପ୍ୟ କାନ୍ତାୟାଃ ଦେବବନ୍ଧ ରମେଦ୍ ଯଦଃ ।
(ଇତି ଚନ୍ଦ୍ରାମଣୌ) ॥ ପୋଥିପାଠ ॥

ଟେଙ୍କୁ ତୁ ପଞ୍ଚଭୂତ        ଅଧିକେ ରସ ସଂଭୂତ
ଅନଙ୍ଗ ରଙ୍ଗରେ ଆଚରିବୁ ଆଜ ଗୋ
ଯେ ବନ୍ଧ ଖ୍ୟାତ ଅଦ୍ଭୁତ । ଅଙ୍ଗନା ଗୋ । ୨୭ ॥

ଅଙ୍ଗନା କୁଳ ପ୍ରମୁଖ        ଅରବିନ୍ଦ ଚନ୍ଦ୍ର ମୁଖ
ଆଜ ବକଶି ସିତରେ ଆଚର ଗୋ
ବନ୍ଧ ଯେ ସର୍ବତୋମୁଖ । ଅଙ୍ଗନା ଗୋ । ୨୮ ॥

ଅତି କର୍ଣ୍ଣ ଆଭରଣ × × × କାରଣ
ଅବାରଣ ରଞ୍ଜ ବାରଣ ଗମନା ଗୋ
ବନ୍ଧ କର୍ଣ୍ଣ ଆଭରଣ । ଅଙ୍ଗନା ଗୋ ॥ ୨୯ ॥

ଅନଙ୍ଗ ପୀଡ଼ା ଖଣ୍ଡନ        ଅଟୁ ମୋ ଶିର ମଣ୍ଡନ
ଅବହେଳ ନବୀନା ରତି ପାଳନ ଗୋ
ଆଚର ଉରୁ ପୀଡନ । ଅଙ୍ଗନା ଗୋ ॥ ୩୦ ॥

ଅଜିତ ମକର ଧ୍ୱଜ        ଆଜ ଜଣି ଟେକ ଧ୍ୱଜ
ଅବଳା ବଳା × × × ବଜାଇ ଗୋ
ସରଜ ଏ ବନ୍ଧ ଧ୍ୱଜ । ଅଙ୍ଗନା ଗୋ ॥ ୩୧ ॥

ଅଲକ୍ତ ଅଞ୍ଜନେ ଚୟ        ଅଲେଖରେ ଅଙ୍ଗ ଚୟ
ଅଟୁ ଏ ଯେନ ଚୟକର୍ମ ସୁଗମା ଗୋ
ଆରମ୍ଭିବୁ ବନ୍ଧ ଚୟ । ଅଙ୍ଗନା ଗୋ ॥ ୩୨ ॥

ଅଟୁଟ ଲୀଳା ବିଭବ        ଅଜ୍ଞାତ ସ୍ୱୟମ୍ଭୂଭବ
ଅଳପ ଶ୍ୟାମସୁନ୍ଦର ଦେବ କହେ ଯେ
ମାଧୁର୍ଯ୍ୟ ଲୀଳା ପ୍ରଭବ । କୋବିଦେ ହେ ॥ ୩୩ ।

ଆଦ୍ୟ ଶ୍ରୀ ଚୈତନ୍ୟ ସୂତ୍ର        ଆଖ୍ୟାତ ଭକ୍ତି ତନ୍ତ୍ର
ଅଷ୍ଟପୋଛି ବେଶ ପେଷଲ ନର୍ତ୍ତୁପୁ ଯେ
ଦୂର ଦରଶନ ରତି । କୋବିଦେ ହେ । ୩୪ ॥

ଆଦ୍ୟ ଭାଗ ବୋଲି ପୁନ        ଅଟୁ ସାକ୍ଷାତ ଦର୍ଶନ
ଅତି ଉତ୍କଣ୍ଠିତା ପ୍ରଦୋଷ ସବିତା ଯେ
ନୂତନ କେଳି ବିଧାନ । କୋବିଦେ ହେ ॥ ୩୫ ॥

ଉପିତାଭିସାର ସ୍ୱ   ଅଛୁ ଦିଖାପୁରେ ରସ
ଆଦ୍ୟ ଛନ୍ଦେ କାମ ବେଶ, ଦିଖାପୁରେ ସେ
ମଦନ କେଳି ବିଶେଷ । କୋବିଦେ ହେ ॥ ୩୬ ॥

ଅସ୍ତୁ ଚଉପଘା ପ୍ଳିତ   ଅଛୁ ମୁଗ୍‌ଧା ମଧ୍ୟା ସ୍ଥିତ
ଅବଦାତ ଅଭିସାର ଚଣ୍ଡିତା ସେ
ପ୍ରଗଲ୍‌ଭା ଲକ୍ଷଣ ଖ୍ୟାତ । କୋବିଦେ ହେ ॥ ୩୭ ॥

ଅଛୁ ଉଗରେ ଦୋହଦ   ଉଚ୍ଚୈଚଙ୍କ ବନ୍ଦ ପଦ
ଅସ୍ତମେ ବନ୍ଧ ମନାସ ବନ୍ଧ ପୁନ ସେ
× × ସୁଖୀ × ଏ ପଦ । କୋବିଦେ ହେ ॥ ୩୮ ॥

ଇତିଶ୍ରୀ ଅନୁରାଗ କଳ୍ପଲତା ପଞ୍ଚମ ସ୍ତବକ ସମ୍ପୂର୍ଣ୍ଣ ।

# ଷଷ୍ଠ ସ୍ତବକ

## — ପ୍ରଥମ କୁସୁମ —

## ଶ୍ରୀ ଯମୁନା ସ୍ତୁତି ଲେଖନ

॥ ଶ୍ରୀ କୃଷ୍ଣାୟ ନମଃ ॥

॥ ଶ୍ରୀ ଗଣେଶାୟ ନମଃ ॥

( ରାଗ — ମାଳବ ଗୌଡ଼ା ବାଣୀରେ )

ଉକ୍ତ ଶନ ଅର୍ଥ—

ଅର୍କ ଆତ୍ମଜାରେ ସଦା ବିନୟ
ଅଚିନ୍ତ୍ୟ ବିଧୁ ରୂପ ଅଦ୍ୱିତୀୟ ॥ ୧ ॥

ଅର୍ଦ୍ଧ ଭଜନ ଶନସାର କାୟ
ଅନିମିଷ ରଶ୍ମିରେ ଶୋଭମାୟ ॥ ୨ ॥

ଅବିରତ କମଳାଙ୍କେ ରଜିତ
ଆଖ୍ୟାତ ବିଶ୍ୱରେ କୁମୁଦବନ୍ତ ॥ ୩ ॥

ଆଲୋକରେ ରାଜେ ପ୍ରଭା ଚନ୍ଦର
ଆଳୟ ବନରାଶି ସୁଖକର ॥ ୪ ॥

ଅଙ୍କ ଶ୍ରୀବତ୍ସ ମକର କୁଣ୍ଡଳୀ
ଅଧ୍ୱ ଶ୍ରମ ତୃଷ୍ଣା ହରଣେ ଝଳ ॥ ୫ ॥

ଅମୃତମୟ ଶରୀର ବିହର
ଅଘ ଘନ ତାପ ବିନାଶକାରୀ ॥ ୬ ॥

ଆଦ୍ୟେ ବିବୁଧ ଜନକ ବନ୍ଦନ
ଅଧିକ ଗୋପେ ଉଚ୍ଚ ବିଦ୍ୟମାନ ॥ ୭ ॥

ଅଭଙ୍ଗ ସଭଙ୍ଗରେ ଶ୍ଳେଷ ସାଧୁ
ଅର୍କଜା ଅଶାସ୍ତ୍ରୁ ତ ବିସ୍ତୃ ବିଧୁ ॥ ୮ ॥

ଶ୍ଲେଷ —

ଅଭ୍ରମତଦା ଗିରିଜା ସାକ୍ଷାତ
ଆଶ୍ଲେଷ ବକ୍ଷକଣ୍ଠ ଅବିରତ ॥ ୯ ॥

ଆମନ୍ତ୍ରନ ପୁଣ୍ଡ୍ରସ୍ଥକର ପଦ
ଅଶେଷ ପୁଣ୍ୟ ଜନର ସୁଖଦ ॥ ୧୦ ॥

ଅନୁଗ୍ରହଂ କର ଅର୍କ ନନ୍ଦନା
ଅଧୋକ୍ଷଜ ବ୍ରଜକେଳି ବର୍ଣ୍ଣନା ॥ ୧୧ ॥

ଅତରେ ବାଚରେ ହେବ ନର୍ତ୍ତେ
ଅନ୍ତରେ ସ୍ୱେ ସେନ ଶରଣାଗତ ॥ ୧୨ ॥

ଅନନ୍ତ ତାତ ମାତଙ୍କୁ' କର
ଆଶ୍ରସ୍ୱେ ଉଭୟ ଭୟକୁ ହର । ୧୩ ॥

ଅକମାରେ ବ୍ୟକ୍ତ ସ୍ୱେଚ୍ଛ ନଦାନେ
ଆଶ୍ଚର୍ଯ୍ୟ କମମାଭ୍ରଷ୍ଟ ପ୍ରଦାନେ ॥ ୧୪ ॥

ଆଗତ ପ୍ରାତେ ହନେ ପୂର୍ଣ୍ଣମାସୀ
ଅଚ୍ୟୁତର ଦରଶନେ ଲାଳସୀ । ୧୫ ॥

ଅଙ୍ଘ୍ରି ବନ୍ଦନ କରାଇ ଯଶୋଦା
ଅତ କୃଷ୍ଣଙ୍କୁଂ ଏ ମମ ଦୁଃଖଦା । ୧୬ ॥

ଅମୃତ ସମ ଅଶନ ନ ରୁଚ
ଆପେ କଦମ୍ବ ଦେଖା ହ୍ୱତ ପାଞ୍ଚ ॥ ୧୭ ॥

ଆଣ ବୃଷଭାନୁ ଜେମା ଆଳୟୁ
ଅମୃତାଧିକ ଯାକ ସ୍ୱାଦୁମୟୁ ॥ ୧୮ ॥
ଅଶନରେ ଆୟୁବଳ ବର୍ଦ୍ଧନ
ଅନ୍ତର ଦେଖି କହ୍ନ ସ୍ୱେ ବଧାନ ॥ ୧୯ ॥

---

୧ । (କ) ଅନୁଗୃହ୍ଣ

୨ । (କ) ମା ଭ୍ରାତଙ୍କୁ

(ଖ) ଭ୍ରାମାତଙ୍କୁ

ଅସମ୍ଭବ ଯାଞ୍ଚା ଜନନୀ ଖେଦ
ଆଶ୍ଳେଷ ଉଦ୍‌ବେଗ କଲା ହୃଦ ॥ ୨୦ ॥

ଆତ୍ମପ୍ରାଣ ରଖିବ ଆତ୍ମଜକୁ
ଅର୍କ ରଶ୍ମି ନ ହରିବ ପଦ୍ମକୁ ॥ ୨୧ ॥

ଅନ୍ତରୀକ୍ଷ ହେବ ସମ୍ୟ ଦାୟିନୀ
ଅଭିମତ ମୋ ତଦନୁଯାୟିନୀ । ୨୨ ।

ଆଥ ନ ଦେଖି ଧନିଷ୍ଠା ଭାଷିତ
ଆସିବେ ସ୍ୱଧା ତ ବଦ ବସି ତ । ୨୩ ॥

ଆଦ୍ୟରେ ବିଶ୍ୱକର୍ମା ନାମଧେୟ
ଅଗ୍ରଜନ୍ମା କହିଛନ୍ତି ବିଧେୟ । ୨୪ ।

ଆତ୍ମଜନ୍ମା ସ୍ୱେ ଶୋଭା ଶରୀର
ଅଛୁ ଚିନ୍ତାମଣି ବ୍ରଜେଶ୍ୱରର ॥ ୨୫ ।

ଅନୁଗ୍ରହଂ[1] କଲେ ହେବ କୁଶଳ
ଆକାଂକ୍ଷା ଜଟିଳା ପ୍ରୀତି ପେଶଳ ॥ ୨୬ ॥

ଆବାଲ୍ୟ ପ୍ରୀତି ସୁଭଦ୍ରା ରମଣୀ
ଆସିବେ ପେଷିଲେ ନାଗ ଗ୍ରାମଣୀ ॥ ୨୭ ॥

ଅନ୍ତେ ଯଶୋଦାର ଚୁମ୍ବେ ହରଷ
ଆଣି ନମନ୍ତ୍ରଣ ବଧୂ ସରସ ॥ ୨୮ ॥

ଅଶ୍ରାନ୍ତ କହି ପେଷି କୁନ୍ଦଲତା
ଆସି ବୃନ୍ଦା ଭେଟି କହେ ବାରତା ॥ ୨୯ ॥

ଅସନମତ ବୃନ୍ଦା ଶୁଣି ଭଣି
ଅନ୍ତ ମଧ୍ୟେ ବଧୂ ପୂଜେ ଦ୍ୟୁମଣି ॥ ୩୦ ॥

ଅବଧ ହେଲେ ଆପୁ ଲକ୍ଷ୍ମୀ କାନ୍ତି
ଆଳାପ ନାନ୍ଦୀମୁଖୀ ବନ୍ଧୁମତି ॥ ୩୧ ॥

---

୧ । (କ) ଅନୁଗ୍ରହ

ଅବଜ୍ଞା କଲେ ବରଣକୁ ଦୋଷ
ଆସି ମୁଖରୁ କହେ ଯେତ୍ବ ଭାଷ ।। ୩୨ ।।

ଆଦ୍ୟେ ଗନ୍ଧ ପଚ୍ଛେ ରବ ଅର୍ଚ୍ଚନ
ଅଙ୍ଗୀକାର କଲ ବୃନ୍ଦା ବଚନ ।। ୩୩ ।।

ଆନେକ କୁନ୍ଦଲତାରେ ପଶୁର
ଅବଳା ବଧୂ ବଧୂନୁଦ ହର ।। ୩୪ ।।

ଆସିବ ମାତ୍ର ତାହାକୁ ବଞ୍ଚାଇ
ଅଭ୍ୟାଖ୍ୟାନ କୁନ୍ଦଲତା ବୋଲଇ ।। ୩୫ ।।

ଅଭିସଂସନ କହିଲେ ସାଧୂରେ
ଆପଦ ପଦ ପଦକେ ନ ଦୂରେ ।। ୩୬ ।।

ଅପଦେଶ ନାହିଁ ଆମ୍ଭର ସଙ୍ଗ
ଅଛୁ କ ତା ଘର ବଧୂ ପ୍ରସଙ୍ଗ ।। ୩୮ ।।

ଆଦେଶ ଜଣ୍ଟ ଦେଲ ରାଧାଙ୍କୁ
ଆହୃତ ବ୍ରଜ ଈଶ୍ୱର ରନ୍ଧାକୁ ।। ୩୮ ।।

ଅଳସ୍ୟ ତାଙ୍କ ଆମ୍ଭ ନୋହେ ଭଲ
ଆସିବ ଯାମ କେ ସାରି ରନ୍ଧନ ।। ୩୯ ।।

ଅନ୍ତେ ହରଷ ବାହାରେ ବାମତା
ଆଗତ ଗତକୁ ନୋହେ ମମତା ।। ୪୦ ।।

ଅତି ବୃଦ୍ଧା ବୋଧୁଁ ହୋଇ ସଂଭ୍ରମ
ଆକଳ୍ପ କଳ୍ପନା ଜାତ ବିଭ୍ରମ ।। ୪୧ ।।

ଆଭରଣ ବିପର୍ଯ୍ୟସ୍ତକୁ ଗୃହିଁ
ଆଳ ପିତ ମୁଖେ ଚନ୍ଦ୍ରାଇ କହି ।। ୪୨ ।।

ଅଳ୍ପ ହସ ଲଭ ପଥଗୃହିଣୀ
ଆଳି ମେଳେ ଗର୍ଭାଳସି କରଣୀ ।। ୪୩ ।।

ଆସି ଯଶୋଦାର ପଦ ବନ୍ଦନ
ଅଭିନବ ବଧୂଙ୍କ ଆଗମନ ।। ୪୪ ।।

ଆଘ୍ରାଣ ଶିର ହରଷ ବଦନେ
ଅଣି ପ୍ରବେଶିଲେ ପାକ ସଦନେ ।। ୪୫ ।।

ଅଛନ୍ତି ଭୁଲା ରୋହିଣୀ ଆଦରେ
ଆଳଚପୁ ସର୍ବ ନପୋଜ୍ୟ କରେ ।। ୪୬ ।।

ଅନ୍ନ ମେଞ୍ଜନ[1] ପିଷ୍ଟକ ଯେ ଦଧି
ଅନେକ ପ୍ରେକ ଯାମେ ହୋଯ୍ୟେ ସିଦ୍ଧି ।। ୪୭ ।।

ଅଚ୍ୟୁତ ଗୋ ଦୋହନ ଅନ୍ତେ ବକେ
ଆସି ଭକ୍ତ୍ୟ ସ୍ନାନ ଦଧି ସରଜେ ।। ୪୮ ।।

ଆଭରଣ ଦ୍ୱାଦଶରେ ରଞ୍ଜିତ
ଅଙ୍ଗ ସୁରେଶ ମାଳ ମାଳଜିତ ।। ୪୯ ।।

ଅମ୍ବର ପୀତ ମଣି କଉସ୍ତୁଭ
ଅନ୍ବୁଭୁକ ପିଛ ଚୂଡ଼ା ସୁଶୋଭ ।। ୫୦ ।।

ଅଟେ ବୈଜୟନ୍ତୀ ମାଳା ରୁଚିର
ଆଲମ୍ବ ବନମାଳା ଗୁଞ୍ଜା ହାର ।। ୫୧ ।।

ଆକୃତି ମକର କୁଣ୍ଡଳ ଶ୍ରୁତି
ଅମୂଲ୍ୟ ଗଜମୋତି ନାକେ ଦ୍ୟୁତି ।। ୫୨ ।।

ଅନଘଟ ରତ୍ନ କଙ୍କଣ କରେ
ଅମଣ୍ଡନ କ୍ଷୁଦ୍ର ଘଣ୍ଟି କଟୀରେ ।। ୫୩ ।।

ଅଙ୍ଘ୍ରି ନୂପୁର ରବ ପୂରେ ପଥ[2]
ଅଟନ୍ତି ମନମଥର ମନ୍ମଥ ।। ୫୪ ।।

ଅଶନ ସ୍ଥାନେ ଆସି ପରବେଶ
ଆଳସମେ ଗୋପସ୍ମିତ ବଶେଷ ।। ୫୫ ।।

---

୧ । (କ) ଅଣ୍ଣ ମେଞ୍ଜନ = ଅନ୍ନ ବ୍ୟଞ୍ଜନ

୨ । 'କ' ପୋଥିରେ 'ପଥ' ନାହିଁ ।

ଆଣି ସମସ୍ତ ରୋହିଣୀ ପରଷେ
ଆପେ ରାଧା ପାଶେ ଭରେ ଧରଷେ ॥ ୫୬ ॥

ଅନାନ୍ତ ଗବାକ୍ଷ ଜାଳ ରନ୍ଧ୍ରରେ
ଅଗ୍ରେ ଜନନୀ ଚନ୍ଦ୍ରାନ୍ତ ଶ୍ରଦ୍ଧାରେ ॥ ୫୭ ॥

ଅଚ୍ଛ ମୀନ ମୀନକେତନ ଜାଲେ
ଆବଦ୍ଧ ହୋଇ ଭ୍ରମେ କ ଚଞ୍ଚଳେ ॥ ୫୮ ॥

ଅଚ୍ୟୁତ ଲାବଣ୍ୟ ସାର ଆଲୋକି
ଅନ୍ତ ଲୋକ ସ୍ୱେ ତେଜଇବ ଚମକି ॥ ୫୯ ॥

ଅନ୍ତ ନେଇ ଗୋବର୍ଦ୍ଧନର ସରସେ
ଅରବିନ୍ଦ ମୁଖ ସୁନ୍ଦରେ ରସେ ॥ ୬୦ ॥

ଅଣିମାଦ୍ୟ ସୁଖ ନେଟେ କେବଳ
ଆଚମନ ଅନ୍ତେ ଭୁଞ୍ଜି ତାମ୍ବୁଳ ॥ ୬୧ ॥

ଅବଶେଷ ପାତ୍ରେ ଧନଷ୍ଠା ନେଇ
ଅନ୍ତ ଗୁପତେ ପ୍ରିୟାକୁ ଭୁଞ୍ଜାଇ ॥ ୬୨ ॥

ଆଦରେ ଯଶୋଦା ରାଧିକା ଆଣି
ଆରତ୍ରି ନେଟେ କହୁ ପ୍ରୀତି ବାଣୀ ॥ ୬୩ ॥

ଆଭରଣ ବାସ କଲେ ପ୍ରଦତ୍ତ
ଆତ୍ମଜ ବଦନକୁ ଯା ସଂଚରତ[୧] ॥ ୬୪ ॥

ଆଳି ଅନୁରୂପେ ଭୂଷଣ ବାସ
ନେଇ ଦେଇ କହୁ ପ୍ରୀତି ଭାଷ ॥ ୬୫ ॥

ଆନନ୍ଦେ ରାଧା ପ୍ରବେଶ ସ୍ୱବାସେ
ଅତି ବୃନ୍ଦା କୁନ୍ଦଲତା ପ୍ରଶଂସେ ॥ ୬୬ ॥

ଅବଧି ନ ବର୍ତ୍ତି କଲୁ ପ୍ରବେଶ
ଆଜଠାରୁ ତୋତେ ମୋର ବିଶ୍ୱାସ ॥ ୬୭ ॥

---

୧ । (କ) ସଂକେତ

ଆଭରଣ ବାସ ଦେଖି ମୋ ହାତ
ଅକ ଦୂଜା ଅଥେଁ ବଧୂ ପ୍ରେରିତ ॥ ୬୮ ॥

ଅଚ୍ୟୁତ ଗୋ ଚାରଣ କରେ ବନ
ଅହ ଶେଷରେ ବ୍ରଜେ ଆଗମନ ॥ ୬୯ ॥

ଆଶ୍ରେ ପ୍ରଲମ୍ବ ଉରେ ନଗାରେ
ଆଲସ୍ୟେ ରହେ ଖେଦ ମମାକ୍ଷାରେ ॥ ୭୦ ॥

ଅଚ୍ୟୁତ ଥାଉ ନ ଗଲ୍ଲଏ ଭସ୍ମ
ଅନ୍ତେ ପାଞ୍ଚଲେ ଶୁଣି ତାର ଛସ୍ମ ॥ ୭୧ ॥

ଅନ୍ତରେ ବଜଏ ଘଣ୍ଟି ର ବନ
ଅଧୀଶସେତ୍ କୃଷ୍ଣ ଦରଶନ ॥ ୭୨ ॥

ଅର୍ଜୁନ ପକ୍ଷ ଦ୍ୱିତୀୟା ପୌର୍ଣ୍ଣମୀ
ଅମୃତାଂଶୁ ଲକ୍ଷ ମନେ ଜନମି ॥ ୭୩ ॥

ଅଚ୍ୟୁତର ଶୁଣି ମୁରଲୀ ସ୍ୱନ
ଆସିଲେ ତେଜଣ ନିଜ ଜୀବନ[୧] ॥ ୭୪ ॥

ଅପଦ୍ଭୁତ ହେଲା ଘରରେ ଭ୍ରମ
ଆସିଲେ ମଧୁବନ ତେଜି ଗ୍ରାମ ॥ ୭୫ ॥

ଅର୍ଜୁନ ଆସନ୍ନେ ଅମା ସେ ବନ
ଅଂଶୁକ ବନାରେ ଡଗ ବସନ[୨] ॥ ୭୬ ॥

ଅରଣ୍ୟେ ଗମା ତେଜଲ୍ଲ କଙ୍କିଣୀ
ଆପଣ ତମାଳ ସୁଦାମେ ପୁଣି ॥ ୭୭ ॥

ଆଗତ ଉଜ୍ଜ୍ୱଳନ୍ତୁ ଅନୁମାନ
ଅତି ଜରତ ହେଲା ସେ କାନନ ॥ ୭୮ ॥

---

୧ । (ଗ) ଅଧିଶନ୍ତୋ।

୨ । (ଗ) ବନ

୩ । 'କ' ପୋଥିରେ ଏହି ପଦଟି ନାହିଁ ।

ଅଟବ ସୁରଭି ବୃଷଭ ତେଜେ
ଅରଣ୍ୟ ରଥ ବେଂଶି କଳ ରଙ୍ଗେ ॥ ୭୯ ॥

ଅନ୍ତର ଯେଣୁ ସେ ବନ୍ଧୁଅ ପରେ
ଅନୁହ୍ୱନ ଦେବ ପ୍ରଷ୍ଠ ପୃଷ୍ଠରେ ॥ ୮୦ ॥

ଅରଣ୍ୟ ନ ତେଜିଲା ମହାବଳ
ଅସ୍ତ୍ରପ ତା ରୂପ ହେଲା ଚପଳ ॥ ୮୧ ॥

ଆରମ୍ଭିଲେ ଖେଳ ହୋଇ ଯୁଗଳ
ଅବଶ୍ୟ ହାରିଲେ ବନ୍ଧବ ଗଳ ॥ ୮୨ ॥

ଅବଧି ଭଣ୍ଡୀର ବଟ ପର୍ଯ୍ୟନ୍ତେ
ଆସନ୍ତି କନ୍ଧେ ବହି ହୋଡ଼ମତେ ॥ ୮୩ ॥

ଅଚ୍ୟୁତ ହାରି ବହିଲେ ସୁଦାମ
ଅସୁର କନ୍ଧରେ ବହିଲା ରାମ ॥ ୮୪ ॥

ଅନ୍ତେ ଚଳାକରେ ସୁ ମହାବଳ
ଆଜ କଂସକୁ ଦେବ ପ୍ରେତ ବଳ ॥ ୮୫ ॥

ଅନ୍ତରମି ଗଲା ଭଣ୍ଡୀର ବଟ
ଆକାଶ ରୂପ ଧଇଲା ବିକଟ ॥ ୮୬ ॥

ଅଚ୍ୟୁତ ଡାକିଲେ ଅସୁର ମାର
ଆପଣ ଶୁଣି ହେଲେ ମେରୁ ଭାର ॥ ୮୭ ॥

ଅନନ୍ତ ମହିମା ଯେଉଁ ଅନନ୍ତ
ଅନନ୍ତରେ କଲେ ଦନୁଜ ଅନ୍ତ ॥ ୮୮ ॥

ଆଣ୍ଠୁ ମୁଷ୍ଟିରେ ବମନ ରୁଧିର
ଅବନୀ ପାତ ହୋଇ ଭଗ୍ନ ଶିର ॥ ୮୯ ॥

ଆକାଶେ ସ୍ଫୁରଇ ଦୁନ୍ଦୁଭି ସ୍ୱନ
ଅମରେ ବରଷା କଲେ ସୁମନ ॥ ୯୦ ॥

ଆନନ୍ଦେ ବ୍ରଜକୁମାରେ ଗ୍ରାମରେ
ଆଲିଙ୍ଗନ କଲେ ଅତି ପ୍ରେମରେ ॥ ୯୧ ॥

ଉକ୍ତ ସେଷେ ବ୍ରଜେ ବେଂଶୀ ନାଦିତ
ଆକର୍ଣ୍ଣିତେ ଗୋପାଙ୍ଗନା ମୋଦିତ ॥ ୯୨ ॥

ଆଳସ୍ୟ ତେଜି କେ ପୁର ପ୍ରାସାଦ
ଆବେଷ୍ଟି ନାଶେ ବିଚ୍ଛେଦ ବିଷାଦ ॥ ୯୩ ॥

ଅକ୍ଷି ପକ୍ଷୀର ଚିର ତୃଷା ନାଶ
ଅଧିକ ପାନେ ଲାବଣ୍ୟ ପୀୟୂଷ ॥ ୯୪ ॥

ଅଞ୍ଜନ ରଞ୍ଜନ ଖଞ୍ଜନ ଦୃଶେ
ଅଞ୍ଚଳରେ ରାଧା ଦେଖନ୍ତି ତୋଷେ ॥ ୯୫ ॥

ଅନୁପ ପ୍ରଲମ୍ବ ନିହତ ଶୁଣି
ଅଦ୍ଭୁତ ଶୁଣିଲେ ଗୋପାଳ ଶ୍ରେଣୀ ॥ ୯୬ ॥

ଅଶ୍ରୁ ନେତ୍ର ମାତ ସ୍ରବିତ ସ୍ତନ
ଆନନ୍ଦେ କୃତ ନନ୍ଦନ ପାଳନ ॥ ୯୭ ॥

ଆସ୍ୱାଦ ପଦାରବିନ୍ଦ ଆସବ
ଅତି ମତ୍ତ ଶ୍ୟାମସୁନ୍ଦର ଦେବ ॥ ୯୮ ॥

— ଦ୍ୱିତୀୟ କୁସୁମ —

# ଆଠ ପୋଇ

॥ ନ ପୋଇ ବାଣୀରେ ॥

( ଏକ )

ଶ୍ଳୋକ—

ଆସି କୃଷ୍ଣ ବିଜେ ବନେ ରାଧା ରୂପ ଧ୍ୟାନେ
            ରାଧାକୁଣ୍ଡ କୂଳେ ପ୍ରେକ୍ଷା ରଙ୍ଗ
ଅଟେ ହଂସାବଳି ବାସ ସୁଷମା ବିଶେଷ
            ପଦ୍ମାବଳି ଓଢଣୀରେ ଶୋଭା ॥ ୧ ॥

ଅତି ପୂର୍ଣ୍ଣ ଘନ ରସେ ପୁଣ୍ଡରୀକ ଆସ୍ୟେ
            ହସି ଗୃହେଁ ଇନ୍ଦୀବର ନେତ୍ରେ
ଆସେ ସେ କାଳେ ଶ୍ରୀମତୀ କୃଷ୍ଣ ପ୍ରେମେ ମତ୍ତ
            ସଜନୀ ପୁଞ୍ଜରେ ଗୁରୁ ଗାତ୍ରେ ॥ ୨ ॥

ଅନ୍ତେ ଆନନ୍ଦ ଗୋବିନ୍ଦ ମୁଖ ଅରବିନ୍ଦ
            ମଧୁ ଦେଖି ଲୋଭ ମଧୁ ପାଳି
ଆଲିଙ୍ଗନ ସ୍ନେହେ କରୁ ଦୁଃଖିଲେ ବିମୋହି
            ଓଗାଳି ବୋଲନ୍ତି ଆଳି ଆଳି ॥ ୩ ॥

ଶ୍ଳୋକ—

ଆମ୍ଭ ସଜନୀ ପ୍ରତିପ ଦରଶନୀ ରୂପ
            ଅଧର ଅରୁଣ ବିରାଜିତ
ଆସି ତମ ସ୍ୱରୂପରେ ତ୍ରାସ ତତପରେ
            ନେବ ଶର ଫିଟି ସେ ଅଜିତ ॥ ୪ ॥

ଆଜ ଗ୍ରହଣକୁ ଅବକାଶ ନାହିଁ ଲବ
ପ୍ରେକ ରାଶି ଯୋଗ ହେଲା ଭଙ୍ଗ
ଆନ କେ ବୋଲେ ଅବଳା ଧରଷଣେ ବଳା-
ନୁଜ ହୋଇବାରୁ ବଳେ ଭୃଙ୍ଗ ।୫।

ଅଭିମନ୍ୟୁ ମାତା ଯେଣୁ ଅଭିମନ୍ୟୁ ତେଣୁ
ନରକତ ଭୂମିରେ ଜନମ,ଇଁ
ଆଖ୍ୟା ଭୂଷିତ ଦୁଃଖିଲେ ପଡ଼ିଲେ କ୍ଲେଶଳେ
ଆସି ପାରିବ କ ଭଲ ହୋଇ ।୬।

ଆଳି ବଚନେ କାତର ହୋଇ ତରତର
ତୃଷିତ ଅଧରାମୃତ ଧାପ୍ତି
ଅତି ଅନଙ୍ଗ ବିକାର ଘୋର ଅନ୍ଧକାର
ଘୋଟିବାରୁ କିଛି ନ ଦିଶଇ ।୭।।

ଆମ୍ରେଶ୍ୱର ଆତୁରକୁ ବର୍ଦ୍ଧନ ହେତୁକୁ
ଚମ୍ପକ ମୂଳ କୁଞ୍ଜିମେ ରହେ
ଅନ୍ୱେଷଣା କଲେ ହରି ଡାକ ଜାତବେଶ୍ୱସା
ଶ୍ରୀ ଶ୍ୟାମସୁନ୍ଦର ଦେବ କହେ ।୮।

—ଗୀତ—

( ରାଗ—ବରାଡ଼ି )

।। ଆଷାଢ଼ ଶୁକ୍ଳ ବାଣୀରେ ।।

ଅଙ୍କ ଚରଣର ମଧ୍ୟ ଦେଶରେ
ଅବଲୋକ ସଂଖ୍ୟା ଊନବିଂଶରେ
ଅଚ୍ୟୁତ ସେବ୍ୟ ମାଗ ଅନୁସରେ
ଆତୁର ହୋଇ ଚୁମ୍ବ ଆଶ୍ଳେଷରେ
ଅଙ୍କ ଅଙ୍କୁଶରେ,
ଅଚ୍ଛିନ୍ନ ପୂନ ଗୁଣ ବିଶେଷରେ ।। ୧ ।।

ଶ୍ଳୋକ—

ଛତ୍ରାରିଧ୍ୱଜପୁଷ୍ପବଲ୍ଲୀବଳୟପ୍ରାନ୍ ପଦ୍ମୋର୍ଦ୍ଧ୍ୱରେଖାଙ୍କୁଶାନ-
ଅର୍ଦ୍ଧେନ୍ଦୁଂ ଚ ଯବଂ ଚ ବାମମନୁଜାଂ ଶକ୍ତିଂ ଗଦାଂ ସ୍ୟନ୍ଦନମ୍ ।
ବେଦୀକୁଣ୍ଡଳମତ୍ସ୍ୟପର୍ବତଦରାନ୍ ଧତ୍ତେଽନୁସବ୍ୟଂ ପଦଂ-
ତାଂ ରାଧାଂ ଚିରଷୋଡଶାଙ୍କମହାଲକ୍ଷ୍ମ୍ୟାର୍ଚ୍ଚିତାଙ୍ଘ୍ରିଂ ଭଜେ ॥୧॥

ଅନନ୍ତ ଅଚ୍ୟୁତ ପ୍ରଭୁଆଶାରେ
ଅଙ୍ଗନା ଆଲୋକ ପ୍ରଭୁ ଆଶାରେ
ଅନିରୁଦ୍ଧ ଗନ୍ଧ ପାଇ ଯୋଷାରେ*
ଅଳି ବେଷ୍ଟିତ ଚମ୍ପକ ପ୍ରସାରେ
ଅଙ୍କୁରିତ ରସାରେ,
ଆଲୋକ ଗତ ହୃଷ୍ଟ ମନସାରେ ॥ ୨ ॥

---

( ଦୁଇ )

ଆଗମନରେ ପ୍ରପୁଷ୍କର ଯଥା ବଶ
ମାରକତ ଦ୍ୟୋତେ ସୁଧା ଭଶ
ଅଷ୍ଟ ପ୍ରେଠାରେ ରମଣୀ ଜାଣି ପୁଂସମଣି
ଗଢ଼ିର ବଶଇ ବନ ଶିଖ★ ॥ ୧ ॥

ଆଣୁ ଧରଣ କାହଁଲ ସେ ବନ୍ଧୁ ପାଟଲ
ଅଧର ଉଚ ହାସରେ ବଶ
ଆସ୍ୟ ପ୍ରେଣିକ ଚେଣିକ ପ୍ରେଣାଙ୍କ ଆଣିକ
କଣି ଦେଉଥିଲ ସୁଧା ରସ ॥ ୨ ॥

---

* (କ) ଅନିରୁଦ୍ଧ ଗନ୍ଧ ପାଇ ଯୋଷାରେ
ଅଙ୍ଗନା ଆଲୋକ ସ୍ମୃତ ଆଶାରେ । (ପୋଥିପାଠ)

★ ବନସ୍ଥିତ (ପୋଥିପାଠ)

ଆପେ ପାଣିକ ଛଡ଼ାଇ ଲୋଡ଼ନ୍ତେ ଜମାଇ
ଅଶ୍ରୁର ଯୋଗେ କି ହେମ ବଲ୍ଲୀ
ଅଗୋଚର କି ଭ୍ରମରେ ଅମ୍ବୁଜ ଅମ୍ବରେ
ଗୋପ୍ୟ ହୋଇଥିଲେ କୃଷ୍ଣ ବୋଲ ॥ ୩ ॥

ଅଳ୍ପ ତପି ଗ୍ରାମା କନ୍ଧ ଭୂମ୍ନ ରୂପ ସେହୁ
ତାଙ୍କ ସ୍ୱଭାବକୁ ତୁମ୍ଭେ ଧର
ଅଛୁ ମିଶ୍ରିତା ସ୍ୱେ ଚନ୍ଦନ ତବ ସୁଖଦାମା
ଚାହାଁଇଂ ଦେଲେ ମୋ ଲୁଚିବାର ॥ ୪ ॥

ଅନ ଦକ୍ଷିଣ ନାୟକ ସୁମନ ସାୟକ
ଗୁଣବନ୍ତ ଯାହା ଯୋଗ୍ୟଂ ଦେଖି
ଆସ୍ୱାଦିତ ସବ ମଧୁକର ତନ୍ତ୍ରେ ସାଧୁ
ରସାଳ କାଳ ବନା କି ସୁଖ ॥ ୫ ॥

ଅଧୋକ୍ଷଜ ବାଣୀ ଶୁଣି ପ୍ରିୟା ପ୍ରତିବାଣୀ
ରସାଳାଦ ପ୍ରେମ ନ ସୁମରେ
ଅତ ବରଷାରେ ପ୍ରୀତି ବଢ଼ାଇ ମାଳତି
ଗଣିକା ସଙ୍ଗରେ ଯେ ବହଇ ॥ ୬ ॥

ଅଟେ ଧନ୍ୟ ଜୀବଂଜୀବ ସୁଧାପାନେ ଜୀବ
ତୋଷଇ କେମନ୍ତ ଦୃଢ଼ ବ୍ରତ
ଅନ୍ୟେ କରଇ ଆହାର ପ୍ରୀତି ଯେ ଯାହାର
କୃଷ୍ଣ ବୋଲେ ହେଜ ସେହୁ ମତ ॥ ୭ ॥

ଆସି ଭକ୍ତି ସ୍ୱେଚ୍ଛାପର ପରସ୍ତରେ ପର-
ରମ୍ଭ କଲେ କୃଷ୍ଣ କାମ ବଶେ
ଅନ ବଳତ କେତକୀ ଚୁମ୍ବଇ ଜଡ଼ କି
ଶ୍ରୀ ଶ୍ୟାମସୁନ୍ଦର ଦେବ ଭାଷେ ॥ ୮ ॥

— ଗୀତ —

( ଆଷାଢ ଶୁକ୍ଳ ବାଣୀ )

ଅଷ୍ଟସଖୀ ବୃନ୍ଦା ମଞ୍ଜରୀ ବାର
ଅନ୍ୟୋନ୍ୟ ଉପମାରେ ଛଳବାର
ଆଳସ୍ଯ କି ନ କର ରଣ ରଣ
ଆଖଣ୍ଡଳ ପାଳ କି ଆଭରଣ
ଅସିତ ଚମ୍ପକ,
ଆଶ୍ଳେଷ କୁସୁମିତ କୁଚ ମାଳ ॥ ୧ ॥
ଅର୍କଜା ଶୋଭନ ପଦ୍ମ ପରାଗେ
ଆସ୍ୟ ବିଧୁ ସାଧୁ କି ଉପରାଗେ
ତାଙ୍କୁ ପାଇ ଶୋଭା ଅସାଧାରଣ
ଆମ୍ଭ ସଖୀ କୁଚର ସାଧାରଣ
ଅଚ୍ୟୁତେ ମଣ୍ଡନ,
ଅମୃତ ଆଦି ଲଭ ଏକଥନ ॥ ୨ ॥

---

( ଚଉପଦୀ )

ଅଳି କେ ବୋଲଇ ଆମ୍ଭ ପ୍ରାଣସଖୀ ଅମ୍ଭ-
ରୁହ ନେତ୍ରୀ ଅତି ତାର ଶୋଭା
ଆଖ୍ୟା କୃଷ୍ଣ ବୃନ୍ଦାବନ ଚନ୍ଦ୍ର ଶୋଭାବନ
ନ ଦେଖନ୍ତି ଯୋଗେ ଲଭି ଲୋଭା ॥ ୧ ॥
ଆପେ ରାଧା ହୋଇ ସ୍ୱାନ୍ତ ତାରେ ତନୁ ଗାତ
ପ୍ରେମ ଆରବ୍ଧା ଅନଙ୍ଗ ବସୁ
ଅଭିଷେକ ଯୋଗେ ବ୍ରଜେ ପୂର୍ବ ଉତ୍ତରେ ଯେ
ପ୍ରୀତିଦା ତହାଙ୍କୀ ଶୋଭା ବସୁ ॥ ୨ ॥

ଅଟେ ଦନ୍ତରେ ମଞ୍ଜୁଳ ରାବ ଭବ ମୂଳ
ଅଛୁ ଭ୍ରୂରୁ ଶୋଭାରଣି ପୂଛ
ଆନ ବୋଲେ ଦର-ଡାଳ ବୋଲ୍ଛରେ ଟୁଳ
ମନସିଜ କଳାରମ୍ଭ ବ୍ରାତ ॥ ୩ ॥

ଆଣ୍ଣ ଭୁଜର ବନ୍ଧନ ଫିଟାଇବା ମନ
ପ୍ରିୟା ଗୁଞ୍ଜ ରୂପ ପରକଟ
ଅନ୍ତେ ପୃଷ୍ଠ ଅନୁରାଗ ମୁଖେ ତମ ଯୋଗ
ଛୁଡ଼ ବୋଲୁ କୃଷ୍ଣ ମାଗେ ଘଟ ॥ ୪ ॥

ଅଟୁ କାମନଶୀ ତଣ ସୁବର୍ଣ୍ଣକୁ ଭରି
ଅଛୁ ମୋତି ମାଳ ପ୍ରବାଳକୁ
ଆନ ଲେଉଡ଼ା ନାହିଁ ଘଟ ବେନ ଦଅ ଘଟ
ପାଣିସ୍ଥିତ ଭୃଷ୍ଣା ପ୍ରବଳକୁ ॥ ୫ ॥

ଆସି ଲଳିତା ବଦନ୍ତି ଛୁଡ଼ କୁନ୍ଦଦନ୍ତୀ
ସୂର୍ଯ୍ୟପୂଜା ଅନ୍ତେ ନେମ ଘଟ
ଆଜ କାମ ଘଟୁଆଳ ହେଲ ଯେବେ ମୁଜ
ମୂଲ୍ୟ କରି ଦ୍ରବ୍ୟ କରି ଲଟ ॥ ୬ ॥

ଆଲିଙ୍ଗନ ତେଜ ହରି ଉଭା ହେଲେ ହସି
ଜାତ ଉରଜ କୁଙ୍କୁମାଙ୍କିତ
ଅଙ୍ଗ ଅଙ୍ଗଦ ବଳୟ ଚିହ୍ନକୁ ବଳୟୁଁ
ଦୃଶୀ କଙ୍କଣ ଚିହ୍ନରେ ଯୁତ ॥ ୭ ॥

ଅନାଅନ ପରସ୍ପରେ ହାସ ଆନନରେ
କୃଷ୍ଣ ଉଗାଳିଲେ ଅଗ୍ରେ ରହି
ଆସ୍ତୁ ଅବଧିକ କରି ଗଲେ ବର ନାରୀ
ଶ୍ରୀ ଶ୍ୟାମସୁନ୍ଦର ଦେବ କହି ॥ ୮ ॥

—ଗୀତ—

ଅଚ୍ୟୁତ ରଙ୍ଗ ସଙ୍କେତ କୁଞ୍ଜରେ
ଆଗେଣ୍ଟ ଆଶା ବଢ଼ତ କୁଞ୍ଜରେ
ଆଗତ ନ ହୋଇ ଆମ୍ର କଞ୍ଜରେ
ଆସି ଆଶୁଗ ଭେଦଇ ଖଞ୍ଜରେ
ଅନଳ ପୁଞ୍ଜରେ,
ଆସନ ତାପ ପଲ୍ଲବ ଶେଯରେ ।୧।
ଆଜ କ ଭେଟିବ ଚମ୍ପା ଗୋରକ
ଆଲିଙ୍ଗନେ ଲଭିଅଛୁ ହରିକ
ଆଳ ପୁରେ ନେଲେ ସହଚରିକ
ଆଜ ଅହ ଦଣ୍ଡ କଣ୍ଠପାର କ
ଆସେ କଣୋଷ୍ଣ କ
ଅନ୍ତି ମନେ ବଜ୍ର କୁଚ ଗିରକ ।୨।

---

( ଗୃହ )

ଅତ ଆତୁର ବର୍ଦ୍ଧନ ପ୍ରେମରେ ବନ୍ଧନ
ସସଂଭ୍ରମେ ଭ୍ରମେ ବୃନ୍ଦାବନ
ଆହା ରମଣୀଙ୍କ ମଣି ମୁଖ ନଗାମଣି
ଦେଖା ବାରେ ହୋଇ ପରସନ୍ନ ।୧।
ଆସି ପ୍ରେକ୍ଷ କାଳେ ଚନ୍ଦ୍ରାବଳୀ ଆଳ ଚନ୍ଦ୍ରା
କୃଷ୍ଣ ଭେଟି ବାଟେ କହେ ବାଣୀ
ଆମ୍ଭ ସଜନୀର କାମ ବ୍ୟାଧି ଯେ ନବମ
ଗୋପ ବୈଦ୍ୟ ସାଧ୍ୟ କହ ବାଣୀ ।୨।
ଅପେ ନାୟକ ସେ ଧୀର ପ୍ରଶାନ୍ତ ବେଭାର
ବୋଲେ ସାଧ୍ୟ ଜଣା ଅଛୁ ପୂର୍ବେ

ଆତ୍ମ ବେଦନା ଜଣାଇଁ ଆଣିବ ମଣାଇଁ
ଭେଟିବୁଁ ଗଉରୀ ଘଟେ ଯେବେ ।। ୩ ।।

ଆଳି ସଙ୍ଗେ ଚେଣେ ରାଧା କାମ ଶରେ ବାଧା
କୃଷ୍ଣ ବଚ୍ଛେଦରେ ଫୁଲ ତୋଳି
ଅଙ୍କ ଅବଶେ ପୂରଇ ଗମନେ ଝୁରଇ
କାନ୍ତ ଥିବା ବାଟେ ନେଇ ଡାଳ ।। ୪ ।।

ଅତ୍ୟନ୍ତ ଅଙ୍ଗୁଳରେ ଉଭା ବଙ୍କ ଗ୍ରୀବ ଶୋଭା
ମୁଖ ଟେକ ଦେଖେ ସେହି ବାଟେ
ଅଚ୍ଛ ଉତ୍ତରେ କୁସୁମ କହ୍ୱ ଅଧେ ଭ୍ରମ
ଚଡ଼ି ନେଇଁ ନରୂପର ବେଗେ ।। ୫ ।।

ଅକ୍ଷି କୁସୁମ ପଡ଼ଇ ମୂଳରେ ଲେଉଟଇ
ଫୁଲ ଭାବ ତୋଳେ ପଲ୍ଲାସକୁ
ଅଶ୍ରୁ ପୋଛେ ପୁଷ୍ପ ରଜ ପଡ଼ିବାର ବ୍ୟାଜ,
ଉର କମ୍ପେ ଚେଜ ଉଲ୍ଲାସକୁ ।। ୬ ।।

ଅସମ୍ଭାଳ ହୋଇ ଲୁଚି ସଜନୀଙ୍କ ବଞ୍ଚି
ସଂକେତ କୁଞ୍ଜକୁ କଲେ ଗତି
ଆତ୍ମେଶ୍ୱରକୁ ନ ଦେଖି ପଦ୍ମମୁଖ ଶୁଖି
ଲୁଳିତ ମନ୍ଦାର ଓଷ୍ଠ ଭାତି ।। ୭ ।।

ଅଧୋକ୍ଷଜ ପାଦ ଧୂଳି ଉରଜରେ ବୋଳି
କୃଷ୍ଣରୁ ଶଉ ବଲ୍ଲବ ଶେଯ
ଆଲିଙ୍ଗନ କରି ଶୋଇ ବିରହ କହଇ
ଶ୍ରୀ ଶ୍ୟାମସୁନ୍ଦର ଦେବରାଜ ।। ୮ ।।

—ଗୀତ—

ଅତି ଗୁରୁ ପୟୋଧରୀ ଅନ୍ତରେ
ଅଚ୍ୟୁତ ତୁମେ ଧରି ନିରନ୍ତରେ

ଆଲୋକ ଶାରକା ଶୁକ କାକୁରେ
ଆଳାପ ଦେଖିଛ ବନ ଭିତରେ
ଅଙ୍ଗନା ବ୍ରାତରେ,
ଅଭିହାର କେ ଚତୁର ଚରଚରେ ॥ ୧ ॥

ଅଗ୍ରେ ବସି କୀର କହେ ସରସେ
ଅଭ୍ୟାଖ୍ୟାନ କହ ନାଗରି ସାରସେ
ଅଛ ଲୋଲ ବନ୍ଧ ନେଇ ସାରସେ
ଅଧିକ କେ ତୁମ୍ଭଠାରୁଁ ସେ ରସେ
ଆଲୋକ ହରଷେ,
ଅଳ୍ପଦୂରେ ଚତୁର ଚାପ ହର ସେ ॥ ୨ ॥

---

( ପାଞ୍ଚ )

ଅତି ଆନନ୍ଦିତ ମତି କୃଷ୍ଣ ମନେ ଚିନ୍ତି
ଚପଳେ କରିବ ଆଲିଙ୍ଗନ
ଅଣିମାଦି ସୁଖମାନ ହେବ କି ସମାନ
ଚୁମ୍ବନ ଗୋଟିକ ଲଭି ଦାନ ॥ ୧ ॥

ଆସ୍ୟ କମ୍ପାଇବ ପରା ସେ ଲଜ୍ଜା ଆତୁରା
ପୃଷ୍ଠପର ପଲ୍ଲବରେ ଛପି
ଅବଲମ୍ବେ ଦେବ କୋଳ କହିବ ଆକୁଳ
ମଦନ ସଙ୍କଟେ ଗଲି ଭାସି ॥ ୨ ॥

ଆସି ଦେଖି ଅଳିଚୟ କୁସୁମ ସଞ୍ଚୟ
ହରିଣାକ୍ଷୀ ହେଲା ଦୁଃଖୀ ହରି
ଅଟେ ସର୍ବ ଶୋଭାକର ଯଥା ପଦ୍ମାକର
ଜୀବନ ହେଲା ଜୀବନ ହରି ॥ ୩ ॥

ଅଛ ସକଳେ ମୋ ପ୍ରାଣ ଈଶ୍ୱରୀ ହକଳେ
ଖୋଜଇ ନ ଦିଶେ ଗଲେ କାହିଁ
ଅତି ଅଧୀର ଗୋବିନ୍ଦ ଶୁଣି ଅଳିବୃନ୍ଦ
ବୋଲନ୍ତି ସେଠାରେ ଥିଲେ ରହି ॥୪॥

ଅପେ ଆଦରରେ ମାଳ ଅମ୍ଳାନ ମୁକୁଳ
ତୋଳୁଥିଲେ ଶିଖି ଗୁନ୍ଥିଁ ଗୁନ୍ଥିଁ
ଆମ୍ଭମାନଙ୍କୁ ନ କହି ଗଲେ ପୁନ କାହିଁ
ମଦନ ବାଧା ନ ସହି ସହି ॥ ୫ ॥

ଆଳି ମୁଖୁଂ ସ୍ପୃହା ଶୁଣି ପୁଲକୂପ ପାଣି
ପୁଲଶରର ଭେଦୁଅଛି ହୃଦ
ଆସି ପ୍ରେକାଳେ ସୁବଳ ସେ ମଧୁମଙ୍ଗଳ
ଦେଖିଲେ ବଢେଷେ କୃଷ୍ଣ ଖେଦ । ୬ ।

ଆଳାପରେ କହେ ଧୀର ନୁହସି ଅଧୀର
ଚକୋର ନ ଭେଷି କି ଚନ୍ଦ୍ରମା
ଅସ୍ତାଚଳକୁ ମଣ୍ଡଇ ସମ୍ଭାବତ ନୋହି,
ଖୋଜୁଥିବେ ବନେ ନୃପ କେମା ।୭।

ଅନୁରାଗ ବସନ୍ତା ସେ ମନକୁ ପ୍ରେ ଆସେ
ନ କହି ସଂକେତ କୁଞ୍ଜେ ଗଲେ
ଆତୁରିତ ସେ ଚତୁର ହୋଇ ଭ୍ରମ ପଥ
ଶ୍ରୀ ଶ୍ୟାମସୁନ୍ଦର ଦେବ ବୋଲେ ।୮।

—ଗୀତ—

ଆଳି ଖୋଜ ଭେଟି ନବବୟସୀ
ଅଛନ୍ତି ସଂକେତ କୁଞ୍ଜରେ ବସି
ଅଶ୍ରୁନେହ ମୁଖ କୁଚେ ନବେଶୀ
ଅସ୍ତାଚଳେ ବଧୂ ଗଲା କ ପଶି
ଆମ୍ଭଙ୍କୁ ନ କହି,
ଆସିଲୁ ଜୀବନ ଅଙ୍ଗେ ନ ରହି ।୧।

ଅମ୍ଭେଶ୍ୱର ଭ୍ରମ ତହିଁ ଅଧିକେ
ଆତୁର ହୋଇ ବୋଲନ୍ତି ରାଧିକେ

ଆସ ଭେଟାଇବୁ ଅଚିରେ ନେଇ
ଅକାରଣେ ଶ୍ରମ ଲଭ କପାଇଁ
ଅନଙ୍ଗ କପଟୀ,
ଆଗ୍ରପୂର୍ବରୁ ଆନ୍ଧ ଛନ୍ଦେ ଲମ୍ପଟି । ୨ ।

---

( ଛଅ )

ଆଣି ମାନସ ଚତୁର ଭୃଙ୍ଗ ପାଶେ ଚୋର
ବନ୍ଧାଇବୁ ଶେଷ ନଂଖେ ଭେଦ
ଅଳିମାନେ କର ଧର ଆଣେ ଜବାଧର
ନ ଚଳେ କାନ୍ତ ବଚ୍ଛେଦ ଖେଦ ।୧।
ଆସି ଚନ୍ଦ୍ରାବଳୀ ଆଳ ପ୍ରେ ସମପ୍ରେ ମିଳ
କୁଶଳ ପଚ୍ଛୁରି ବୋଲେ ଶୁଭ
ଅଭ ବନଭକ କନ୍ଧ କୃଷ୍ଣ ବୋଲେ ସବୁ
ଆଣ ଉମା ଶେଷର୍ଥ ସୁଖ ଲଭ ॥ ୨ ॥
ଅନ୍ତଗତ ସେ ପ୍ରେମନ୍ତ ବଚନ ଶ୍ରମନ୍ତ
ରାଧା ପଦ୍ମମୁଖ ସ-ମଳନ
ଅଶ୍ରୁ ଅନାପୂତେ ଜାତ କଂକଣାଦ ପାତ
ଭାର ବସନ ଭୂଷଣ ମାନ ॥ ୩ ॥
ଆଳ ବୋଧେ ସପତଣି ଛନ୍ଦକୁ ନ ଜାଣି
ତାପ ଉଦଧିକ ହୋଉ ଶୀଳ
ଆମ୍ଭ ଆଳପୂକୁ ଗଲେ ଭେଟାଇବେ ଭଲେ
ଚନ୍ଦ୍ରାବଳୀ କୃଷ୍ଣ ରତଶୀଳ ।୪ ॥
ଆସୁଂ ମଣ୍ଡ ବଷ୍ଣୁ ପଦ ଚନ୍ଦ୍ରର ଆସ୍ପଦ
ଅଦ୍ଭୁତ ଦେଖି ନ ଚଳେ ତଳେ
ଅଣି ସେ ରଜ ଉରଜ ମଣ୍ଡଇ ମାରଜ
ଦାସୀ ଦାତ ହୋଇ କାମାନଳେ ।୫।

ଅଚଳର ଭୂତ ଦେଖି ଚଞ୍ଚଳରେ ସଖୀ
ମାଳ ଦେଇ ପେଷେ କୃଷ୍ଣ ପାଶେ
ଆସୁ ଖଣ୍ଡଦୁନ୍ତ ହର ବୋଲେ ପ୍ରାଣେଶ୍ୱରୀ
ସ୍ଥିତ ଯେବେ ହରେ ତୁଳସୀ ଅ଼ସେ ।୬।
ଅଞ୍ଜଳରେ ଫୁଲମାଳ ଧଇଲେ ତାମ୍ବୁଳ
ପୃଚ୍ଛେ ପ୍ରାଣପ୍ରିୟା କାହିଁ କହ
ଆଳି ବୋଲଇ ତୁମ୍ଭର ସ୍ମରଣ ଅମ୍ବ ବ-
ନାରେ ମଦନ ଦହେ ଦେହ ॥ ୭ ॥
ଆଲିଙ୍ଗନ ଅବଲମ୍ବ ବିନା ସେ ପ୍ରଲମ୍ବ
କେଶୀ ନ ଉଠଇ ହୋଇ ଧୀର
ଅନେ ତୁମ୍ଭଙ୍କୁ ବହଇ ବିଚ୍ଛେଦ କହଇ
ଶ୍ରୀ ଶ୍ୟାମସୁନ୍ଦର ଦେବ ଧୀର ॥ ୮ ॥

—ଗୀତ—

( ଆଷାଢ ଶୁକ୍ଳ ବାଣୀ )

ଆଳି ବୋଲେ ନଶାପତି ନଶାରେ
ଆନନ୍ଦ କରେ କୁମୁଦ କାସାରେ
ଆନ କେ ଗତି ନଶାକୁ ରସାରେ
ଆମ୍ଭ ସଜନୀ ତୁମ୍ଭ ଭରସାରେ
ଅମ୍ବର ଆଶାରେ,
ଅନ୍ୱେଷଣା ମୃତ୍ତୃଷ୍ଣା ଗ୍ରସାରେ ॥ ୧ ॥
ଅଚ୍ୟୁତ ବୋଲେ ଗୃତକ ତରସି
ଆକାଶ ଘୋଟି ମେଘ ନ ବରଷି
ଅମ୍ବୁଜ ମଣ୍ଡନ ମ୍ଳାନ ସରସୀ
ଅଛ ଶୁଣି କ ତା ମାନସ ଉପି
ଅଛୁ ଆକରଷି,
ଅଧିକେ ମୋ ମନ ମନୁ ବରଷି ॥ ୨ ॥

( ସାତ )

ଅଧୋକ୍ଷଜ ଆଜ ପେଷି ଆଣ ଶୁଭ୍ରକେଶୀ
ଚମ୍ପକୁଞ୍ଜେ ଆମ୍ଭ ଅଛୁ କହ୍ନ
ଅନ୍ତେ ରାଧିକା ସେ କାଳେ ଚାହଇ ବ୍ୟାକୁଳେ
କୃଷ୍ଣ ନ ଦେଖିଲ୍ଲ ଯାଗ ସନ୍ନ ॥ ୧ ॥

ଆଜ ଚନ୍ଦ୍ରାବଳୀଙ୍କର ସଚ୍ୟ ହେଲ ଚିର
ଗଉସ ଛାର୍ଥକୁ ଗଲେ ହରି
ଆଜ କୃଷ୍ଣ ପରସନ ମୁଖ ଦରଶନ
ବନା ସେ ବନେ ଜୀବନ ହାରି ।୨ ।

ଅନାୟାସରେ ଦୁର୍ଲଭ ହୋଇଥିଲ ଲଭ
କ୍ଷଣେ ନ ରହିଲ ଭୁଜବନ୍ଧେ
ଅଙ୍ଗୁଳକ ମୋ ଚିବୁକ ମଣ୍ଡିଣ ମସ୍ତକ
ଆଘ୍ରାଣ ଚୁମ୍ବନ କାମ ଅନ୍ଧେ । ୩ ।

ଆଜ ନକର ପରୁଷ ବଚନ ପ୍ରକାଶ
କଲବେଳେ ଟୁମ୍ଭେ ଥିଲେ ଗନ୍ଧେ
ଅତ ସୁଖ ନାବ ଛାଡ଼ି ମରୁଅଛୁ ବୁଡ଼ି
କାମ ସରିତ ଗଭୀର ଗନ୍ଧେ ॥ ୪ ॥

ଅସେ ସେ କାଳେ ସେକାଳେ ସଖୀକ ଆଲୋକ
ପ୍ରାକେ ବୋଲଇ ଶଶୀମୁଖୀ
ଅବଲମ୍ବେ ରହ ଗଲେ ପିବଟି ଚପଳେ
ରହ ନ କରବ ମତେ ଦୁଃଖୀ । ୫ ।

ଆସ୍ୟ ପ୍ରସନ୍ନ ତୁଳସୀ ଆସି ପାଶେ ଭାଷି
ଦେଖିଲ କୃଷ୍ଣଙ୍କୁ ସଖୀ ସହ
ଆଣି କେତକୀ ତୋ ଅଙ୍ଗ ପରି ହୃଦେ ସଙ୍ଗ
ହୋଇଥିଲା ନେହ ବାର ବାହ । ୬ ।

ଆଗେ କୋକିଳର କଳ ତୋ ବାଣୀ ମଞ୍ଜୁଳ
ଆଦରେ ମାଳ ତାମ୍ବୁଳ ଘେନ
ଅମ୍ଳାନ ଫୁଲ ମାଳ ଦେଇ ବନମାଳୀ
ବୋଲେ ଆଣ ନେଇ ସୁଖଦାମା । ୭ ।

ଅବଲମ୍ବ ହେଲା ମାଳ ଉଠି ମଣ୍ଡେ ଗଳ
ଆଲିଙ୍ଗନ ମଣେ କୃଷ୍ଣ ଭୁଜ
ଆସି ଗୋବନ୍ଦ ଭେଟଇ ସାନନ୍ଦେ କହଇ
ଶ୍ରୀ ଶ୍ୟାମସୁନ୍ଦର ଦେବରାଜ ॥ ୮ ॥

—ଗୀତ—

ଆଳସ୍ୟେ ଛଳ ଚନ୍ଦ୍ରାବଳୀ କାନ୍ତ
ଆଲୋକନଂକେ ତାଙ୍କୁ ଚନ୍ଦ୍ରକାନ୍ତ
ଅଟ ଛନ ସେହୁ ମଣି ପ୍ରକାର
ଅନଙ୍ଗ ଚାପ ମଦନ ବକାର
ଆମ୍ଭଙ୍କୁ ଜଳାଅ,
ଅଖିଷ୍ଟ ଗମାରେ ମତ୍ତ ବଳାଅ । ୧ ।

ଅଚ୍ୟୁତ ବୋଲେ ଉଚିତ ବୃତ୍ତାନ୍ତ
ଅକ୍ଷୀଣ କ୍ଷୀଣ ବା ହେଲେ ନିତାନ୍ତ
ଅମୃତ କର କାନ୍ତ ରୂପ ଜନ
ଆନ କେ ହୋଇବ ବନା ରଜନୀ
ଅନ୍ଧ ମୁଖେ ତାରା,
ଆବେଷ୍ଟନେ ଥିଲେ ହୋସ୍ୟେ କ ତୋରା । ୨ ।

( ଆଠ )

ଅକ୍ଷି ଶେଷେ ଦୁହିଁ ମତ୍ତ ହରଇ ଶ୍ରୀମତୀ
ସସଂଭ୍ରମେ କୃଷ୍ଣ ଆଲିଙ୍ଗନ
ଅନୁକମ୍ପା ଶିବେ ଚମ୍ପା କୋଟି ଦେଇ ଶମ୍ପା
ଗୋଷ୍ଠ ମୁଖେ ପ୍ରେକ ଚୁମ୍ବ ଦାନ ।୧।

ଅଣିମାଦ୍ଧ ସୁଖ କେତେ ପ୍ରେମ ଦ୍ରବ ତଉ
ମନର ଯୁବତୀ ଦେଲେ ଚୁମ୍ବ
ଅନାସ୍ୱତ୍ତ କାମେ ହୋଇ ପୀୟୂଷକୁ ପିଇ
ରଦେ ପିଡ଼ି ଓଷ୍ଠ ପଦ୍ମ ବମ୍ବ ॥ ୨ ॥

ଅତି ଅନୁରାଗ ଦୁହିଁଠୁ ପ୍ରକାଶନ୍ତି ଅଷ୍ଟୁ
ଜୀବର ଜୀବନ ମୋର ସଖୀ
ଅମ୍ବୁ ବିନା ଯଥା ମୀନ ନ ରଖେ ଜୀବନ
ତଥା ମୁଁ ତୋ କଥା ବିନା ଦୁଃଖୀ ।୩।

ଆନ୍ଦୋଳନ ସ୍ୱର୍ଣ୍ଣ ଦୋଳୀ ପରେ ପୁଂସ ବାଳୀ
କେତେବେଳେ କୁଞ୍ଜେ ପଶା ଖେଳ
ଅଳି ମାଣିକ ଅନାଇ ଭାନୁ ଜେମାଦେଈ
କୃଷ୍ଣ ଦୁହିଁ କହେ ବନ୍ଧେ ଛଳ ।୪।

ଅବଲୋକ ପ୍ରେ ମଧୁପ ମଧୁରେ ଲୋଲୁପ
ପ୍ରେକ ରସେ ବଶ ନୋହେ ତଉ
ଅଜ୍ଞ ଯଥା ସାରସାର ମଣେ ପ୍ରେକାକାର
ରଙ୍ଗକୁ ମଣାଇ ପ୍ରେ ରଜତ ॥ ୫ ॥

ଆସି ଚନ୍ଦ୍ରାବଳୀ ଆଳି ପ୍ରେ ସମପ୍ରେ ମିଳି
କପଟୀ ହାରେ ନ ପାଶ ରହି]*
ଅପହୃତ କାଞ୍ଚି ଲଜ୍ଜା ଯାହାରେ ବ୍ୟାଜେ
କୂଢ଼େ ପଦ୍ୟାବଳୀ ଗଲେ ଲଜ୍ଜା ।୬।

---

* 'ଖ' ପୋଥିରେ ବନ୍ଧନୀ ଅନ୍ତର୍ଗତ ପଦ ଦୃଷ୍ଟ ନାହିଁ ।

ଆସି ଚାନ୍ଦମୁଖୀ ବନ୍ଦୁ ମନ୍ତ ବୋଲେ ଇନ୍ଦୁ-
ମୁଖି ଚଳ ନିଜ ନିବାସରେ
ଅମରଷେ ଚନ୍ଦ୍ରାବଳୀ ଆଳି ଗଲେ ଭଳି
ଅନସ୍ତ ବଚୃର ମାନସରେ ॥ ୭ ॥

ଅର୍କ ଅର୍ଚ୍ଚନ ନିମିତ୍ତ ସାର ସେ ଅମିତ
ଶୋଭରେ ମନ୍ଦରେ ନାଗରଟ
ଅଟେ ଶ୍ରୀ ଶ୍ୟାମସୁନ୍ଦର ଦେବ ପ୍ରେ ସୁନ୍ଦର
ଚରିତ କମଳେ ମଧୁଲିଟ ॥ ୮ ॥

— ତୃତୀୟ କୁସୁମ —

॥ ଆଦ୍ୟ ବିଭାଗ ॥

# ବୋଲି ଲେଖନ

( ଖେମଟା* ବୃତ୍ତେ )

ଅଦମୁଖେ ଉଠି ବୃନ୍ଦା ଦୃଷ୍ଟି ବର୍ଣ୍ଣାବଳରେ
ଅଛୁ ଲବ୍ଧ ସୁଧା ବାତ୍ତେ ମୃଗମଦ କାଳରେ ॥୧॥

ଅଟେ ବଧୂ ଯେ ବଧୂର ସଦା ଗନ୍ତ କାନନେ
ଅଭିମନ୍ୟୁ କହ୍ନ ନଷେଧ ନ ଯାଉ ସେ ବନେ ॥ ୨ ॥

ଅନ୍ତ କୋପମୁଖ ମୂଖରକୁ ଗଲ ସେ ଅଣି
ଅପେ ପୃବ ସୂଚାଂଶ କହନ୍ତି ସେ ସାଧୁବାଣୀ ॥ ୩ ॥

ଆଳଚୟ ଆସି ପଢ଼ିଣ ହୋଇଲେ ବସୁୟ
ଅନୁସାର ଦେଲେ ଭୃଙ୍ଗବିଦ୍ୟା ଚେକ ସଂଶୟ ॥ ୪ ॥

ଆଣି ମୁଖରକୁ ବୋଲେ ପଢ଼ି ଲେଖା ଚରିତ
ଆଜ ଭସିଲି ଗୋପେ କଳଙ୍କ ସହିତ ସ୍ରୋତ ॥ ୫ ॥

ଅର୍ଥ ହେଲା ଅଭିମନ୍ୟୁ ନ ଯିବ ସେ କାନନେ
ଅଛୁ ବଧୂର ବଧୂର ସଦା ଗନ୍ତ ତ ବନେ ॥ ୬ ॥

ଅଦଭୂତ ମଣେ ବୃନ୍ଦା କେହ୍ନ ହୋଇଲା ଆନ
ଅଛୁ ଯଥା ସ୍ୱରୂପରେ ବର୍ଣ୍ଣାବଳ ରଚନ ॥ ୭ ॥

ଅମୃଜକୁ ବୋଲେ ବାବୁ ନ ଯିବୁ ବୃନ୍ଦାବନ
ଅମ୍ଭ ହିତେ କଉ ଦେବ କରିଗଲ ଲେଖନ ॥ ୮ ॥

---

* ଖେମଟା (ପୋଥିପାଠ)

ଅତି ସ୍ୱଚ୍ଛ ହେଲା ତାହାଙ୍କ ଅନ୍ତର ବିଧାନ
ଆନ ବନେ ଅଭିମନ୍ୟୁ ଗୋଷ୍ଠୁ କଲେ ସ୍ଥାପନ ।୯।।

ଅଭିସାର ସାର୍ବସାକ୍ଷୀ ଢନେ ଚନ୍ଦ୍ର ଜଣିରେ
ଆସି ପୂର୍ବ ପରି କୃଷ୍ଣ ଭେଟି ଘନକେଶୀରେ ।୧୦।

ଆଲମ୍ବିତ ଗୁଞ୍ଜାହାର ଦେଖି ହସେ ବନିତା
ଅଛୁ କଉଁ ଗୁଣ ଯେଥି କର ପ୍ରୀତି ଜନିତା ।୧୧।

ଅନୁରାଗ ଭୂମ୍ନ ପରି ହରି ବୋଲେ ଯେହାର
ଅଙ୍ଗରାଗେ ପୂର୍ଣ୍ଣମୁଖେ ତମ ଯେ ହେଉ ହାର ।୧୨।

ଆଳି ବୋଲେ ତଥା ନୋହେ ଅନ୍ୟ ବିଷୟେ ତମ
ଅଟେ ଚନ୍ଦ୍ରାବଳୀ ଠାରେ ଧରି ଯେ ରାଗ ତମ ।୧୩।

ଆନ କେ ବୋଲେ ଯେ ତାର ମୌକ୍ତି ବିହାର ହାର
ଅଛୁ ଅଞ୍ଜନ ସିନ୍ଦୂରେ ଲଗି ଯେ ଅଧାହାର ।୧୪।

ଆଳି ବହୁ ଭାଷ ଶୁଣି ଆଲିଙ୍ଗିତ ପ୍ରିୟାରେ
ଆନ ଲକ୍ଷନ୍ତି ଯେ ଆମ୍ଭ ସ୍ନେହ ସୁହୃଦୟାରେ ।୧୫।

ଅବଦାତ ଚନ୍ଦ୍ରୋଜ୍ଜ୍ୱଳ ପରି ଯେ ଫଳ ଯେତେ
ଅବଲୋକ କରାଇବ ଧନ୍ୟ ବୋଲିବା ତେବେ ।୧୬।

ଅନ୍ୟେ ଚନ୍ଦ୍ରାବଳୀ ପ୍ରେମ ରାମା ବୋଲେ ଉଚନେ
ଆନ ସେ ବିନା ଉପମା ନ ଉଚରେ ବଚନେ ।୧୭।

ଆଳାପରେ ପରିହାସ ଛଳ ବହୁ ଶ୍ଳେଷରେ
ଅନୁରାଗ ଚନ୍ଦ୍ର ଉଜ୍ଜ୍ୱଳ ଉଜ୍ଜ୍ୱଳ ରସରେ ।। ୧୮ ।।

ଆରମ୍ଭନ୍ତେ ବନ୍ଧି ହସ୍ତ ଛୁଡ଼େ ଗୁଞ୍ଜା ମାଳିକା
ଅନ୍ତ ସୂରତେ ସ୍ତୁତିଲେ କୃଷ୍ଣ ନବ ବାଳିକା ।୧୯।।

ଆସି ଯେକ ଗୁଞ୍ଜ ରାମା କୁଚ ଚନ୍ଦନେ ପଶେ
ଅଙ୍କୁରିତ ସେ ଉଜ୍ଜ୍ୱଳ ରସ ମିଥୁନ ବଶେ ।। ୨୦ ।

ଆଳସ୍ୟରେ ରେଖିଲ ଫେଡ଼ୁଁ ଦେଖେ ଗୁଞ୍ଜ ଅଙ୍କୁର
ଆପେ ଗୋପେ କେଲି ବିପିନ ଘେନ ସଖୀ ନିକର ।୨୧।

ଆଳବାଳ କର୍ପୂର କସ୍ତୁରୀ ପଙ୍କ ବିଧାନେ
ଆଗ ଦେଇ ପାଳେ ମାଳିକ ବାଳୀ ସାବଧାନେ ।୨୨।

ଅନୁଦିନ ବଢ଼ି ପୁଷ୍ପ କ୍ରମେ ହେଲା ସଫଳ
ଅବଦାତ ଚିତ୍ର ରଚି ଶ୍ୟାମ ସୂତ୍ରରେ ମାଳ ।୨୩।

ଆଲମ୍ବିତ କରି ଉରେ ବିଜେ ସୂର୍ଯ୍ୟ ପୂଜନେ
ଆସି ସେହିକାଳେ ଭେଟିଲେ କୃଷ୍ଣ ବନ ବିଜନେ ।୨୪।

ଅବଲୋକି ବୋଲନ୍ତି ଅପୂର୍ବ ବନ ହ୍ଲାଦଶେ
ଅଛି କେଉଁଠାରେ ଦେଖାଅ ମୋ ସୁଖପ୍ରଦ ସେ ।୨୫।

ଅମୃତ ମୃତ ବା ଇଚ୍ଛା କରୁଁ ହାର ତଦାସ୍ତୁ
ଆମ୍ଭ ମୋତି ମାଳକୁ ଅଥବା ପାଳଟ ଦସ୍ତୁ ।। ୨୬ ।

ଆଚଞ୍ଚନରେ କାଞ୍ଚନଗୋରୀ ନ ଶୁଣି ଗରମେ
ଆଗେ ଓଗାଳି ବୋଲନ୍ତି ବାଳୀ ଗର୍ବ ଉଦ୍ଧାମେ ।୨୭।

ଆନ ଅନଙ୍ଗ ସରେ ପାଦେ ନ ଯିବ ଆଜ
ଅବମାଣ ଭାଗ ବିନା ନବ ଫଳକୁ ଭୁଞ୍ଜ ।। ୨୮ ।।

ଅବଗଣିତେ କେଶର ଚୋଳେ ମୀନ ଲକ୍ଷଣୀ
ଅଳି ନଳିନ ଗନ୍ଧରୁଁ ମୁଖେ ପାତ ସେକ୍ଷଣି । ୨୯ ।

ଅନାପ୍ତରେ ଭୃଙ୍ଗ ଖିରେ କାନ୍ତେ କଲା ଆକ୍ଷେପ
ଅଷ୍ଟ ଦରବ୍ରରେ ଅଣିମାଦି ଲାଭ ବିଶେଷ । ୩୦ ।

ଆପେ ବାନ୍ଧୁ ବନ୍ଧନେ ଯତନେ ରଖି ବନିତା
ଆଜ କେନ୍ଦୁ ମୁକୁଳିକ କନ୍ଦୁ କୋପ ଜନିତା ।।୩୧।।

ଅମାନଥା ଗୋ ମାନଆଶୋଭି ହେଲ କାମରେ
ଆନ ମେଣ୍ଟି ସଜଭାଗକୁ ନ ଦେଲ ଭ୍ରମରେ ।୩୨।

ଅଚ୍ୟୁତର ଭୁଜବନ୍ଧ ସମା ଲୋଡ଼ଇ ଫେଡ଼
ଆସ୍ୟ କମ୍ପାଇ ପରୁଷେ ଭାଷେ ଦଣ୍ଡ ଦେ ଗୁଡ଼ ।୩୩।

ଆଳି ବୋଲନ୍ତି ଗୁଡ଼ ସେ ଶୀସର ସୁକୁମାରୀ
ଆଣ୍ଠ ଭୁଜ ତବ ଜାଣ କଂସ ମଲ୍ଲଙ୍କୁ ମାରି ।୩୪।

ଅଟଣା ଦେଖା ବୋଲେ ସ୍ୱେ କାଳେ ସାରିକା ଶିଷ
ଆଜ ବୋଲେ ସେ ବସ୍ତୁ ଶୃଙ୍ଖଳ ଯୋଗ ବିଶେଷ ।୩୫।

ଶ୍ଳେଷ—

ଆନନ୍ଦଦା ନନ୍ଦା ଭଦ୍ରା ଭଦ୍ର ଅନଙ୍ଗ ରସେ
ଅଟନ୍ତି ସ୍ୱେ ହରି ଚକ୍ଷବାଣୀ ଜାତ ରଭସେ । ୩୬ ।

ଅଛନ୍ତି ରାଧିକା ବନ୍ଧନରେ ବସ୍ତୁ ଶୃଙ୍ଖଳ
ଅଧର ପୀୟୂଷ ପାନେ ଉପବାସର ଫଳ ॥ ୩୭ ॥

ଅତନୁ ରସେ ଜାଗରବର୍ତ୍ତି ଉଜ୍ଜ୍ୱଳ ଯୋଗ
ଅଘ ହତେ ବନ୍ଧନରୁ ଫିଟି ଲଭିବେ ଭୋଗ । ୩୮ ।

ଶ୍ଲୋକଃ—

ନନ୍ଦା-ଭଦ୍ରାଦ୍ୱୟୋର୍ଯସ୍ୟ ବସ୍ତୁ ଲକ୍ଷେଣ ସଂଯୁତା
ତଦ୍‌ବସ୍ତୁ ଶୃଙ୍ଖଳଂ ଯୋଗ ଉପୋଷ୍ୟମୋକ୍ଷକୃଦ୍ଭବେତ୍ ।

ଆନନ୍ଦେ ସକଳେ ବୋଲେ ସ୍ୱେବେ ପଢ଼ ହେ କୀର
ଅତି ମଧୁରେ ସେ ଭଣେ ରୂପକ ଗିର ॥ ୩୯ ॥

ଆସ୍ୟ ଚନ୍ଦ୍ର ନାକ ଶୋଭେ ଯୋଡ଼ି ମୋତି ରୋହିଣୀ
ଅଟେ ପ୍ରତିପଦରେ ମଞ୍ଜୁଳ ସୁଯୋଗ ଜାଣି ।୪୦।

ଅଦୂର ସଖୀଗଣରେ ନାଗରୀ ହେବ ମଜ୍ଜନ
ଆଦ୍ୟେ କୁଚ ଶୈଳ କରେ ଧରି କରହେ ଦାନ ।୪୧।*

ଅଧର ମାଣିକ୍ୟ ପାତ୍ରେ ଭରି ଶୁଦ୍ଧ ଅମୃତ
ଅର୍ଘ୍ୟ ଦିଅ ରାଧେ କୃଷ୍ଣେ ହୋଇ ହରଷ ଚିତ୍ତ ।୪୨।+

---

* ଯଦଯଦି ନେ କଣାସ୍ତୁଂ । ବଡାପିତଂ ମୂର ତାପେଽହ୍ନଂ
ତସ୍ରିବଂ ବଳସ୍ତୁଂ ଯାନ୍ତି । ସ୍ନାନେନ ସୁରସାନ୍ତସି । (ପୋଥିପାଠ)

+ ରୋହିଣୀ ପ୍ରତିପଦନେ ଅର୍ଘ୍ୟଦାନଂ ସକାମଦମ୍ ।
'ତସ୍ମାଦର୍ଘ୍ୟଂ ମୟାଦତ୍ତଂ ଗୃହାଣ ନନ୍ଦ-ନନ୍ଦନ ॥ (ପୋଥିପାଠ)

ଅଶନକୁ ଦ୍ରାକ୍ଷା ଦେଇ ଉଚ୍ଛ ହରଷେ ମନ୍ଦେ
ଆସି ଅଙ୍ଗନା ସଭାରେ ରାଧା ମାଧବ ବଜେ ।୪୩।।

ଆମ୍ଭ ଉଭପୁର ନ୍ୟାସ୍ତ କର ତୁମ୍ଭ ସଭାରେ
ଅଳ୍ପ ପକ୍ଷ କହିଲେ ମଦନ ଦଣ୍ଡ ବେଶ୍ୱାରେ । ୪୪ ।

ଅବଜ୍ଞାରେ ରାଜଭାଗକୁ ନ ଦେଇ ଦୁଷ୍କର
ଆନ ମେଣ୍ଟିଗଲେ ପଥେ ଲୁଟିନେଲେ ତସ୍କର ।୪୫।

ଆସି ପକାଇ ଆଶ୍ରୟ ପୁନ ସେହି ନରେଶ
ଆଣ୍ଟ ବନ୍ଧନରେ ରଖେ ଦେଖ ସେଥି କ ଦୋଷ ।୪୬।

ଆଳ କେ ବୋଲେ ଶରଣ ଠାରେ ବନ୍ଧନୋଚିତ
ଅଠ ମ୍ଲେଖ୍ୟ ନୃପ ପ୍ରଜା ଧନ ହରଣେ ରତ ।। ୪୭ ।।

ଆନ କେ ବୋଲେ ଦୋଷକୁ ଦଣ୍ଡ କର ବଧାନ
ଅଛି ପ୍ରେମରତ୍ନ ନଅ ବାସ ଅଙ୍ଗ ପିଧାନ ।। ୪୮ ।।

ଆକରଷଣେ କୁନ୍ତଳ ପରାଭବେ ଶଙ୍କିତ
ଅଙ୍ଗେ ନଖଘାତ ନୃପଦଣ୍ଡ ଅଙ୍ଗେ ଅଙ୍କିତ* ।।୪୯।।

ଅଳାପରେ ପରହାସ ସ୍ୱେଚ୍ଛାପର ରଚିତା
ଆପେ ଅଙ୍ଗନା ଯେନ ବଦରି ହୋଇ ଅଛନ୍ତା ।୫୦।

ଆସି କୃଷ୍ଣ ଭେଟି ବୋଲେ ଯନେ ସେ ଚନ୍ଦ୍ରାବଳୀ
ଅଟେ ବନଫଳ ଗୁଞ୍ଜି ନୋହେ ରତ୍ନ ଆବଳି ।।୫୧।।

ଅଦଭୁତ ସ୍ୱେ ପ୍ରୀତି ଲାଞ୍ଛନ ନ ଦେଲେ ରାଧା
ଅଛି ଲଘୁ ଦ୍ରବ୍ୟେ କରିଥିଲ ଯେବେହିଁ ଶ୍ରଦ୍ଧା ।୫୨।।

ଅଚ୍ୟୁତ ବୋଲନ୍ତି ବୃନ୍ଦା କହ ଗୁଞ୍ଜି ମହିମା
ଆମ୍ଭ ସ୍ନେହ ବହି ନ ଦେଲେ ତା ଭାନୁର ଜେମା ।୫୩।

ଅଠବା ଦେବୀ ବୋଲେ ଉଜ୍ଜ୍ୱଳ ରସ ଜନନ
ଅମୃତାଂଶୁ ତାର ଷୀରମୁଧି ଶ୍ରେଚ ଯତନ । ୫୪ ।

---

* 'ଲ' ପୋଥିରେ ଏହି ଧାଡ଼ିଟି ନାହିଁ ।

ଅବଦାତ ଧାପ ଶିବ ରୂପ ଗିରି କୈଳାଶ
ଅମ୍ବରଜ ଆଦି କୃଷ୍ଣ ଶୁଚି ରସର ଯଶ ।। ୫୫ ।।

ଅଙ୍କୁରିତ ଗୁଞ୍ଜା ରୂପେ ହୋଇ ଅଦଭୁତରେ
ଆଣି ପ୍ରେମେ ରାଧା ହୃଦେ ମଣ୍ଡି ସ୍ୱେବଂଭୂତରେ ।୫୬।

ଅତ୍ୟାଜ୍ୟ ସର୍ବଥା ବୋଲି ପ୍ରେମେ ନ ଦେଲେ ହାର
ଅସ୍ତୁରନ୍ନ କୃଷ୍ଣ ବକ୍ଷସ୍ଥରେ ଭୁଞ୍ଜ ଯାହାର ।। ୫୭ ।।

ଅତି ମାନ ଭଙ୍ଗ ଶୁଣି ଗଲେ ସେ ଚନ୍ଦ୍ରାବଳୀ
ଅଙ୍ଘ୍ରି କୃଷ୍ଣର କାନ୍ତେ ନିର୍ମାଣି ଆଳିରେ ଭଳି ।୫୮।

ଅଷ୍ଟାଦଶ ଲକ୍ଷଣରେ ଯୁତ ନଶିରେ ଆସି
ଅପହ୍ନୁତ କଲେ ଗୁଞ୍ଜି ଛଦ୍ମ ପାଦ ନବେଶୀ ।। ୫୯ ।।

ଅଙ୍ଗଜାର ରତି ଚିହ୍ନ ଯଥା ଯତ୍ନେ ପିଧାନ
ଅଙ୍କ ଆପଣା ପାଦର ତଥା ଲେପ ବିଧାନ ।।୬୦।।

ଅନ୍ୟ ମୁଖେ ରାଧାରେ ଜଣାଇ ମାଳିକ ବାଳ
ଆଗମେ କଲେ ବିଜୟେ ଶୁଣି ସଙ୍ଗରେ ଆଳି ।।୬୧।

ଅଙ୍ଘ୍ରି ଚିହ୍ନ ଦେଖି ପାଞ୍ଚିଲେ ସେ କୃଷ୍ଣ କପଟ
ଅଷ୍ଟ ବିଷମେ ଚିହ୍ନ ସୁବାସ ନୋହେ ପ୍ରକଟ ।।୬୨ ।।

ଆଶ୍ୱାସିଲେ ପାଣିଙ୍କେ ସଚ୍ଛିନ୍ନ ଦେଖିଣ ଲତା
ଆସି ଆଳୟରେ ଗୁଞ୍ଜା ରେଖିର ବିଷୟ ଚିନ୍ତା ।୬୩।

ଆଳି ପଦ୍ମା ସେବ୍ୟା ସ୍ୱେ ସମୟେ ଚନ୍ଦ୍ରାବଳୀର
ଆସେ ଯା ବନ୍ଟେ ଶୋଭନ ଜର ଗୁଞ୍ଜମାଳର ।୬୪।

ଅଧ୍ୱେ ମାଧବ ପୁଚ୍ଛିଲେ କାହୁଁ ଲଭିଲ ଗୁଞ୍ଜି
ଆଣି ବୋଲେ ରାଧା ଦେଲେ ରଚି ପୀରତି ପୁଞ୍ଜି ।୬୫।

ଆପେ କୃଷ୍ଣ ଜାଣି ବୋଲେ ସ୍ୱେହୁ ପଦ୍ୟାବଳୀ କି
ଆନେ ନ କହ୍ନ କହ୍ନବ ରହେ ଚନ୍ଦ୍ରାବଳୀକି ।।୬୬।।

ପ୍ରେ ପଦ୍ୟାବଳୀ—

ଆନନ ଚନ୍ଦ୍ରାବଳୀ ସଖୀ ବମନେ ବଦର
ଅଭିହାରେ ଶୋଭମାପୁ କୁଚ ଯୁଗଳ କର ॥ ୬୭ ॥
ଆନନ୍ଦିତ ହୋଇ ସେ ବେନ ଯାବଟେ ପ୍ରବେଶ
ଆଳି ମେଳରେ ବ୍ରଜପ୍ରେ ସ୍ୱଧା ହୋଇ ସୁବେଶ ।୬୮।

ପ୍ରେ ରୂପ ଗର୍ବିତା—

ଆସି ପଦ୍ମରନ୍ତେ କୁଶଳ ଲଳିତା ବଦନ୍ତି
ଅଟଇ ସର୍ବଶୁଭ ରାଧାପ୍ରିୟ ପ୍ରିୟ ଭାରତୀ । ୬୯ ॥
ଆମନ୍ତ୍ରଣ ଶୂନ୍ୟକାଳେ କୋଳେ ବସାନ୍ତି ଧରି
ଆସ୍ୟେ ଚୁମ୍ବ ଦେଇ ବୋଲନ୍ତି ଗୋ ବମ୍ବ ଅଧର ।୭୦।
ଆଭରଣରୁ କ କାର୍ଯ୍ୟ ରୂପ ସୁମଞ୍ଜୁଳତା
ଅଙ୍ଗୁଳି ଚାର ମାତ୍ର କରୁଁ ଧରୁଁ ଲଭେ ଅଳତା ।୭୧।

ପ୍ରେ ସ୍ନେହ ଗର୍ବିତା—

ଅଟେ ତବ ସର୍ବଶୁଭ ଶୁଣି ସେ ବେନ ଭାଷ
ଅଛି ଶୁଦ୍ଧ ଚନ୍ଦ୍ରାବଳୀ କାନ୍ତ ସ୍ନେହ ବିଶେଷ ॥୭୨॥
ଆନନ ବିନା ଆନକୁ ନ କରନ୍ତି ଲୋକନ
ଆଳାପରେ ଚନ୍ଦ୍ରାବଳୀ ନେତ୍ରେ ରୂପ ଲେଖନ ।୭୩॥
ଅନ୍ତେ ସତ୍ତ୍ୱ ଦେଇ ପଦ୍ମମୁଖୀ ଭାବ ଗୁଣନ୍ତି
ଆଜ ଗୁଞ୍ଜାହାର ଦେଇ ଗୁପ୍ତ କର ବୋଲନ୍ତି ।୭୪।
ଆପେ ପଦ୍ୟାବଳୀ କଣ୍ଠଚ୍ଛନ୍ତି ବନପୁଷ୍ପର
ଆଳି ପଢ଼ ବୋଲୁଁ ପଢ଼ିଲା ସେ କୃଷ୍ଣ ଉତ୍ତର ।୭୫।

ପ୍ରେ ବକ୍ରୋକ୍ତି ଗର୍ବିତା—

ଅର୍ଥ କରି ଚତୁର କହଇ ବକ୍ର ଉକ୍ତିରେ
ଅତି ସୁଖ ଶିଳାଭାସ କାନ୍ତ ସରସ୍ୱତୀରେ ॥ ୭୬ ॥

ଅନୁମତ ପର ରାଧା ମୁଖ ହୋଏ ଅଧର
ଅପୂର୍ବ ଭାବ ବଶରେ ହୋଇଣ ଜରଜର ।୭୭ ।।
ଅର୍ଥ କହ ବୋଲୁଁ ପଢ଼ିଲେ ସେ ପୁଣ ଆନନ
ଆପେ ହସଛନ୍ତି ଚନ୍ଦ୍ରାବଳୀ ସଖୀ ବଦନ ।। ୭୮ ।।
ଅଭ୍ର ସର୍ବତୋ ଭାବରେ ହାରେ ଶୋଭା ଉରଜ
ଆନ ଅର୍ଥ ଶୁଣି ସେହୁ ବେନ ଲଭିଲେ ଲାଜ ।୭୯।।
ଅତ ମନ୍ଦରେ ପଥରେ ଯାଇଁ ସଖୀରେ କହେ
ଆମ୍ରେଶ୍ୱର ଶଠ ସାନ୍ତ ବନ୍ଧି ହୃଦୟ ଦହେ ।୮୦ ।
ଆମ୍ର ସ୍ୱେକ ଭାଗବନ୍ତ ଦେଇ ଦୁନ୍ତର କରେ
ଅଚ୍ୟୁତ ପାଶେ ପେଷେ ସେ ଦେଇ ରହେ ମୂକରେ ।୮୧।
ଆପେ ଧୀର ପ୍ରଶାନ୍ତ ନାୟକ ଗୁଣ ଦେଖାଇ
ଅହ ମୂଖରେ ବୁଝିବା ବୋଲେ ମୂଖ ଶୁଖାଇ ।୮୨।
ଅର୍କ ପୂଜ ଯେଣେ ରାଧା ମିଳେ ମଧୁବେଦରେ
ଅନାଗତ କୁଞ୍ଜେ ଚନ୍ଦ୍ରାବଳୀ ଆଳିଙ୍କ ଦରେ ।୮୩।
ଅଚ୍ୟୁତଙ୍କୁ ବୃନ୍ଦା କହେ ରାଧା ବଜାୟୁ ପୁରେ
ଅପହୃତ ଗୁଞ୍ଜା କଲ ରାଧା ହୃଦରେ ପୂରେ ।।୮୪।
ଅଚ୍ଛ ଦେଇ ପଦ୍ୟାବଳୀ ଚନ୍ଦ୍ରାବଳୀରେ ବନ୍ଧ
ଅର୍ଥ ନ ବିଚାରିଲ କି କେଉଁ ଗୋବିନ୍ଦ ବନ୍ଧ ।।୮୫।।
ଅଛୁଁ ଜାଣି ସର୍ବ ସର୍ବଥା ନ ଥିଲେ ହେ ଦୋଷ
ଆଜ ଦୁଷ୍କର ପୁଷ୍କର ନେହା ଭେଟ ବଦେ ସେ ।୮୬।
ଅସ୍ତ ରବ ଆଶା ପର ଆଶା ମ୍ଳାନ ହରର
ଅର୍କଜାରେ ସ୍ନାତେ ହେବା ତେବେ ଶୁଦ୍ଧ ଶରୀର ।।୮୭।
ଅଙ୍ଗ ଅନଙ୍ଗେ ଅବଶ ବର୍ଣ୍ଣି ଆସ୍ଥ ମନ୍ଦରେ
ଅବଲୋକନ ଗାବ ବାଳକ ମୃତ ପଥରେ ।। ୮୮ ।
ଅଭିଳାଷ ଦେଖି ହଂସ ବିଷ ଗ୍ରାସ ନନ୍ଦକ
ଅନ୍ତ ଭୃକୁଟିରେ କଲେ ପାନ ବିଷ ଉଦକ ।୮୯ ।

ଅଶ୍ରୁ ଢେଜନ୍ତ ବର୍ଣ୍ଣନ୍ତ ଗୁଣ ଗୁଣ ଗମ୍ଭୀର
ଆଜ କ ହେବେ ଶ୍ରବଣେ ବ୍ରଜବାସୀ ଆଭୀର ॥୯୦॥

ଆଦ୍ୟେ ଗୋବର୍ଦ୍ଧନ ମଲ୍ଲ ଦେବା ପାଦୁକା ଯଷ୍ଟି
ଆପେ ମନ୍ତ୍ର ପଢ଼ି ପ୍ରଦକ୍ଷିଣ କରଣ ପିଠୀ ॥ ୯୧ ॥

ଅକ୍ଷି ମଳନ ନଳନ ମୁକୁଳ ପରି ସେ ଉଠି
ଆମ୍ଭ ନଦ୍ରା ଭଙ୍ଗ କଲ ବୋଲେ ପ୍ରହାର୍ କାଠି ॥୯୨॥

ଅଗ୍ରେ ମଧୁମଙ୍ଗଳ ସୁବଳ କହେ ବଷସ୍ୟ
ଆଲିଙ୍ଗନ କୃଷ୍ଣେ ଦେଲେ ଶୁଣି ଗତ ସଣସ୍ୟ ॥୯୩॥

ଆସି ନର୍ମ ସଖା ସଙ୍ଗେ ରହେ ପ୍ରିୟା ବରହେ
ଆଜ ଉତ୍କୃଣ୍ଠ ଗୀତ ସ୍ୟାନ୍ତକ ପାଞ୍ଚ କର ହେ ॥୯୪॥

ଅଲୋଚନା ସୁଲୋଚନା ମାନଙ୍କରେ ଯେ ମାନ
ଆମ୍ଭ ଦେଲେ ଚନ୍ଦ୍ରାବଳୀ ତବ ହୃଦ ସମାନ ॥୯୫॥

ଅଛୁ କାମଶାସ୍ତ୍ରେ ବିଳାସିନୀ ମାନୋପଶମ
ଅପଯାଚ କାନ୍ତ ପରେ ଯେବେ ପଢ଼େ ବଷମ ॥୯୬॥

ଅନ୍ୟେ କୃଷ୍ଣ ଚନ୍ଦ୍ରେ କେନ ପ୍ରିୟତମା କାରଣେ
ଅର୍କସୁତା ଅମୃତ ସଞ୍ଜୀବ ବଷ ହରଣେ ॥ ୯୭ ॥

ଆସି ବ୍ରଜେ ଖ୍ୟାତ ଗାବ ବାଳ ଲଭିବା ଯିବ
ଆଭୀରଙ୍କ ମୋଦ କହେ ଶ୍ୟାମସୁନ୍ଦର ଦେବ ॥୯୮॥

— ତୃତୀୟ କୁସୁମ —

॥ ଦ୍ୱିତୀୟ ବିଭାଗ ॥

# ବୋଲି ଲେଖନ

( କର୍ଣ୍ଣ ବୋଲ ବାଣୀରେ )

ଆଦେଶ କଂସର ବ୍ରଜ ସଞ୍ଚାର
ଅନିରୁଦ୍ଧ ଦେବ ସହସ୍ର ଶିର ॥ ୧ ॥

ଅଛୁ ବଟ ସେ ବିଷ ଉଦକରେ
ଅନ୍ତେ ଆଶ୍ରୟ ଗରୁଡ଼ରେ କରେ ॥ ୨ ॥

ଅଧୋକ୍ଷଜ ଛାତ ବୋଧେ ତୂର୍ଣ୍ଣରେ
ଅଟେ ପ୍ରସୂତ ଯେଣୁ ସୁପର୍ଣ୍ଣରେ ॥ ୩ ॥

ଅଭୟ ଯେଣୁ ବିଷ ପ୍ରସୂନରେ
ଅମୃତରେ ପୂର୍ଣ୍ଣ ସ୍ତନ ଘନରେ ॥ ୪ ॥

ଆନ ଆଶ୍ରୀର ବୋଲେ କେ ଦୁସ୍କର
ଅବସ୍ଥିତ ପୁଷ୍କରେ ଯେ ପୁଷ୍କର ॥ ୫ ॥

ଆଣି ପାରିବ କେ କର ବଢାଇ
ଅଞ୍ଜନେୟ ପରି କାହା ବଡ଼ାଇ ॥ ୬ ॥

ଅତି ଖେଦ ବ୍ରଜେ ପୁଂସ ରମଣୀ
ଅନୁରାଗୀ ପୂର୍ବ କଲ୍ପ ଦ୍ୟୁମଣି ॥ ୭ ॥

ଅଧୋକ୍ଷଜ ଉଦବେଗ ମତରେ
ଆସି ପ୍ରବେଶ ଯମୁନା ପ୍ରାନ୍ତରେ ॥ ୮ ॥

ଆଲୋକଲେ ବିଷ ଜଳ କଲ୍ଲୋଳେ
ଅଳସିକ୍ଷ ପତଙ୍ଗ ପାତ ଲୋକେ ॥ ୯ ॥

ଅନୁଚିତ ପତଙ୍ଗ କନ୍ୟକାରେ
ଅପହୃତ ପତଙ୍ଗ କୁଳକ ରେ ॥ ୧୦ ॥

ଆଃସେ ରଥାଙ୍ଗୀ କେ ପତି ପ୍ରାଣକୁ
ଅର୍ଥନାରେ ହୋଇ ଚଞ୍ଚୁ ତୃଣକୁ ॥ ୧୧ ॥

ଅବଲୋକ ଥିଲା ବାଳ ଗାବର
ଅପହୃତ ବସ୍ତ୍ର ହରିତାମ୍ବର ॥ ୧୨ ॥

ଆଶ୍ୱାସିଲେ ଜାଣି ସଖା ବଚନେ
ଆଜ ଲଭ କାନ୍ତ ବସ୍ତ୍ର ମୋଚନେ ॥ ୧୩ ॥

ଅମୃତ ପତଙ୍ଗଗଣ ହରଣ
ଆଣି ନପେ କରିଥିଲେ ଧାରଣ ॥ ୧୪ ॥

ଅଚ୍ଛି ପେୟଣୁ ସେ ତତ୍ତ୍ୱ ସଂଜ୍ଞାବନେ
ଆବେକ୍ଷଣ ଦୃଷ୍ଟି ଦେଲେ ଗାବନେ ॥ ୧୫ ॥

ଅମୃତ ପେ୍ୟ ବିଷ ଯୋଗେ କଷଣ
ଅତି ଖଳ ସଙ୍ଗେ ସାଧୁ ଦୂଷଣ ॥ ୧୬ ॥

ଅନେକ ନାଗ ସେ ବନେ ବିହରି
ଅମରଷେ ଡେଇଁଲେ ପେ୍ୟଣୁ ହରି ॥ ୧୭ ॥

ଆୟୁଧ କରି ମୃନାଳ ପ୍ରହାର
ଅଶେଷରେ ନାଗବଳ ସଂହାର ॥ ୧୮ ॥

ଆସେ କାଳୀୟ ଚିନ୍ତ ଅଭ୍ରମଦ
ଅଟେ ନୃଥପ କ ସେ ବନ୍ଧ୍ୱ ଦଦ ॥ ୧୯ ॥

ଅଗ୍ରେ ଅପ୍ରିୟା ନଷେଧ ଭରିକ
ଆମ୍ଭେ ନାଗ ହୋଇ ବଳେ ଘରି କ ॥ ୨୦ ॥

ଅନ୍ବିଭୂକ ବାଦ ରଚି ପୂର୍ବରେ
ଆସି ଲୁଚିଛ ହାରି ଆହବରେ ॥ ୨୧ ॥

ଅଧୀର ଗତି ବଧିର ପରି ରେ
ଆଜ ଆରମ୍ଭିଲ କୋପେ ହରି ରେ ॥ ୨୨ ॥

ଅଚେନ୍ତ ତ କୃଷ୍ଣ ନାଗରମଣି
ଚିତ୍ତ ଭୋଗାସକ୍ତ ନାଗ ରମଣୀ ॥ ୨୩ ।

ଆଲୋକନ ପ୍ରଦୀପନ ରସରେ
ଅଧିକ ବନ୍ଧେ ଶୋଭ ବିବାସରେ ॥ ୨୪ ॥

ଅଙ୍ଗ ମର୍କତ ଲିଙ୍ଗ ମଞ୍ଜୁଳରେ
ଆବେଷ୍ଟିତ କି କୁସୁମ ମାଳରେ ॥ ୨୫ ॥

ଅନସ୍ତ ବ୍ରଜେ ତ୍ରିବଧିରେ ପାତ
ଅନ୍ୟସାକ୍ଷ ଦବ ଭୂବ ଜପାତ ॥ ୨୬ ॥

ଅଶ୍ରୁ ବରଷାରେ ମନ୍ମ ପଙ୍କିଳ
ଅତି ଝଂଝା ମରୁତ ଶ୍ୱାସ କଳ ॥ ୭ ॥

ଅଙ୍ଘ୍ରି ସ୍ଖଳନ ପୁରୁଷ କାମିନୀ
ଅମାନ ସମନ ସଉଦାମିନୀ ॥ ୨୮ ।

ଅନ୍ଧ ତମ ତାପ ଘୋଟେ ଅନଶେ
ଅଟେ ଚନ୍ଦ୍ର ଚନ୍ଦନ ଧୂନ ସେ । ୨୯ ।

ଆକାଶ କର ବ୍ରଜକୁ ଢକଲେ
ଆସେ ପିତାମାତା ଆଦ ସକଳେ ॥ ୩୦ ।

ଆସ୍ୱଂ ଚନ୍ଦ୍ରାବଳୀ ଜମା ତୀର୍ଥରେ
ଅଚ୍ୟୁତ ସତ ଶୁଣିଲେ ପଥରେ ॥ ୩୧ ॥

ଅଭିଷେକ କୁଚ ନେତ୍ର ଲୋଚନ
ଅଶାସ୍ତ୍ର କି କୃଷ୍ଣ ଦେବେ ମୋଚନ ॥ ୩୨ ॥

ଅବମା ପାତ ଶୋକେ ମୂରୁଚ୍ଛିତ
ଅମର ତରୁ ତରୁଣୀ ବାଞ୍ଛିତ ॥ ୩୩ ॥

ଅଟ ହୃଦ ମୃଗମଦ ତିଳକ
ଅବମା ମଣ୍ଡନ ଯୁବା ତିଳକ ॥ ୩୪ ॥

ଅଭିନବ ଘନ କାମଦା ବରେ
ଅଖିଳ ରମଣୀ କାମ ଦାବରେ ॥ ୩୫ ॥

ଆମ୍ଭେକ ପେଟିଲା ଅଭିମାନରେ
ଅଷ୍ଟ ପରୁଷ ହୃଦ ସମାନ ରେ ॥ ୩୬ ॥

ଆନନ ଶୁଖାଇ ଦେଖି ରହିଲେ
ଅବଶ୍ୟ ପ୍ରାଣେ ତୁଟିବା କହିଲେ । ୩୭ ॥

ଅହି ସରୁଣ ଧାସ ବରଚତ
ଅପମାନ ମୋ ନ ସହେ କଂଚତ ॥ ୩୮ ॥

ଅନ୍ୟ ମନ୍ତ୍ରେ ପ୍ରେ ଗୁଣ ସୁମରଣେ
ଅଭିବାଞ୍ଛିତ କରଇ ମରଣେ ॥ ୩୯ ॥

ଆସି ଭଦ୍ରା ମଙ୍ଗଳାଦ ପ୍ରେମରେ
ଅନୁରାଗ ସି଼ତ ଭାସ ସୁମରେ ॥ ୪୦ ॥

ଅର୍କ ସ୍ଥଳକୁ ରାଧା ଆଗମନ
ଅଚ୍ୟୁତ ଦରଶନେ ଦେଇ ମନ ॥ ୪୧ ॥

ଅଦରଶନରୁଁ କରେ ବରୁଭ
ଆଜ ନାହିଁ କୃଷ୍ଣ ବନେ ସଂଗୃଭ ॥ ୪୨ ॥

ଅନାଗତ ହେଲ ଗତ ଅହରେ
ଆସିଲେ ନାହିଁ ଦୁଃଖ ସଂଗ୍ରହରେ । ୪୩ ॥

ଉସମ୍ଭାବତ ପାଞ୍ଚେ ସେ ଚତୁର
ଆନ୍ବେଷକୁ ହୋଇଥାନ୍ତେ ଆତୁର ॥ ୪୪ ॥

ଅବଗ୍ରହେ ଘନ ଅବୃଷ୍ଟିକର
ଆଶା କ ଭଙ୍ଗ ହୋପ୍ୟେ ଗୃତକର ॥ ୪୫ ॥

ଅନ୍ଲେକେ କ ସ୍ଥାନ ଧୂମ ସରସେ
ଆକାଶୁ ପାଂଶୁ ରୁଧିର ବରଷେ ॥ ୪୬ ॥

ଅରଣ୍ୟ ମରସ ଝଡ଼େ ସୁମନ
ଅଶ୍ରୁ ପୂରେ ନେବେ ବ୍ୟାକୁଳ ମନ । ୪୭ ॥

ଅଙ୍ଗ ଦକ୍ଷିଣ କମ୍ପଇ ଅୟନେ
ଆସି ଭେଟେ ବୃନ୍ଦା ଅଶ୍ରୁ ନୟନେ । ୪୮ ।

ଅଧୋକ୍ଷଜ ସ୍ଥିତ ବଷ ଭୁବନ
ଅଙ୍କ ରମଣୀ ଭୋଗେ ଶୋଭ ବନ ॥ ୪୯ ॥

ଅଧିକ ବନ୍ଧର ସେ ପ୍ରଦୀପନ
ଆଜ ସ୍ୱେ ତବ କାରଣେ ଉତ୍ପନ୍ନ ॥ ୫୦ ॥

ଆସି ମୁଁ କାଲ କହିଲ ହେ ହରି
ଆପଣେ ଗୁଞ୍ଜା ନେଲ ଅପହରି ॥ ୫୧ ॥

ଅନ୍ତରେ ସ୍ୱେଚ୍ଛ ହେତୁରେ ମାନସୀ
ଆସିବେ କ ଆଦରଣ ଆନସୀ ॥ ୫୨ ॥

ଅବଶ୍ୟ ଜାଲ ବୁଝିବା କହିଲେ
ଆଜ ପ୍ରାତୁ ସ୍ୱେ ଚରିତ ବହିଲେ ॥ ୫୩ ॥

ଅଙ୍ଗନା ହରଷ ପୀୟୂଷ ଭାନୁ
ଅତ୍ତ ଗ୍ରାସିଲ ସ୍ୱେ ଗିର ସ୍ୱର୍ଭାନୁ ॥ ୫୪ ॥

ଅଦୋଷେ କମ୍ପା ଦେଳିଲ ବେଗରେ
ଆସକ୍ତ ହୋଇ ସପତ୍ନୀ ଭୋଗରେ ॥ ୫୫ ॥

ଅଙ୍ଗଦ ଆଢ ଖସେ ଅଯତନ
ଅଞ୍ଜନରେ ସ୍ନମା ମଣ୍ଡ ପତନ ॥ ୫୬ ॥

ଅର୍ପିତ କଲ ଜୀବନ କାନ୍ତରେ
ଆଳି ଆବେଷ୍ଟିତ ହେଲେ କାତରେ । ୫୭ ।

ଅଛି କେବଳ ପ୍ରତିମା ପୁରଠ
ଅଧିକେ ବ୍ୟାପିଲ ସ୍ପନ୍ଦନ ରଠ ॥ ୫୮ ॥

ଅନଳ ପରୀକ୍ଷ କରି ନାସାରେ
ଆଣି ଭୁଲା କେ ଢାଳଇ ରସାରେ ॥ ୫୯ ।

ଅନାଚିକା କେନ୍ଦ୍ର କଲା ବାଚକ
ଅଚ୍ଛି ସ୍ୱେତେ ମାସ ଶୁଭ ସୂଚକ ॥ ୬୦ ॥

ଅଚ୍ୟୁତ ନାମ ଶୁଣାନ୍ତେ ସରସ
ଅଳୁ ଶ୍ରୁତିମୂଳ ରୋମ ହରଷ ॥ ୬୧ ॥

ଆଣି ଭୃଙ୍ଗବଦ୍ୟା ସାଜଲେ ସାଣ।
ଆଳାପ କେଦାର ରାଗ ପ୍ରବୀଣା ॥ ୬୨ ॥

— ଗୀତ —

( ରାଗ – କେଦାର* )

ଅନା ଅନା ମୀନ-ଦୃଶୀ ଗୋବନ୍ଦ ମନ୍ଦରେ ହସି
କାଳୟ ଶିରେ କରନ୍ତି ନୃତ୍ୟ ଗୋ
ଅମ୍ବୁଜ ଚରଣ ମଣି ଜ୍ୟୋତିରେ ରୁଚିର ମଣି
ନଭେ ଶୋଭେ ଯେମନ୍ତ ଆଦିତ୍ୟ ଗୋ । ଅଇ ଅଇ ॥୧॥

ଅଧିକ କମଳ ପାଣି ଯୋଗରେ ମୁରଲୀ ପାଣି
ଦୃଢ କୁଚ ମଦନ ଅରାତି ଗୋ
ଅଧରୁଁ ପୀୟୂଷ ପାନ ଦେଇଛୁ ରାମା ରତନ
କାଳୟ ବକ୍ଷକୁ ନାହିଁ ଭରି ଗୋ । ଅଇ ଅଇ ॥୨॥

ଅମୃତ ଦୃଷ୍ଟିକ ଚୋର ପରକାଶି ବଷ ହର
କାମ ଅହି ବଷ ଘାରେ ସାର ଗୋ
ଆଲିଙ୍ଗନ ଆସେ କର ଟେକ ହୁଅନ୍ତି ଆତୁର
ପଦୁ ଚୋଳ କୁଣ୍ଡଳ ସଦ୍ୱାର ଗୋ । ଅଇ ଅଇ ॥୩॥

ଅଧୋକ୍ଷଜ ଗୁଣ ପ୍ରେମ ଶୁଣି ରୋମ ଉଦଗମ
ଚେତା ଲଭି ଚନ୍ଦ୍ରେ କୃଷ୍ଣ ଭାବ ଗୋ
ଆନେ କ ଦ୍ରବଇ ଚନ୍ଦ୍ର ମଣି ନ ଦେଖିଲେ ଚନ୍ଦ୍ର
କହଇ ଶ୍ୟାମସୁନ୍ଦର ଦେବ ଗୋ । ଅଇ ଅଇ ॥୪॥

ବୋଲି—

ଅକ୍ଷି କମଳ କରି ମୁକୁଳିତ
ଅର୍କ ସୁତା କୃଷ୍ଣ ରୂପ କଳିତ ॥ ୬୩ ॥

* (ଗ) କେଦାର ରାଗେଣ ଗୀୟତେ

ଆସ୍ୟ କମଳ ନେତ୍ର ଇନ୍ଦୀବର
ଆଶ୍ଳେଷେ ଇଚ୍ଛଇ ରମଣୀବର ॥ ୬୪ ॥

ଅଶ୍ରୁ ନୟନ ମୁଞ୍ଚଇ ବମନ
ଅଳି ମକରନ୍ଦ କରେ ବମନ ॥ ୬୫ ॥

ଅନ୍ତେ କୃଷ୍ଣଚନ୍ଦ୍ର ଭାବ ରମଣୀ
ଅଶ୍ରୁ ଛଳେ ଦ୍ରବେ କ ଚନ୍ଦ୍ରମଣି ॥ ୬୬ ॥

ଅଦ୍ଭୁତ କହୁଥାଅ ତୋର ବନା
ଆନ ଭୋଗେ ଇଚ୍ଛା ନୋହେ ନଗ୍ନା ॥ ୬୭ ॥

ଅନ୍ୟ ରମଣୀ ଭୋଗବନ୍ତେ ରହୁ
ଅଳ୍ପ ହୁ ମୋ ପ୍ରୀତି ଚଞ୍ଚଳ ନାହିଁ ॥ ୬୮ ॥

ଅଛି ପ୍ରତିମା ତୁ ମୋର ନିଚୟ
ଅସତ୍ୟ ହେଲ୍ଲ ଯେ ଗିର ସଚୟ ॥ ୬୯ ॥

ଆପଣ ବଷ ଦାହ କଳେବର
ଅଚ୍ଛୁ ମୁ ନିର୍ବିଷ ଶୋଭା ପ୍ରବର ॥ ୭୦ ॥

ଅହି ଦଂଶିଲେ ଅଙ୍ଗୁଳି ଅଗ୍ରରେ
ଅବପୂର୍ବ ବିଷ ବ୍ୟାପେ ବ୍ୟଗ୍ରରେ ॥ ୭୧ ॥

ଅଛୁ ଯେପରି ମାତ ଦେଖିବାର
ଅତଥ୍ୟ ଯେଣୁ ତବ କହିବାର ॥ ୭୨ ॥

ଆପଣ ମନ୍ମଥ ମନମଥର
ଅନଙ୍ଗ ସୁନ୍ଦର ଖ୍ୟାତ ଯେଥର ॥ ୭୩ ॥

ଅଙ୍କନ ଧ୍ୱଜ ଅର୍କ ରହିତରେ
ଆଲୋକବନ୍ତ ଲୋକ ରହିତରେ ॥ ୭୪ ॥

ଅମୋଘ ଦୃଢ଼ ଆୟୁଧ ନାଶରେ
ଅଙ୍ଗନା ସାଧ୍ୟ କ କୁସୁମ ଶରେ ॥ ୭୫ ॥

ଅସଙ୍ଗତ କଳା ରୂପ ସଂସାର
ଅଯୋଗ୍ୟ ରତିକ ଯୁବତୀ ସାର ॥ ୭୬ ॥

ଅଳତା ଦଳ ବଦନେ ଧରି ପଦ
ଆଟପ ବୋଇଲେ ମୋ ସୁଖ ସଂପଦ ॥୭୭॥

ଆଚ୍ଛାଦିଲ ବାସେ ନୋହେ ଉଚିତ
ଆଢୁରେ କେତେ ବନସ୍ପ ରଚିତ ॥ ୭୮ ॥

ଅରୁଣ ପଦକ ପ୍ରେ ରାଗ ପଦ
ଆଭରଣ ବନା ହୃଦ ବପଦ ॥ ୭୯ ॥

ଅମରବେ ଅନୁରାଗ ସୁମଣି
ଆନ କେ ଥାନ୍ତା ମୋ ବନା ନ ମଣି ॥୮୦॥

ଅତି ବୃଦ୍ଧ ଅନୁରାଗ କବନ୍ଧ
ଅବଶ୍ୟ ଭାଙ୍ଗିବ ହୃଦୟ ବନ୍ଧ ॥ ୮୧ ॥

ଆମ୍ବୁରେ ମାଗେ ପ୍ରେତେ କରବ
ଅଚ୍ୟୁତ ଘଟେ ଜୀବନ ଭରିବ ॥ ୮୨ ॥

ଆସି କରୁଣ ରସ ମୂର୍ତ୍ତିବନ୍ତ
ଅଟେ ପ୍ରେ ରସେ ସମାଧି ଦୈବତ ॥ ୮୩ ॥

ଅଙ୍ଗ ତାଙ୍କ ପୋତ ବର୍ଣ୍ଣ ରଚନ
ଅନୁଭବ ଦେବ ନନ୍ଦା ବଚନ ॥ ୮୪ ॥

ଅବମା ପତନ ଆଦି ରୋଦନ
ଅଙ୍ଗ ବୈବର୍ଣ୍ଣ ମାରସ ବଦନ ॥ ୮୫ ॥

ଅଧିକ ଉଶ୍ବାସ ଶ୍ବାସ ପ୍ରଳାପ
ଅବିରତରେ ଜନତ ବଳାପ ॥ ୮୬ ॥

ଆଗତ ପ୍ରେ ସମୟେ ପୂର୍ଣ୍ଣମାସୀ
ଆଳାପ କଲ ପରେ ପୂର୍ଣ୍ଣମାସୀ ॥ ୮୭ ॥

ଅଷପୂ କୃଷ୍ଣଚନ୍ଦ୍ରର ପ୍ରକାଶ
ଅମୃତ ଅବ୍ଧି କର୍କଟେ ନକାଶ ॥ ୮୮ ॥

ଆଜ ମୃଳ ଧନ୍ୟ ଚନ୍ଦ୍ର ମାତାର
ଅସ୍ତମ ନିଧନ ଦୁର୍ବକତାର ॥ ୮୯ ॥

ଅଙ୍ଘ୍ରି ବନ୍ଧ ସର୍ବେ କଲେ ପ୍ରଶ୍ନ
ଆରାଧ ସେ ବୋଲେ ବିଶ୍ୱକସେନ ॥ ୯୦ ॥

ଅନ୍ତର କଣ୍ଠ ପୁଚ୍ଛେ ଭଗବନ୍ତ
ଆଶ୍ରୟରେ ତଥା ସେ ଦେବ ସୁବନ୍ତ । ୯୧ ।

ଆରାଧି ପୁନ ଶ୍ରୀବରେ ଶରଣ
ଆରମ୍ଭି ଗୀତ ଶଙ୍କରାଭରଣ ॥ ୯୨ ।

—ଗୀତ—

(ରାଗ – ଶଙ୍କରାଭରଣ)

ଆହେ ଅନଙ୍ଗ ପର । ଅନନ୍ତ ଗୁଣ ଅନନ୍ତ ଉରେ ହାର ॥ ପଦ ॥
ଅଟ ଦେବଙ୍କର ଦେବ ଶଶି ଶିର । ଆଜ୍ଞାରେ ବରଷୁ ସୁଧା ସୁନାଶିର ॥ ୧ ॥
ଅପାର ଅକୂପାରର ହେଷ ପାର । ଅସିତ କଣ୍ଠ ଯଶରେ ତତପର ॥ ୨ ॥
ଅଚ୍ୟୁତ ବିଷମ ବିଷ ହର ହର । ଆନନ୍ଦ କର ଦେବ କନ୍ଦର ନର ॥ ୩ ॥
ଆଲୋକ ପ୍ରେ କର କ୍ଷଣେ ହେନ ମୁଦ । ଅମୃତ ପତନ କରୁ କି ଉମୋଦ ॥ ୪ ।
ଅନ୍ଧ ବାଧା ଖଣ୍ଡ ଗୋବନ୍ଦ ରବ । ଶରଣ ପଶେ ଶ୍ୟାମସୁନ୍ଦର ଦେବ ॥ ୫ ।

ବୋଲି* —

ଅନ୍ତବୃତ୍ତି କେ ପ୍ରତିଜ୍ଞା ନିଧାନ
ଆଣି ଗଦ ମନ୍ତ୍ର କରେ ବିଧାନ ॥ ୯୩ ॥

ଅଚ୍ୟୁତ କାଳପୁ ଭୋଗ ବନ୍ଧରେ
ଅଧିକ ବୃଷ ପ୍ରଷ୍ଠକକୁ ଧରେ ॥ ୯୪ ॥

ଅନ୍ତ ଭଗ୍ନୋନ ମୁକ୍ତ ବନ୍ଧନ
ଉଦଶନ ଦଂଶି ହୋଧ ବର୍ଦ୍ଧନ ॥ ୯୫ ॥

---

* ଶ୍ରୀମଦେନବଦୌଙ୍କତ୍ୟାମ୍ନଶ୍ଳାଘି ବେଷକୈତବାଦ ଯୁକ୍ତ ଧୀରୋଧଦ୍ଧଃ । (ପୋଥି ଟୀକା)

ଅମର ଗିରି ଯଥା ସୁର ନାଗ
ଅନ୍ତ କଳ୍ପଲେ ତେମନ୍ତ ସ୍ପେ ନାଗ ॥ ୯୬ ॥
ଅଚ୍ୟୁତ ଯେ ଧୀରୋଦ୍ଧତ ଲକ୍ଷଣେ
ଆଣ୍ଟରେ ତାଳ ପ୍ରହାର ସେକ୍ଷଣେ ॥ ୯୭ ॥
ଆରେଷ୍ଟ ରଙ୍ଗଭୂମି ମସ୍ତକରେ
ଅଟେ କ କୁଟ୍ଟିମ ମଣି ପ୍ରକାରେ ॥ ୯୮ ॥

ଶ୍ଳେଷ—

ଅମୃତ ବୃଷ୍ଟି କରେ ଆଖଣ୍ଡଳ
ଆନକ ଧ୍ୱନ ଆକାଶ ମଣ୍ଡଳ ॥ ୯୯ ॥
ଅମ୍ବୁଭୂକ ବୃନ୍ଦ କୃଷ୍ଣ ଉଲ୍ଲାସ
ଅଚଳ ଶିଖରେ ରଚେ କ ଲାସ୍ୟ ॥ ୧୦୦ ॥
ଅଟେ ଫଣି ମଣି ବିଦ୍ୟୁତ ଦ୍ୟୋତ
ଆଭରଣ ରତ୍ନ ବ୍ରାତ ଖଦ୍ୟୋତ ॥ ୧୦୧ ॥
ଅନେକ ଗିରି ଶୃଙ୍ଗ ଫଣା ବାର
ଆରେଷ୍ଟ ନାଟ ରଚ ବାର ବାର ॥ ୧୦୨ ॥
ଅଚ୍ଛି ପୁଚ୍ଛ କେକୀ ପିଚ୍ଛ ଅଟେ କ
ଆପେ ଧରି କରେ ନାଚନ୍ତି ଟେକ ॥ ୧୦୩ ॥
ଅମ୍ବୁ ମଣି ନବ ଦ୍ୟୁମଣି କରେ
ଅରବିନ୍ଦ ପଦ ବିକାଶ କରେ ॥ ୧୦୪ ॥
ଅପୂର୍ବ ନୃତ୍ୟ ନରେଷି ନୟନ
ଆକାଶେ ଗନ୍ଧର୍ବ ଗୀତ ଗାୟନ ॥ ୧୦୫ ॥

—ଗୀତ—

( ରତ୍ନମାଳା କେଦାର ରାଗେଣ ଗୀୟତେ )

ଆଜ ରାଜେ ହରି ନର୍ତ୍ତନରେ । ଅକ୍ଷି ଠାରେ କରି ଅର୍ଚ୍ଚନରେ ॥୧॥
ଅଙ୍ଘ୍ରିର ନୂପୁର ରଣିତରେ । ଅନଙ୍ଗ ଢେଙ୍କୁରି ମଣି ତରେ ॥୨॥

ଅପସର ଧୀର ଦୂରତରେ । ଆପୀଡ଼ିତ କାମ ଦୂରନ୍ତରେ ॥ ୩ ॥

ଅଭ୍ରମତ କର ସୁରତରେ । ଆମନ୍ତ୍ରନ ସୁର ସରତରେ ॥ ୪ ॥

ଆଘାଣ ନପୁନ ଉତ୍ସବରେ । ଅଲୋକନେ ଆନ ତୁଚ୍ଛ ବରେ ॥ ୫ ॥

ବୋଲି—

ଆପେ ରାଧା ଯେନ ବପୁଶ୍ରୀ ବାର
ଅଞ୍ଜନ ପୂର୍ଣ୍ଣମାସୀଙ୍କ ଦେବାର ॥ ୧୦୬ ॥

ଅକ୍ଷିରେ ରଞ୍ଜି ଶୋଭା ନର୍ତ୍ତନର
ଅବଲୋକେ ମନୋହର ମନର ॥ ୧୦୭ ॥

ଅଭି ଗୁଚ୍ଛତ:ରେ ପଦ କମଳ
ଆସ୍ୟ ଚୁମ୍ବିରେ ଯମୁନା ଧୂମଳ ॥ ୧୦୮ ॥

ଆସି ସ୍ତବ ରଚେ ନାଗରମଣୀ
ଅନୁକ୍ରୋଶ ଗୋପ ନାଗରମଣି ॥ ୧୦୯ ॥

ଅଧୁନା କହିଲେ ଯମୁନା ତେଜ
ଅସହ୍ୟ ନାଗର ହରିର ତେଜ ॥ ୧୧୦ ॥

ଅବଲୋକଲେ ଶିରେ ବନ୍ଧୁ ପଦ
ଅଧିକେ ଦ୍ୱିଜରାଜ ସୁଖପ୍ରଦ ॥ ୧୧୧ ॥

ଅନ୍ତ ରସନା ସୋପାନେ ଚରଣ
ଅବରୋହି ପଦ୍ମ ପରେ ଧାରଣ ॥ ୧୧୨ ॥

ଅରି ଯୁଗେ ପଗଭଙ୍ଗ ଜଟିତ
ଆଭରଣ ମଣି ରତ୍ନେ ଅର୍ଚ୍ଚିତ ॥ ୧୧୩ ॥

ଅର୍କ ନନ୍ଦନା ରହିତ ନାଗରେ
ଆସ୍ୟ ନଳିନ ମଳିନ ବେଗରେ ॥ ୧୧୪ ॥

ଅନେକ ଯେ ମୃତ ପକ୍ଷୀ ପଣବ
ଅମୃତ ବଳେ ସଜୀବ ସେ ଶବ ॥ ୧୧୫ ॥

ଅଧୀଶ୍ୱର ଯେଣୁ ହରି କମଳେ
ଅନାୟାସେ ବଶ ଥିଲେ କମଳେ ॥ ୧୧୬ ॥

ଅର୍କ ସୁତା ତୀର ପୂର୍ବ ତଟତ
ଅକ୍ଷୀଣରେ କୃଷ୍ଣଚନ୍ଦ୍ର ବତ ॥ ୧୧୭ ॥
ଆନନ୍ଦତ ପ୍ରିୟା ଗୋପୀ କୁମୁଦ
ଆଗ୍ଧାର ପିତର ଚକୋର ମୁଦ ॥ ୧୧୮ ॥
ଶ୍ଳେଷ —
ଅସ୍ତ ଗାନବନ୍ଧୁ ପ୍ରେ ସମୟରେ
ଆନନ୍ଦଦା ନଶାଚର ଚମୂରେ ॥ ୧୧୯ ॥
ଆସି ବଣ୍ଟ ପ୍ରଦୋଷରେ ଦୁଷିତ
ଅବମା ସୂର ମନ୍ତେ ବନାଶିତ ॥ ୧୨୦ ॥
ଅନ୍ଧକାର ଆସି ବ୍ୟାପେ ବପିନ
ଆଖିର ସବେ ରହିଲେ ବପିନ ॥ ୧୨୧ ॥
ଅର୍ଦ୍ଧ ନଶା ତଥ ଦେଖେ ଗସ୍ୱର
ଆଲୋକ ପୂରିତ ବଶ୍ୱବସ୍ୱର ॥ ୧୨୨ ॥
ଅଦ୍ଭୁତ ଦେଖି ସକଳେ ଆକୁଳ
ଅଗ୍ରେ ଉଭା ହେଲେ ପୀତ ଦୁକୂଳ ॥ ୧୨୩ ॥
ଅପସରି କୃଷ୍ଣ ଦରଶନରେ
ଅବସ୍ଥିତ ସିନ୍ଧୁ ହୃତାଶନରେ ॥ ୧୨୪ ॥
ଅଦ ରମଣୀର ପ୍ରାଚୀ ଲପନ
ଅରୁଣ ତଥ କୁଙ୍କୁମ ଲେପନ ॥ ୧୨୫ ॥
ଆଲୋକ କମଳ ଯୋନ ହସିଲେ
ଅପବାଦ ଗ୍ରହ କାକ ଘଷିଲେ ॥ ୧୨୬ ॥
ଆଳସ୍ୟକୁ ସଂଙ୍ଗ ଉତ୍ସୁକ ମନ
ଆଗତ୍ଯ ଯଶୋଦା କଲେ ଗମନ ॥ ୧୨୭ ॥
ଆକୁଳ ତନୟ ଉପବାସରେ
ଅରଣ୍ୟେ ରହିଲେ ଉପବାସରେ ॥ ୧୨୮ ॥
ଆପଣେ ପେଷିଲେ କୁନ୍ଦଲତାକୁ
ଆଣ କହି ବୃଷଭାନୁ ସୁତାକୁ ॥ ୧୨୯ ॥

ଆଗତ କୃଷ୍ଣ ବିଷୟ ଆରତେ
ଆପଦ କହେ ଜଟିଳା ପୁରତେ ॥ ୧୩୦ ॥

ଅଙ୍ଗୀକାରକୁ ଯେନ ଅବାଧାରେ
ଅଟବୀରେ ସଙ୍ଗ କହେ ରାଧାରେ ॥ ୧୩୧ ।

ଆନନ୍ଦେ ଗମନ ନନ୍ଦ ନିବାସ
ଆସେ ନନ୍ଦ ଯେନ ଜଗନ୍ନିବାସ ॥ ୧୩୨ ॥

ଅବକାଶ ଦୂତ ଉଗାଳେ ସ୍ୱରେ
ଅମ୍ବୁଜ ଯେନ ଚଳ ମଧୁପୁରେ ॥ ୧୩୩ ॥

ଅଚ୍ୟୁତ ଅଭିଷ୍ଟ ରାଧା କେଳିରେ
ଆକାଶ ବ୍ୟାପକ ଘନାବଳିରେ ॥ ୧୩୪ ॥*

ଆସି ଘଷ୍ଟେ ଦେଖି ଆଳି ବୃନ୍ଦରେ
ଆତ୍ମଜ ରାଧେ ପ୍ରବେଶ ଗୃହରେ ॥ ୧୩୫ ।

ଅମ୍ବର ମେଘରେ ମେଦୁର ତମ
ଅରଣ୍ୟ ଭୂବ ତମାଳରେ ତମ★॥ ୨୩୬ ॥

ଅନ୍ଧକାରକୁ ସ୍ୱେ ଡରେ ବଧିରେ
ଆଦେଶ ନନ୍ଦର ପାଇ ସଧୀରେ ॥ ୧୩୭ ॥

ଅର୍କଜା ତୀର ମାର୍ଗ କୁଞ୍ଜେ ରହେ
ଅଚ୍ୟୁତ ରାଧା କେଳି ରତେ ରହେ ।୧୩୮।

---

* ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଳଦ୍ରୁମୈ-
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ! ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଳିତୟୋଃ ପ୍ରତ୍ୟଧ୍ୱକୁଞ୍ଜଦ୍ରୁମମ୍
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ ॥ ୧ ॥
(ଗୀତଗୋବିନ୍ଦେ) (ପୋଥିପାଠ)

★ 'କ' ପୋଥିରେ ଦ୍ୱିତୀୟ ପାଦ ନାହିଁ ।

ଆପେ କୁଚ ଶମ୍ଭୁ, ଧରି ଶପଥ
 ଅଛୁ କି ଦୋଷ ପାଞ୍ଚ ହୃଦ ପଥ ।। ୧୩୯ ।।

ଅଧରେ ହସ୍ତ ଚତୁର ମୁଖରେ
 ଆବେଗେ ସୁଧା ଚତୁର ମୁଖରେ ।। ୧୪୦ ।।

ଅବାଧା ଅନଙ୍ଗ ଆସି ବଷରେ
 ଅନଙ୍ଗ ପ୍ରେମ ଭରେ ଆସି ବସରେ ।୧୪୧।।

ଆସି ସୁବଳ ଆଭରଣ ମଣି
 ଅର୍ପିତ ଦେବାର ଅଷ୍ଟ ରମଣୀ ।। ୧୪୨ ।।

ଆମନ୍ତ୍ରନ ପ୍ରେଷ୍ଠା କଲେ ଚନ୍ଦ୍ରିଷ୍ଟା
 ଆଣେ ମଧୁରୁ ଭୋଜନ ଧନିଷ୍ଠା ।। ୧୪୩ ।

ଆନନ୍ଦ ଲଜ୍ଜାରେ କାମି କାମିନୀ
 ଅମ୍ବୁଦ ପଛେ କି ସଉଦାମିନୀ ।। ୧୪୪ ।।

ଆସନ୍ନେ ଲୋକ ନୟନ ସମ୍ମତି
 ଆଶ୍ଚର୍ଯ୍ୟ ମଣିଲେ ନବ ଦମ୍ପତି ।। ୧୪୫ ।।

ଅମୃତାଂଶୁ ସେ ମୁଦ ସର୍ବ ଗାବେ
 ଅସୁଖଦା ଚନ୍ଦ୍ରାବଳୀ ରାଜବେ ।। ୧୪୬ ।।

ଆସି ପୁରର ମିତ୍ରଂ ଦେଖି ସୁଷମ
 ଆଦର ମାତା ପୁତ୍ର ବଧୂ ସମ ।। ୧୪୭ ।।

ଅପୂର୍ବ ପାକେ ତୋଷି ମୁର୍ବବଳ
 ଅଗ୍ରଜାଦି ହେଲେ ହରଷବନ୍ତ ।। ୧୪୮ ।।

ଆସେ ଜୃମ୍ଭିକା ତାମ୍ବୁଳ ଦେବାଠରେ
 ଅଛନ୍ତି ରକ୍ତପଦ୍ମକ ସେବାରେ ।। ୧୪୯ ।।

ଅଚ୍ୟୁତ ଭୁକ୍ତ ଶେଷ ଘେନ ଯାଇ
 ଆପେ ଧନିଷ୍ଠା ରାଧାଙ୍କୁ ଭୁଞ୍ଜାଇ ।। ୧୫୦ ।।

ଅମ୍ବୁଜ ଘେନାଇ ସହସ୍ର ଭାରେ
 ଆସେ ନନ୍ଦ ଦେଇ ନୃପ ସଭାରେ ।। ୧୫୧ ।

ଆଣିମାର ଖଣ୍ଡ ପଦ୍ମ ବକାରେ
ଆମ୍ବଜ ଛାଡ଼ିଲ୍ଲ ବନ୍ଧୁ ଡ୍ରକାରେ ॥ ୧୫୨ ॥

ଆଦର ସମ୍ମାନ* ଭାନୁ ଜେମାରେ
ଅମ୍ବର ଭୂଢାଦ୍ଧ ଦ୍ୟୁ ସୁଷମାରେ ॥ ୧୫୩ ॥

ଅନେକ କନ୍ଦ୍ବବ ଶ୍ରମୁ ଆଳାପ
ଅଘୋରେ ପେଷିଲେ ଶୋଭା କଳାପ ।୧୫୪।

ଅରଣ୍ୟେ ବନେ ସଖା ମେଳେ ହରି
ଆମ୍ର ଆଦ୍ଧ ଭୁକ୍ତ ଲୀଳା ବହ୍ନରି ॥ ୧୫୫ ॥

ଅଭ୍ୟାନ୍ତର ନାନ୍ଥିଁ କବଳେ ଖାଇ
ଅତି ମଧୁର ଆନକୁ ଚଖାଇ ॥ ୧୫୬ ॥

ଆସେ ଋଷିଚୟୁ ମନ ପ୍ରମନ୍ଥେ
ଆକାଙ୍କ୍ଷା କରି କୃଷ୍ଣ ଦରଶନେ ॥ ୧୫୭ ॥

ଅଭିନ୍ନ ରୂପ ଦେଖି ପ୍ୟେକାଗ୍ରର
ଅଚ୍ୟୁତ ନାହାନ୍ତ୍ର କଲେ ବଗ୍ରର ॥ ୧୫୮ ॥

ଅଖିଳ ନାୟକ ଆଜ ନାଗତ
ଅଭାଗ୍ୟ ନେବେ ନୋନ୍ଥିଲେ ସଙ୍ଗତ । ୧୫୯।

ଅଧୋକ୍ଷଜ ଜ୍ଞାନ ଅନୁବାଧରେ
ଆରମ୍ଭ ପଞ୍ଚସାନ୍ଦ୍ର କପର୍ଦ୍ଦରେ ॥ ୧୬୦ ॥

ଅର୍ଭକ ପ୍ରାକୃତ ଖେଳ ବଗୃର
ଆକାଶ ମାର୍ଗେ ଋଷି ପଥଗୃର ॥ ୧୬୧ ।

ଅଷ୍ଟ ଲୋଚନେ ସର୍ବ ନିବେଦନ
ଆଳାପ ତା ଶୁଣି ବେଦ ବଦନ ॥ ୧୬୨ ।

ଆଶିଷ୍ୟ ଦେଇ ଘେନ ନମସ୍କାର
ଅସିଲ ହରି କଲେ ପୁରସ୍କାର ॥ ୧୬୩ ॥

ଅନ୍ତର୍ ପାଞ୍ଚବ ରୁ ଅପ୍ରକଟ
ଆଚରି ପୂର୍ବେ ଲଭିଲ ସଂକଟ ॥ ୧୬୪ ॥

---

* ସନ୍ମାନ (ପୋଥିପାଠ)

ଅନେକ ଜ୍ଞାନ ବିସ୍ତାର ଖେଳରେ
ଆପେ ବୁଝାଇଲେ ଋଷି ମେଳରେ । ୧୬୫ ।
ଅବମା ଦେବେ ଧାତା ପ୍ରଶଂସିତ
ଆମ୍ଭେ ହେଲୁ ତପ ଗର୍ବେ ଦୂଷିତ ।।୧୬୬।।
ଆପଣେ ବେଧା ପେଷିଲେ ନାରଦ
ଆଶ୍ରର କନ୍ୟାରେ ହେବ ବରଦ । ୧୬୭ ।
ଅନନ୍ତ ଦଣ୍ଡକ ଋଷି ଧାମରେ
ଅବଶ ସେ ରାମ ଅଭିରାମରେ ।। ୧୬୮ ।।
ଅଷ୍ଟ ବର ଦେବେ ସେ ଯୁଗେ ବର
ଆପେ ନବାଢ଼ ତା ତପୀ ପ୍ରବର ।। ୧୬୯ ।।
ଆଜଠାରୁ ତୁମ୍ଭେ ଋଷି ବ୍ରଜରେ
ଆସ୍ଥିତ ଗୋପାଳ ମନ୍ତ୍ରରାଜରେ ।। ୧୭୦ ।
ଅନୁଜ୍ଞା ଘେନ ଆସୁଁ ପଥେ ଚଳ
ଆଲୋକରେ ସୁଖୀ ବିଷୟ କଳ ।। ୧୭୧ ।।
ଅନନ୍ତ ପୁଣ୍ୟ ନାମ କୀର୍ତ୍ତନରେ
ଅନାୟାସେ ମୋକ୍ଷ ଲଭ ଜନରେ । ୧୭୨ ।*
ଅଟେ ସାଧୁ ମାତ୍ର ଗୁଣ ଲେଶକୁ
ଆଦର ମୁଞ୍ଚନ୍ତି ବହୁ ଦୋଷକୁ ।। ୧୭୩ ।।
ଆପଣେ କଷ୍ଟେ ସଂଗ୍ରହ କଲକ
ଆଖ୍ୟା ସଂକଟାହା ସାର ପାଳକ ।। ୧୭୪ ।
ଅପି ସେ ସମୟେ ଭଗବଣ୍ଟରେ
ଅଟଣ୍ଡ ଦେଖ ଜଟୋନ୍ତି ନଡରେ ।। ୧୭୫ ।।
ଅବୋଧ ଗୋପକନ୍ୟା ନିବହରେ
ଅତ୍ୟୁତ କେନ୍ତ ଭେଟିବେ ରହରେ ।। ୧୭୬ ।।

---

* କଳେର୍ଦୋଷ ନିଧେରାଜନ୍ନସ୍ତି ହ୍ୟେକୋ ମହାନ୍ ଗୁଣଃ ।
କୀର୍ତ୍ତନାଦେବ କୃଷ୍ଣସ୍ୟ ମୁକ୍ତବନ୍ଧଃ ପରଂ ବ୍ରଜେତ ।।୧।।
(ଶ୍ରୀ ଭାଗବତେ ।। ପୋଥିପାଠ )

ଅଙ୍ଗେ ଜଡ଼ବା ସେଁନେହ ବଳାନ୍ତି
ଆଦରର ଯୋଗେ ପଡ଼ିଲେ ପଳାନ୍ତି ।୧୭୭॥
ଅଧିଷ୍ଠା ତାତ ମାତଙ୍କର ବର
ଆନ ନୋହିବ କୃଷ୍ଣ ବିନା ବର ॥ ୧୭୮ ॥
ଆକଳ୍ପରେ ପୋଷେ ନନ୍ଦ ବାସରେ
ଆସନ୍ତି ହୋଇ ଆନନ୍ଦ ବାସରେ ॥ ୧୭୯ ॥
ଅପସର ସର ନୋହେ ରୂପରେ
ଆତ୍ମଜ ସ୍ନେହ ବର କ ରୂପରେ ॥ ୧୮୦ ।
ଅଚିରା ଦେବୀର ଶୁଣି ଆଖ୍ୟାନ
ଅନ୍ତରେ କଲେ ଦେବ ଋଷି ଧ୍ୟାନ । ୧୮୧॥
ଅନ୍ତକେ ମିଳନ୍ତେ କଲେ ଅର୍ଚ୍ଚନ
ଆପଣେ କହିଲେ ବେଧା ବଚନ ॥ ୧୮୨ ॥
ଆଳାପ ଦେବୀର ସେହି କାରଣ
ଆମ୍ଭେ ଭକ୍ତ କେ କଲୁ ସୁମରଣ ॥ ୧୮୩ ॥
ଆତୁର ଭୟୁ ଯେନ ଶେଷ ଯେ ଯୁଗ
ଅନ୍ତରେ ବା ଚିତରେ କରବ ଯୁଗ ॥ ୧୮୪ ॥
ଅଙ୍ଗନା ଭାବରେ ଭଜ ଭାବିଲେ
ଅଙ୍ଗେ ଗାନ୍ଧର୍ବିକା ମନ୍ତ୍ର ନ୍ୟାସିଲେ । ୧୮୫ ।
ଆରାଧି ବୃନ୍ଦାଙ୍କୁ ରାଧା କୁଣ୍ଡରେ
ଆମନ୍ତ୍ରଣେ ନାରୀ ଭାବ ଖଣ୍ଡରେ ॥ ୧୮୬ ।
ଆପଣେ ନାରଦ ନାମକୁ ପାଇ
ଅନୁସରେ କନ୍ୟା ମିଳନ ପାଇଁ ॥ ୧୮୭ ॥
ଅନ୍ତେ ଚମ୍ପ ଶ୍ୟାମସୁନ୍ଦର ଦେବ
ଆଲପିତ ଶ୍ୟାମସୁନ୍ଦର ଦେବ ॥ ୧୮୮ ॥

## — ଚତୁର୍ଥ କୁସୁମ —

### ॥ ପ୍ରଥମ ଛାନ୍ଦ ଲେଖନ ॥

( ରାଗ – ବରାଡ଼ି । ଗୋପଜୀବନ ବାଣୀରେ )

ଅଳଙ୍କାର ରୀତି ଶୁଣ　　ବୁଧ ମେଧାବୀ ସଗୁଣ
ନିପୁଣ ଯେ ସାହିତ୍ୟେ ପ୍ରମାଣ
ଆସନ୍ତି ଗୋପ କୁମାରୀ　　ଅଭିନବ ସୁକୁମାରୀ
ପୁଷ୍ପେ କରି କବରୀ ନିର୍ମାଣ ସେ
ଅଙ୍ଗଶୋଭି !
ଅବନୀର ହୋଇ ଆଭରଣ,
ଅଦ୍ଭୁତ ଶୋଭା ଧାରଣ　　ରଣ ନୂପୁର ଚରଣ
ଡାକେ ନିଷ୍ଟେ ରଣ ରଣ ରଣ ସେ ॥୧॥

ଶ୍ଳୋକଃ —

ଅଳଙ୍କାରସ୍ତୁ ଭାବ-ହାବ-ହେଳା ସ୍ତ୍ରୟୋଙ୍ଗଜା ।
(ଇତି ସାହିତ୍ୟେ)

ଭାବ—

ଅବିକାର କାହା ଚିତ୍ତ　　ଚିତ୍ତଜ ହୋଇ ଆଗତ
ପୀଡ଼ିବାରୁଁ ଛନ ଛନ ମନ
ଆକରଷଣରେ ଭୂତ　　ଯଥା ଅନର୍ଥ ସଂଭୂତ
ସଙ୍ଗ ଦୋଷେ ସଜ୍ଜନ ଶମନ ସେ
ଅଙ୍ଗଶୋଭି !
ଆଶୁଗ ମନ୍ଦ କୋକିଳ କଳ,
ଅଙ୍କୁରିତ ଯଉବନୀ　　ଭାବ ବୁଦ୍ଧି ସଂଜୀବନୀ
କୃଷ୍ଣ ପ୍ରେମ ଧନ ତା ସକଳ ସେ ॥୨॥

ହାବ—

ଅଚ୍ୟୁତ ଅବଲୋକନ          କନକାଙ୍ଗୀର ପ୍ରେମ ମନ
ଉଦ୍‌ବେଗ ବେଢାଇ ବିଗଳ କରେ
ଅପାଙ୍ଗ ଶରକୁ ଭ୍ରୂନ୍ତୁ          ଶରାସନେ ସନ୍ଧି ଧିନ୍ତୁ
ବିନ୍ଧିଲା କି ବେଗରେ ବକ୍ଷରେ ସେ
ଅଙ୍ଗଶୋଭି !
ଅନାଲୋ କୃଷ୍ଣ ବିଘାତ ଲଭି,
ଆନନ ପୋତି ହସରେ          ପୁନ ପାଲଟି ହରରେ
ବକ୍ର ଗ୍ରୀବେ ବିଲୋକେ ବଲ୍ଲଭି ସେ ।୩।

ହେଳା—

ଆସୁ କେ ଦେଖି ହରିକ          ଫେଡ଼ି ବାନ୍ଧେ କବରୀକ
ଆଲିଙ୍ଗନ ବିଭ୍ରମ ଆନରେ
ଅଳପ ଦେଖାଇ ସ୍ତନ          ସଂସ୍ପୃଷ୍ଟକେ ଭରେ ମନ
ଦୃଢେ ନୀବି ବାନ୍ଧେ ଯତନରେ ସେ
ଅଙ୍ଗଶୋଭି !
ଅଙ୍ଗ ସୁଖ ଭଙ୍ଗୀ ସରଜଇ,
ଅଙ୍ଗୁଳି ଚିବୁକେ ଦେଇ          ଗୃହେ ଝଲକା କମ୍ପାଇ
କାଢ଼ି ପାଦେ ନୂପୁର ଖଞ୍ଜାଇ ସେ ।୪।

ଶ୍ଳୋକଃ —

ଶୋଭା କାନ୍ତିଶ୍ଚ ଦୀପ୍ତିଶ୍ଚ ମାଧୁର୍ଯ୍ୟଂ ଚ ପ୍ରଗଲ୍‌ଭତା
ଔଦାର୍ଯ୍ୟଂ ଧୈର୍ଯ୍ୟମିତ୍ୟେତେ ସପ୍ତୈବ ସ୍ୟୁରଯତ୍ନଜାଃ ॥
(ଇତି ସାତ୍ତ୍ୱିକ୍ୟ)

ଶୋଭା—

ଆସି ବୟଃସନ୍ଧ ସନ୍ଧ     ହୀନ ପୀନ କୁଚ ବୃଦ୍ଧି
ହେଲା ବଧି ରୂପାସ୍ତୁ କାମରେ
ଅଙ୍ଗ ଯୌବନ ଶୋଭାରେ     ଶାଣିତ ହେଲା ବେଭାରେ
ହର ନକ ଅରହ ସମରେ ସେ
ଅଙ୍ଗଶୋଭା
ଅକ୍ଷି ପକ୍ଷୀ ବନ୍ଦୀ କି ପଞ୍ଜର,
ଆଭରଣେ ରତ୍ନ ମୋତି     ଥିବାରୁଁ ସୂଚନୁ ଖ୍ୟାତି
ଧଡ଼ିରୁ ବସନ ହେମ ଜରି ସେ ।୫।।

କାନ୍ତି—

ଅନୋପମା କଜ ସମା     ଘଉଡ଼ାଇଲା ଉପମା
କାନ୍ତି ଲଭିବାରୁଁ ରଭସଂରେ
ଆସ୍ୟ ଝଳ ସୁଷମାରେ     ଢ଼କା ପଦ୍ମ ଚନ୍ଦ୍ରମାରେ
ମାର ଭୃପେ ଭ୍ରୁରୁ ବଳାସରେ ସେ
ଅଙ୍ଗଶୋଭା !
ଅକ୍ଷି ଚଟକ ଚଞ୍ଚଳେ ଶ୍ରେଣୀ କି,
ଆଲୋଚନା କୃଷ୍ଣକାନ୍ତ     ସ୍ୱେ କାନ୍ତି ଯୋଗ ସ୍ୱେକାନ୍ତ
ଶୁଭ ଲାଭ ହେବାର ସ୍ୱେଣିକ ସେ ।।୬।

ପ୍ରାପ୍ତି—

ଆସି ଲାବଣ୍ୟ ଯୌବନ     ମଦନ ମଦ ସୁବର୍ଣ୍ଣ
ଚୂର୍ଣ୍ଣ ସମ୍ପଦକୁ ଅଣ୍ଟି ପାଇ
ଅନଙ୍ଗ ଚତୁର ବର୍ଗ     ଲଭି ସତ୍ୟଲୋକେ ବେଗ
ବୀରପ୍ରଭା ନୋହିବ କପାଇଁ ସେ
ଅଙ୍ଗଶୋଭା !
ଅନର୍ଥ ସ୍ୱେ ଜାଣ ସ୍ୱେକ ସ୍ୱେକ,
ଅଦ୍ଭୁତ କି ଯୁବା ଧୀର     ବଶ୍ୟର ସ୍ୱେ ସ୍ମର ଦୂର
ମଣି ମନ୍ତ୍ର ଔଷଧି ପ୍ରାପ୍ତେକ ସେ ।।୭।।

ମାଧୁର୍ଯ୍ୟ—

ଅଟବୀ କୁଞ୍ଜରେ ଲୁଚି    ଯୁଗଳେ ଖେଳନ୍ତି ପୂଚି
କିଙ୍କିଣୀ ରଟେ ଚଳି ଜଘନ
ଆନନରୁ ସ୍ୱେଦ ଗଳି    ମଣ୍ଡନ ହୋଇଛି ଧୂଳି
ଅସ୍ତବ୍ୟସ୍ତ ସୁଅଳକା ଘନ ସେ
ଅଙ୍ଗଶୋଭା !
ଅପଲକ ନେତ୍ର ଶୁଦ୍ଧଁ ହରି,
ଅତନୁ ଶରେ ତାପିତ    ଚନ୍ଦ୍ରମା ଅଙ୍କ ଦୂଷିତ
ହେଲେ ହେ ଚକୋର ମନ ହରେ ସେ ।୮।

ପ୍ରଗଲ୍‌ଭତା—

ଆଲୋକ କୃଷ୍ଣ ମୂରତି    କେ କାମେ ହେଳା କରନ୍ତି
ଆନ ରାମା କୁଚ ଧରି କରେ
ଆଶ୍ଳେଷରେ କରେ ମର୍ଦ୍ଦନ    ଅଧରେ ପୀଡ଼ି ରଦନ
ମୁଖ ମଣ୍ଡେ ଚୁମ୍ବନ ନକରେ ସେ
ଅଙ୍ଗଶୋଭା !
ଉଚ୍ଛ୍ୱାସ କରିଣ ପ୍ରକାଶ,
ଆଶ୍ଳେଷ ଦେଇଣ ଶ୍ଳେଷେ    କହେ ଦହେ ସୁକଣ୍ଠେ ସେ
ଶୁଚି ରସ ଶୁଚିର ସଂକାଶ ସେ ।୯।

ଔଦାର୍ଯ୍ୟ—

ଅଧୀର କେ ଧୀର ଗତି    ମଦନେ ହୁଅନ୍ତି ଅତି
ଆନ ରୋଷେ କରନ୍ତେ ତର୍ଜନା
ଅରୁଣ ନ କଲା ନେତ୍ର    ଧରି ଲୀଳା ଶତପତ୍ର
ନ ପ୍ରହାର ବନସ୍ତୁ ସର୍ଜନା ସେ
ଅଙ୍ଗଶୋଭା !
ଅଳକା ସେ ଅଶୋଭା ତାହାର,
ଆପଣା ନଖରେ ମାଙ୍ଗ-    ଭଙ୍ଗକୁ ସାମଳ ବେଶ
କହିଲକ ମଧୁର ବ୍ୟାହାର ସେ ।୧୦।

ଧୈର୍ଯ୍ୟ—

ଅଭିନବାଙ୍ଗନା ଅଙ୍ଗ ଅନଙ୍ଗ ସାୟକ ସଙ୍ଗ
ଶରବ୍ୟରେ ଶୂନ୍ୟ ଉପାସଙ୍ଗ
ଅସମ୍ଭାଳ ହୋଇଁ ବାଳ ରହିଲ ପଥେ ସମ୍ଭାଳି
ଅପ୍ରକଟ ବିକାର ପ୍ରସଙ୍ଗ ସେ
ଅଙ୍ଗଶୋଭି !
ଅନଳ ଦହନ୍ତେ ତା ସହିଲ,
ଅଶନ ପତନ ବନ ପ୍ରିୟ କୋଳେ ନୋହି ଛନ୍ନ
କୃଷ୍ଣ ଚିନ୍ତା ନିବାସେ ରହିଲ ସେ ।।୧୧।

ଶ୍ଲୋକଃ—

ଲୀଳାବିଲାସୋବିଚ୍ଛିତ୍ତିର୍ବିଭ୍ରମଃ କିଲକିଂଚିତମ୍
ମୋଟ୍ଟାୟିତଂ କୁଟ୍ଟମିତଂ ବିବ୍ବୋକୋ ଲଳିତଂ ତଥା
ବିହୃତ ଚେତି ବିଜ୍ଞେୟୋ ଦଶସ୍ତ୍ରୀଣାଂ ସ୍ୱଭାବଜାଃ ।
(ଇତି ନାଟ୍ୟଲୋଚନେ)

ଲୀଳା—

ଆକାଙ୍‌କ୍ଷା ନାୟକ ବେଶେ ପ୍ରବେଶି ଭଙ୍ଗି ଭଉସେ
ଚୂଡ଼ା ରଚି ମୟୂର ପିଚ୍ଛରେ
ଅଙ୍ଗେ କସ୍ତୁରୀ ମଞ୍ଜୁଳ ତାଟଙ୍କ କାଢ଼ି କୁଣ୍ଡଳ
ଉର ଶୋଭନ ଗୁଞ୍ଜା ଗୁଚ୍ଛରେ ସେ
ଅଙ୍ଗଶୋଭି !
ଅମ୍ବର ପିନ୍ଧି କୃଷ୍ଣ ସଦୃଶ୍ୟ,
ଆଭରଣ ବନ୍ଧେ ବନ୍ଧି ହୃଦ ବାସେ ଦେଉ ଚୁମ୍ବି
କୃଷ୍ଣ ଦେଖି ସଂକୋଚିତ ଦୃଶ୍ୟ ସେ ।୧୨।

ବିଳାସ—

ଅଧରେ କାଳିକା କାନ୍ତି          ଦେଖି ନବ ଗଉରୀ ଦାନ୍ତି
କରିବାରେ କଲି ଅଭିଳାଷ
ଆଦିତ୍ୟ ଦେଖି ସାରସ          ଯଥା ସୁବାସ ବ୍ୟାକୋଷ
ତଥା ଆସ୍ୟ ପ୍ରସନ୍ନ ଉଲ୍ଲାସ ଯେ
ଅଙ୍ଗଶୋଭି !
ଅପାଙ୍ଗ ସୀମା ଲଂଘେ ଈକ୍ଷଣ,
ଅପଘନ ସ-ପୁଲକ          ହରଷେ ଗ୍ରୀମା ଭଳକ
ହୃଦେ ଦେଲା ଆସନ ସେକ୍ଷଣି ସେ ।୧୩।

ବିଚ୍ଛିତ୍ତି—

ଆଗତ କାହିଁ ସୁନ୍ଦରୀ          ସାଜନ୍ତି ମାତ୍ର କବରୀ
ସିନ୍ଦୂର ବିନ୍ଦୁ ଯେ କପୋଳରେ ସେ
ଅଞ୍ଜନ ରଞ୍ଜନ ନେତ୍ର          ରଜନୀ ଉଜ୍ଜ୍ୱଳ ଗାତ୍ର
ଓଷ୍ଠ ରଙ୍ଗ କର ତାମ୍ବୂଳରେ ସେ
ଅଙ୍ଗଶୋଭି !
ଅଚ୍ଛ ପିନ୍ଧ ସୁକ୍ଷୀନ ବସନ,
ଅଳ୍ପ ଆକଳ୍ପରେ ହରି          ମନ୍ତକ ହରିଲା ହରି
କଳା ତୋଷେ ଚକୋରେ ଯେସନ ସେ ।୧୪।

ବିଭ୍ରମ—

ଅଚ୍ୟୁତ ବନାଗମନେ          କ୍ଷମାସି ଯେ ତୋଷ ମନେ
ଧାଇଁଲେ ଆଲୋକ ଉତ୍ସୁକରେ ସେ
ଆଦରଣ ପୂରେ ରଖି          ବେଶ ହୋଇ ଯେ କେ ସୁମୁଖୀ
ବିପର୍ଯ୍ୟସ୍ତ ଭୂଷଣକୁ କରେ ସେ
ଅଙ୍ଗଶୋଭି !
ଅନୁରାଗ ହର୍ଷ ସଂଭ୍ରମରେ,
ଅଳକ୍ତ କଲ ଅଞ୍ଜନ          ଅଞ୍ଜନ ଘଲେ ରଞ୍ଜନ
ପାଦ ମଣ୍ଡେ ହାର ଉରୁମରେ ସେ ।୧୫।

କଳକିଂଚିତ—

ଅନୁଗତ କୃଷ୍ଣ ସଙ୍ଗେ    କେ କୁମାରୀ କରୁ ରଙ୍ଗେ
ଜଗତ ନଷେଧେ ଭ୍ରଭଙ୍ଗରେ
ଅଶ୍ରୁ ସ୍ନାନରେ ରୋହିତ    ମୁଖେ ବାସ ଆଚ୍ଛାଦିତ
ହସେ ଚନ୍ଦ୍ର ତା କଥା ମନରେ ସେ
ଅଙ୍ଗଶୋଭ !
ଅମରଷ ହକରେ ବଦ୍ଧିତ,
ଆତଙ୍କିତ ଶ୍ୱାସ ପୁନ    ଦେଖିବ ପରା କେ ଆନ
କୃଷ୍ଣଙ୍କୁ ଦେଖି ହୋଏ ମୋଦିତ ସେ ॥୧୬॥

ମୋଟ୍ଟାୟିତ—

ଅଚ୍ୟୁତର କର୍ମଗୁଣ    କେ ରାମା କର ଶ୍ରବଣ
ପ୍ରେମ ଚତ୍ତେ ସେ ଭାବ ଭାବନା
ଅଭିକ୍ଷଣ ବିଜୃମ୍ଭିତ    ତନୁ ପୁଲକେ ପୂରିତ
କରେ ମନୋଭବ ସମ୍ଭାବନା ସେ
ଅଙ୍ଗଶୋଭ !
ଆରମ୍ଭେ କର୍ଣ୍ଣ କଣ୍ଡୁ ଭରିତ,
ପ୍ରବଚନ ସେ ସମୟେ    ଜଡ଼ ଆଶ୍ରିତ ପରାୟେ
କାମ ଚେଷ୍ଟା ନୁହଇ ବାରିତ ସେ ॥୧୭॥

କୁଟ୍ଟମିତ—

ଅବଳା ପଲ୍ଲବ ଶେଯେ    ସ୍ୱପନ କଲା କେ କୁଞ୍ଜେ
ଆନ ଦେଖି ମଦନେ ପ୍ରମତ୍ତ
ଅଚ୍ୟୁତ ସ୍ୱେପର ଚିତ୍ତ    ଆଚରିବେ କର ରତି
ଚନ୍ଦ୍ର କଳା ପୁରନ୍ଦର ମତ ସେ
ଅଙ୍ଗଶୋଭ !
ଅଧର ଦଂଶିଲା ରଦନରେ,
ଆପୀଡ଼ିତ କଲେ କୁଚ    ଆର କରେ ଧରି କଚ
ସସଂଭ୍ରମ ହସ ମନରେ ସେ ॥ ୧୮ ॥

ବିବ୍ବୋକ—

ଆଳାପ ନବ-ବୟସୀ    ପାଶେ କଲା କେ ବୟସୀ
ଗୋବିନ୍ଦ ପ୍ରୀତି ତୋ ଅଭିମତ
ଆତୁର ଯା' ଦରଶନେ    ଗୃହୁଁ କହିଲେ ତ୍ରସନେ
ନ ଗୃହ୍ଣି ନ ହସ୍ତ ଅଙ୍କ ମତରେ
ଅଙ୍ଗଶୋଭି !
ଆଦରେ ଯାଚିଲେ ପୁଷ୍ପହାର,
ଅବଲୋକନ କରୁ    କୋପ ନାମକୁ ଧରୁ
ସାର୍ଥକରୁ ସତ୍ୟ ପ୍ରେମ ବ୍ୟାହାର'ରେ ।୧୯।

ଲଳିତ—

ଆସେ କେ ଗୋପ କୁମାରୀ    ସୁକୋମଳା ସୁକୁମାରୀ
ମାର୍ଗେ ପୁଷ୍ପ ଦଳର ପତନେ
ଅଙ୍ଘ୍ରିର ହଂସକ ଧ୍ୱନି    ଯୁବାରେ ବେଣି ଦାମି
ଭ୍ରୂ-ସ୍ଥଳପଦ୍ମେ ପୂଜେ ଯତନେ ସେ
ଅଙ୍ଗଶୋଭି !
ଅଳି ପଦ୍ମେ ସୁବାସରୁ ଧାମେ,
ଅଙ୍ଗଭଙ୍ଗୀରେ ନିବାରେ    ରଣିତ ବଳୟ କରେ
ନାଚେ ଭ୍ରମରୁ ମୁଖ ସୁଧା ଧାମେ ସେ ।୨୦।

ବିହୃତ—

ଅବଳାକୁ ବିରହରେ    ହରି କହେ ବିରହରେ
ଅଙ୍ଗ ତୋ ଶିରୀଷ ସୁକୁମାର
ଅତି ପୀଡ଼ା ବିଦ୍ଧବସି    ସତ୍ତ୍ୱରୁ ମତେ ନ ବର
ନିରନ୍ତରେ ଶର ମାରେ ମାର ସେ
ଅଙ୍ଗଶୋଭି !
ଅଧୋମୁଖେ ନୟନ ଢଳାଇ,
ଆଘ୍ରାଣ ନୀଳା କମଳ    କରନ୍ତେ ଶୁଖିଲା ଦଳ
ଗଳା ପୁତର ପକାଇ ପକାଇ ସେ ।।୨୧।

ଶ୍ଳୋକଃ—

ମଦଶ୍ଚ ତପନଂ ମୌଗ୍ଧ୍ୟଂ ବିକ୍ଷେପଶ୍ଚ କୁତୂହଳମ୍ ।
ହସିତଂ ଚକିତଂ କେଳି ରଷ୍ଟୋସ୍ତ୍ରୀଣାମନୁଦ୍ଭବଜାଃ ॥

ମଦ—

ଅଙ୍କୁରିତ ଯଉବନୀ   ଘନେ ସଂପୁଟକ ଯେନ
କୁଚ ଢୁଲେ ଢୁଳେ ବିଜନରେ
ଅସମ ଜାଣି ଲଳନା   ପାଞ୍ଚେ ପ୍ରେ ମେରୁ ତୁଳନା
ମୁଁ ବଳିବି ବକ୍ଷେ ଯତନରେ ସେ
ଅଙ୍ଗଶୋଭି !
ଆଲମ୍ବନ ସ୍ତନାକୁ ଅନାଇଁ,
ଅନଙ୍ଗ ସୌଭାଗ୍ୟ ମଦ   ଅତି ଯୌବନ ସମ୍ପଦ
ଲଭି ହାସେ ଭୃଙ୍ଗରେ ଯେନାଇଁ ସେ ॥୧୨॥

ତପନ—

ଅଚ୍ୟୁତ ବନ ଗମନେ   ବିଚ୍ଛେଦ ତାପିତ ମନେ
ଲୋଟଇ ପଲ୍ଲବ ଶୟନରେ
ଅନଳ ତାପକୁ ପାଇ   ପୁନ ଉଠଇ ବସଇ
ଅଙ୍ଗ ଲେପେ ଚନ୍ଦ୍ର ଚନ୍ଦନରେ ସେ
ଅଙ୍ଗଶୋଭି !
ଅଧିକରେ ଦହେ ସେ ଲେପନ,
ଅମୃତାଂଶୁ ପୁନ ରାଗେ   ଚିତ୍ରଭାନୁ ହେଲା ଗାଢେ
ଇଚ୍ଛା ନିଦ୍ରା ଦେଖିବ ସ୍ୱପନ ସେ ॥୧୩॥

ମୌଗ୍ଧ୍ୟ—

ଆଲକ କେ ବମ୍ଭାଧସ୍ତ କହଇ ପଦକ ଧର

ରତ ନାୟକ ବୋଲ କାହାରେ

ଅଛୁ ଶୁଣି ଭୁଲେ ରତ ନାୟକ ରତେ ବୋଲନ୍ତ

ସ୍ୱେ ସଂଶୟ ଛେଦ ଭୁ ବ୍ୟାହାରେ ସେ

ଅଙ୍ଗଶୋଭି !

ଆଳ ବୋଲେ ନଧୂବନେ ରତ,

ଅଟେ ନାୟକ ଦୟିତ ରତ ନାୟକ ବଖ୍ୟାତ

ମଦନ ଯେ ହୃଦୟ କରତ ସେ ॥ ୨୦ ॥

ବକ୍ଷେପ—

ଅତର୍କେ କୃଷ୍ଣ ଆସି ପ୍ରବେଶ ପଣେ ସୁକେଶୀ

ବସିଥିଲା ବେଶ ରଚନରେ

ଅଞ୍ଜନ ଲଞ୍ଜି ବହାନେ ରଞ୍ଜିଲ କଞ୍ଜ ନୟନେ

ଭଲ ଅର୍ଦ୍ଧ ଶଜ ଶୋଭନରେ ସେ

ଅଙ୍ଗଶୋଭି !

ଅଧେ ପୁଷ୍ପହାର ସୁବେଣୀରେ,

ଅତ ସସଂଭ୍ରମେ ଉଠି ବପୁଶୀରେ ପଞ୍ଚବୋଷ୍ଟୀ

ବୋଧ କଲା ରହସ୍ୟ ବାଣୀରେ ସେ ॥୨୫॥

କୁତୂହଳ—

ଅଙ୍ଗନା ଅଙ୍ଗ ଲେପନ କୁଙ୍କୁମ ଉପଲେପନ

ହଉଥିଲା ବସି ଭଦ୍ରାସନେ

ଅହ କ୍ଷେତ୍ରେ ଗୋବନ୍ଦ ଘେନ ଗାବ ସଖାବୃନ୍ଦ

ଆସଲେ ଚଞ୍ଚଳ ବଂଶୀ ସ୍ୱନେ ସେ

ଅଙ୍ଗଶୋଭି !

ଆସେ ମହା ଚରଣ ଅଙ୍କରେ,

ଉମ୍ବୁଦ୍ଧ ରୂପସାଗ ପଡନ ପର ଭେ ମାର୍ଗ

ମନ୍ତ୍ରେ ମୁଖ ଘଷି ଘଷି କରେ ସେ ॥୨୬॥

ହସିତ—

ଅଭିନବ ପୁଷ୍ପବନ୍ତ      ହେବା ଛଳରେ ପ୍ରବନ୍ଧ
ପୁଷ୍ପ ବାଣ ଦେଲା କାମ କରେ
ଅଙ୍ଗଦେଶେ ଅଧିକାର      ଦେଲା କରି ଅଙ୍ଗୀକାର
ଜଣା କଲା ଅଜସ୍ର ଶଙ୍କରେ ସେ
ଅଙ୍ଗଶୋଭି !
ଆରୋହିଲା ଉଲ୍ଲଜ ଅମାତ୍ର,
ଅନ୍ତେ କାମ ବଡ଼ ପଣ      ଚନ୍ଦ୍ର ହସଇ ଆପଣ
ଚନ୍ଦ୍ରଣକୁ ଚନ୍ଦ୍ରହାସ ମାରି ସେ ॥ ୨୬ ॥

ଚକିତ—

ଅଟବୀରେ ପୁଷ୍ପ ତୋଳି      ଭ୍ରମୁଥିଲେ ନବ ବାଳୀ
କୃଷ୍ଣ ଭିନ୍ନ ଦେଖନ୍ତି ଚରମେ
ଆନ କେ ବୋଲେ ନାଗର      ଶୋଭି ତୋ ପୁଷ୍ପଭାରର
ଶୁଣି ଚମକିଲା ସଭ୍ରମେ ସେ
ଅଙ୍ଗଶୋଭି !
ଆଳିରେ ଆଲିଙ୍ଗନ୍ତୁ କରେ,
ଅଭ୍ରମଣି ସୁବେଣୀରେ      ସିଞ୍ଚାଉ ଦସ୍ତେ ପାଣିରେ
ଅବଲୋକେ ଚଞ୍ଚଳ ଦୃକରେ ସେ ॥୨୮॥

କେଳି—

ଅଟବୀରେ ଅଟନ କେ      କରୁ ଚରଣ କଣ୍ଟକେ
ବ୍ୟଥା ଲଭି ଦେଖାଇ ଆଳିକ
ଅଚ୍ୟୁତ ପ୍ରେକାଳେ ଭଣି      ମୁଁ କାଢ଼ି ଦେବି ସୁକେଶୀ
ବୋଲୁଁ ଚନ୍ଦ୍ରେ ଦୟିତ କେଳିକ ସେ
ଅଙ୍ଗଶୋଭି !
ଅଙ୍କାସନ କରି ବଲ୍ଲଭର,
ଆଉଜ ବକ୍ଷ ସୁଦକ୍ଷ      ପ୍ରିୟତମ ପାଦ ଧରି
କାଢ଼ିବାର ହୋଇ ସ୍ନେହଭର ସେ ॥୨୯॥

ଅତ୍ୟନ୍ତ ମୁଗ୍ଧା କନ୍ୟକା    ଗୋବିନ୍ଦ ଦେଖିଲେ ପ୍ରେକା
ସଲଜ୍ଜେ ନ ଚାହିଁ ସମ୍ମୁଖରେ
ଅଧୋମୁଖେ ରହି ବାଣୀ    ନ କହନ୍ତି ଚାହିଁ ଶୁଣି
ଈଷଦ୍ଧାସ ଜାତ କରି ଖରେ ସେ
ଅଭିସାରେ !
ଆଲୋକନ୍ତି ରହି ପ୍ରାନ୍ତନ୍ତରେ,
ଅନ୍ୟେ ହୋଇ ଦତ୍ତ ଅକ୍ଷି    ଗୁଣ କର୍ମକୁ ସୁମୁଖୀ
ସାଦରେ ଶୁଣନ୍ତି କଥନରେ ସେ ॥୩୦॥

ଅବଳା ସକଳେ ମିଳି    ଢନେ ଧୂଳି ଗୃହ ଖେଳି
ସେଥୁ ସମୟେ ମିଳିଲେ ନାରଦ
ଅଚ୍ୟୁତ ଗୁଣ ମହତ    ବୀଣା ନିଗମେ ବଦନ୍ତି
ଦେଖି ବାଳୀ ପାଶ୍ଚିଲେ ବରଦ ସେ
ଅବିଳମ୍ବେ !
ଆରୋହାଇ ଧୂଳି ଆସନରେ,
ଅର୍ଘ୍ୟ ଆଦି ଷଟଧୂଳି    ଅତିଥି ଭାବରେ ବାଳୀ
ତୋଷ କଲେ ଧୂଳି ଅଶନରେ ସେ ॥୩୧॥

ଅତି ଆନନ୍ଦେ ବରଜ    ରଜ ଭୁଞ୍ଜି ତପୀରାଜ
ମନୋରଥ ସିଦ୍ଧିରସ୍ତୁ ବଦ
ଅପରାଧ ହେଲା ସତ୍ୟ    ଧୂଳି ଭୁଞ୍ଜିଲି ଅସତ୍ୟା
ଗୃହେ ଦେଲୁଁ ବୋଲି ପାଦ ବନ୍ଦି ସେ
ଅଙ୍କଶୋଭି !
ଆର୍ଦ୍ର ଦେଖି କହେ ତପୀବର,
ଆଶିଷ୍ୟ ହୋଇ ବିଶ୍ୱାସ    ବଶରେ ହୋଇଲୁଁ ବଶ
କୃଷ୍ଣ ବର ହେବେ ଯେନ ବର ସେ ॥୩୨॥

ଅଭିବାଞ୍ଛିତକୁ ଶୁଣି          ମୁଦେ ବୋଲନ୍ତି ତରୁଣୀ
ଅନୃତ ଆମ୍ଭର ସମ୍ଭାବନା
ଅସମ୍ଭାବିତ ବଚନ          ଭେଟିବ କି ବର୍ତ୍ତମାନ
ତୁଷ୍ଟି ବୋଲେ ତେଜ ସ୍ୱେ ଭାବନା ଗୋ
ଅଙ୍ଗଶୋଭ !
ଆମ୍ଭେ ଖେଳ ଯାଉଛୁ ଖେଳାଇ,
ଅଟେ ନାମ ଶକଟାଦା          ଖେଳନ୍ତେ ଭେଟିବ ବାଦା
ସତ୍ୟ ବୁଝ ନ ପିବ ପକାଇ ଗୋ ॥୩୩॥

ଆପଣେ ସେ ପାଲି ସାରି          ଦେଇ ଖେଳର ବେଭାର
କନ୍ଧ ସଙ୍ଗ ହୋଇଲେ ଅନ୍ତର
ଆରମ୍ଭିବା ବେଳେ ଖେଳ          ଆସି ମଦନ ଗୋପାଳ
ଲୁଚି ଦେଖି ମଦନେ କାତର ସେ
ଅଧୋକ୍ଷଜ !
ଅବଲୋକ ମଧୁମଙ୍ଗଳକୁ,
ଅଙ୍ଗନା କ୍ରୀଡ଼ା ଚଡ଼ାଇ          ତୁମ୍ଭେ ସେ ପାରି ଖେଳାଇଁ
ଯାଇ ବେଗେ ଦଣ୍ଡ ମଙ୍ଗଳକୁ ସେ ॥୩୪॥

ଆସେ କାସ ଶ୍ୱାସ ଛଳ          ଅଦୃଶ୍ୟ ପରି ସେ ଦ୍ୱିଜ
ନେଇ ଅଗ୍ରେ ହସ୍ତେ ଅଙ୍ଗୁଳିକ
ଅଧୋକ୍ଷଜ ନାମେ ଡାକ          ଚରଣ ଖଞ୍ଜେ ବଳୋକ
ଖେଳ ଘେନ ବୋଲଇ ବାଳୀଙ୍କି ସେ
ଅଙ୍ଗଶୋଭ !
ଆଶ୍ଚର୍ଯ୍ୟ ଶୁଣି ସକଳେ ହସି,
ଅଗ୍ରଜ କୃଷ୍ଣ ସ୍ୱେ ସାର          ବେନି ଚନ୍ଦ୍ର ଅଳଙ୍କାର
ପାରି କୁଞ୍ଜେ ଖେଳୁଛ ରହସି ଗୋ ॥୩୫॥

ଆମ୍ଭେ ହେଲୁଁ ପୁରେସ୍ଥିତ        କରିବୁଁ ଯେ ତବ ହିତ
କୃଷ୍ଣଙ୍କୁ ହରାଇବ ଖେଳରେ
ଆପ୍ତତ୍ରରେ ରଙ୍ଗ ଆଣି        ଗଜମୋତି ମାଳ ଜିଣି
ମଣ୍ଡାଇବ ଉରଜ ସ୍ଥଳରେ ସେ
ଅଧୋକ୍ଷଜ !
ଆସି ପରବେଶ ହେଲୁ କାଳରେ,
ଅଧୋମୁଖେ ରହି ହସି        ଲଭ ସର୍ବ କୃଶୋଦରୀ
ନାରିକେଳ ଲକ୍ଷ ତଳରେ ସେ ॥ ୩୬ ॥

ଆଲୋକ ବାମତା ଦ୍ୱିଜ        ବୋଲେ ନ ଚେଜୁନ୍ତୁ ଲଜ
ଜଲରେ ରହିବ ପୁରତରେ
ଅଙ୍ଗନା ଶୁଣି ତତ୍ତ୍ୱ        ଖେଳିଲେ ସେ ବଂଶୀହସ୍ତ
ବାଧିନ ବାଧି ଚକ୍ର ଚତ୍ତ୍ୱରେ ସେ
ଆଦ୍ୟ ଖେଳେ !
ଅବଳା ହାରନ୍ତେ ମୋତି ହାର,
ଅଧୋକ୍ଷଜ ଉରେ ମଣ୍ଡେ        ବୋଲନ୍ତି ପ୍ରେଥର ହୋଡ଼ି
ପାଲଟା ବାସ ବନ୍ଧ ବାହାର ସେ ॥୩୭॥

ଆରମ୍ଭନ୍ତେ ଖେଳ ପୁନ        ହାରିଲେ ନନ୍ଦ ନନ୍ଦନ
ବଟୁ ହସ୍ତୁ କନ୍ୟା ଜିଣିମାରେ
ଆସି ପ୍ରେକାଳେ ଜରତି        ତମ ତା କଣ୍ଠୁ ଘାରଣ୍ଟି
ଗ୍ରାସ କଲା ମୁଖ ଚନ୍ଦ୍ରମାରେ ସେ
ଅଭ୍ର ପଥ !
ଅନଳରେ ଭ୍ରମେ ସବ ଘଣ
ଅଙ୍ଗନା ଗମିଲେ ଜବ        ଶ୍ରୀ ଶ୍ୟାମସୁନ୍ଦର ଦେବ
ବଳ କେବଳ ଶ୍ରୀ ଜଗନ୍ନାଥ ସେ ॥ ୩୮ ॥

— ଚତୁର୍ଥ କୁସୁମ —

॥ ଦ୍ୱିତୀୟ ଛାନ୍ଦ ॥

# ହିମନ୍ତ ଋତୁ-କୁମାରୀ ବରଲାଭ

॥ ରାଗ – ବସନ୍ତ ॥*

( ଆଷାଢ଼ ଶୁକ୍ଳ ବାଣୀରେ )

— ଗୀତ —

ଆଗତ ହୋଇଲା ହେମନ୍ତ ଋତୁ
ଆରମ୍ଭେ ବିଶ୍ୱକେତୁ ଜପ୍ୟ କ୍ରତୁ
ଅନଳଂ ସ୍ଥାପିତ ହୃଦ କୁଣ୍ଡରେ
ଅଧିକେ ଜନମ ଧୂମ ତୁଣ୍ଡରେ
ଆଜ୍ୟ ହେମକଣ,
ଆହୁତି ତରୁଣ ପଶୁ ପ୍ରୋକ୍ଷଣ ।୧।

ଅନିଳ ଉତ୍ତରୁ ଆସି ସହାୟ
ଅଗ୍ନି ବୃଦ୍ଧି ଦହେ ସମିଧ କାୟ
ଅନଙ୍ଗ ନର୍ଦ୍ଧ ପୂରଣ ଆଲୋକେ
ଅପଘନେ କର୍ମ ବନ୍ଧିଲେ ଲୋକେ
ଆମୋଦ ସେବନ୍ତି,
ଅଳି ଚୁମ୍ବିଲେ ଦେଖି ରସବନ୍ତି ।୨।

---

* ରାଗଲକ୍ଷଣମ୍ ଶ୍ଳୋକଃ—
ବନୋଦ୍ଭୂତ ପୁନଃରେବ ଗୌଣ୍ଡ ସୁକଙ୍କଣା ଭ୍ରମରଗୁଞ୍ଜନେନ ।
କର୍ଣ୍ଣେ ଦଧାନା ସୁରପୁଷ୍ପଗୁଚ୍ଛଂ ବସନ୍ତନେତ୍ରଂ କଥିତା ବସନ୍ତ ॥ ୧ ॥
(ଇତି ବୃହତ୍ସଙ୍ଗୀତକୌମୁଦ୍ୟାଂ) ॥ ପୋଷ୍ୟପାଠ ॥

୧ । (କ) ଅନିଳ

ଅଚନୁ ତ ଷାର ବ୍ରତେ ଯାଜିତ
ଅଗ୍ନିହୋତ୍ର କୃପ କୁଣ୍ଡେ ରକ୍ଷିତ
ଅନୃତ ନୋହେ ସ୍ୱେ ଧୂମ ଉତ୍ତମ
ଅଗ୍ନ ମୁଖେ ହୋଇଥାଇ ଜନମ
ଅନ୍ତ ପ୍ରଭା ବଳ,
ଅପସରନ୍ତେ ସୁମନ ଆବଳ ।।୩।।

ଅପହୃତ ହେଲା ଧନ ରକ୍ଷଣ
ଆନ କେ ନୋହନ୍ତେ ଯାନ ରକ୍ଷଣ
ଅମ୍ବର ବନ୍ଧାନ ମାତନ ବଧିରେ
ଆଚର ବଞ୍ଚିଲେ ମାନ ବଧିରେ
ଆଟେହ ଚନ୍ଦ୍ରଭାନୁ,
ଆଶ୍ରିତ ଗାଢେ ତଥା ଚନ୍ଦ୍ରଭାନୁ ।। ୪ ।

ଅଭୂତ କ ସ୍ୱେ ହେବାର ଯେପର
ଅର୍କ କମଳା ନନ୍ଦକାଗ୍ର ହର ।
ଆପଣେ ଗଳନ୍ତେ କ୍ଷୀଣ ବାସରେ
ଅନଙ୍ଗ ଦଣ ସେବନ୍ତେ ବାସରେ
ଅଦ୍ୱିତୀୟ ତେଜ,
ଅଟେ ଯେ ଜ୍ୟୋତିର୍ମୟ ଗ୍ରହରାଜ ।। ୫ ।।

ଅଳ୍ପ ଲୋକର ଉଦୟେ ନଷ୍ଟୟ
ଅଧିକେ ଯାତ୍ରିମୟ ନାଟରୟ
ଆଚରେ ତେଜହ୍ୱାନ ମହତର
ଅରିଷ୍ଟ ବାର ତଥା ରୁଚିତର
ଅର୍କ ତେଜହ୍ୱାନ,
ଅହରସେ ଅହରହେ ପ୍ରକ୍ଷିନ । ୬ ।।

ଅଜ୍ଞ ଅଧିକାର ହେଲେ ସମୃଦ୍ଧି
ଅବଶ୍ୟ ଦୁଷ୍ଟଲୋକ ମଦ ବୃଦ୍ଧି

ଅତି ବୃଦ୍ଧି ତମ ନଶି ସମ୍ପଦ
ଆଚରିଲି ନିଶାଚର ମୂଦ
ଅଦୃଶ୍ୟ ଉଡୁନ୍ମ,
ଉପସରି ଗଲେ ସଜ୍ଜନ ସମ ।। ୭ ।।

ଆଲୋକନ୍ତି ଯେବେ ସାଧୁ ବିପଦ
ଅତି କୋବିଦ ବିସ୍ମୃତ ଆସ୍ପଦ
ଅତର ବିଲୋକ କ୍ଷୀଣ ସମ୍ପଦ
ଆକୁଳେ ଚକ୍ର ଚକ୍ରବାକୀ ଖେଦ
ଅସାଧୁ ହସନ୍ତି,
ଅବଲୋକ ପ୍ରତି ସ୍ୱରେ ହସନ୍ତି ।।୮।।

ଅତି କ୍ଷୀଣ ଧନେ କଥା ଅଦ୍ଭୁତ
ଆଠ ଫଳେ କମଳା ସମ୍ଭୂତ
ଅଧିକ ଉତ୍ପଦ ସିତ ଶମ୍ବର
ଅର୍ଥ ହୋଇଲା ନରଙ୍କୁ ଶମ୍ବର
ଅରି ମିତ୍ର ସମ,
ଅମ୍ବୁ ଶୋଷଣ ହେଲା ଗାତ୍ର ସମ ।୯।

ଆତାରେ ବାତ ଚନ୍ଦନ ବଧୂରେ
ଅନାଦରେ ବହ୍ନି ଚନ୍ଦ୍ର ବଧୂରେ
ଆକାଂକ୍ଷା ସୁଖ ଭବ ମନୀଷାରେ[୧]
ଅଙ୍ଗ ଆଚ୍ଛାଦ ସୁଷମ ନିଶାରେ
ଅଶନ ବରନ୍ତି,
ଆଖ୍ୟାତ ମଧୁରେ ଯେଣୁ କରନ୍ତି ।।୧୦।।

ଅନଙ୍ଗ ଭ୍ରମ ଆଣୁଛନ୍ତି ଧର
ଆଧୂତ ଅଙ୍ଗେ ପଦ୍ମବାସୀ ଧର

---

୧ । 'କ' ପୋଥିରେ ଏ ଧାଡ଼ିଟି ନାହିଁ ।

ଅରଣ ଭୂଷଣ କୃଶ ଉଦସ୍ଥ
ଅତି ଉତ୍ତୁଙ୍ଗ କୁଚ ଗିରି ବର
ଆଶ୍ରିଷ୍ଟ କଣ୍ଠୋଷ୍ଠ,
ଅଚିରେ ଦେଖିଲେ ସେ ଭସ୍ମ ପାଶୋର ।୧୧।

ଅମରେ ଅସ୍ରୁପ ଭସ୍ମରେ ଯଥା
ଆଶ୍ରୟ ମେରୁ ଗୁହାକୁ ଯେ ତଥା
ଆଶ୍ଳେଷ କ୍ଷୀର ନୀର ନୀତ ସାର
ଅଙ୍ଗ ହେମାଙ୍ଗୀର ଜରି ନସାର
ଆଲେପ ନଶାରେ,
ଅବସ୍ଥିବ ପରି ରଜନୀ ସାରେ ।୧୨।।

ଅଗୁରୁ ଧୂମ ଧୂପିତ ସ୍ବରଭ
ଅନେକ ଔଧ ସୁରତ ଆରମ୍ଭି
ଅଙ୍ଗନା କଣ୍ଠ ଶବଦକୁ ଶୁଣି
ଅହେ ଶିଖୀ ଡାକେ କପୋତଶ୍ରେଣୀ
ଅଧିକଜା ନଶି,
ଆଦରେ ନାସ ପୁଂସ ପରଶଂସି ।୧୩।

ଅଂଠେ ସ୍ୱେକାକ୍ଷ ଯେ ପୁଂସ କାମିନୀ
ଅଙ୍ଗ ଦହେ ବ୍ରମାନଳ ଯାମିନୀ
ଅକ୍ଷି କମଳ ନ କରି ମୁଦ୍ରିତ
ଅଶ୍ରୁ ଧାରେ କରି ବକ୍ଷ ପୂରିତ
ଆସି ଗତ ପ୍ରୀତି
ଅନ୍ତ ନୋହିବାରୁଁ ଅନ୍ତ କରନ୍ତି ।୧୪।

ଆଶାର କୁମାରୀଙ୍କି ସ୍ନେହ କାଳ
ଅଚ୍ୟୁତ ସଙ୍ଗ ବିନା ହେଲା କାଳ

ଅନଙ୍ଗେ ତାପିତ ହୋଇ ସକଳେ
ଆହୁତି ଉତ୍ତର ବାତ ଅନଳେ

ଅଛନ୍ତ ଅଠେସା,
ଅନ୍ତେ ଯେତେ ସୁଖ କହି ନ ସରବ ।୧୫।

ଆସି ଦରଶନ ଦେଲେ ନାରଦ
ଅବଳା ବୋଲନ୍ତି ଆହେ ବରଦ
ଅଶନ ଦୃଢ ଚକ୍ଷୁ କବରରେ
ଆଲୋକ ମାତ୍ରେ କ୍ଷୁଧାକୁ ନ ହରେ
ଅଧିକ ଚାପିତ
ଅଲଭ୍ୟ ଦେଖି ଲୋଭିଲେ ପ୍ରାପତ ।୧୬।

ଆକାଶେ ଉଦେ ହୋଇ ନବଘନ
ଅବରଷଣେ କମ୍ପେ ଉପବନ
ଅଙ୍କୁରିତ ପ୍ରେମବଲ୍ଲୀ ନବୀନା
ଆନ କେ ରକ୍ଷା ଘନରସ ବିନା
ଅଟେ ତପୀବର,
ଆପଣା ହାନ ଆନ ହେଲେ ବର ।୧୭।

ଆମ୍ବୁଜ ବୋଲେ ଆର୍ଯ୍ୟରେ କଷ୍ଟ
ଅନୁଭୂତରେ ଲଭ ଫଳ ଇଷ୍ଟ
ଆଦ ତ୍ରିମନ୍ତ୍ର ବ୍ରତ ହବିଷ୍ୟାଶୀ
ଆକଣ୍ଠ ମଗ୍ନ ଯମୁନାରେ ପଶି
ଆଚର ଅଚିରେ,
ଅଭିମତ ଲଭି ହେବ ଅଚିରେ ।୧୮।

ଅନ୍ତର ଶିକ୍ଷା ଦେଇ ତପରୂପୀ
ଅଙ୍ଗନା ବାର ହେଲେ ବ୍ରତରୂପୀ
ଅବଶେଷ ଯାମେ ଥାଉ କ୍ଷଣଦା
ଅର୍କଜା ଘାଟରେ ମିଳିଲେ ପ୍ରମଦା
ଆଲୋକ ହରଷ,
ଅଟେ କୃଷ୍ଣ ଘନ ରସ ସରସ ।୧୯।

ଅସଂଶୟ ଚନ୍ଦ୍ର କୃଷ୍ଣ ମୂରତି
ଅମ୍ବର ତେଜି ଆଲିଙ୍ଗନେ ରତି
ଆଳସ ଶତ ଲୁଚ ପ୍ରାଣି ସ୍ୱେ ମଣି
ଆଶ୍ଳେଷ ସୁଖ ଲଭିଲେ ରମଣୀ
ଅଧ୍ୟାନ ପ୍ରେମରେ,
ଅବିରତ ରତ କୃଷ୍ଣ ନାମରେ ।୨୦।।

ଅଧିକ ଶୀତେ କମ୍ପେ କଳେବର
ଅନଙ୍ଗ ବାଧାରୁଁ ସ୍ୱେ ନୋହେ ବର
ଆଶା ନାହିଁ ବର ଯୋଷା ଜୀବନେ
ଅନନ୍ତେ କ ବାହୁଡ଼ିବେ ଜୀବନେ
ଅର୍କ ଉଦୟରେ,
ଅମ୍ବିକା ପୂଜ ଗତ ନିଳୟରେ ।।୨୧।।

ଆଚରି ସ୍ୱେଚ୍ଛାପର ତପ ବ୍ରତ
ଅଚ୍ଛିଦ୍ରେ ପୂର୍ଣ୍ଣ ପୂର୍ଣ୍ଣିମା ଆଗତ
ଅସ୍ଥିର ସ୍ୱେ ତପେ ପୁରୁଷୋତ୍ତମ
ଅଙ୍ଗନା ବରଦାନକୁ ସମ୍ଭ୍ରମ
ଆଗତ ଉଷାରେ,
ଅନମ୍ବର ଦେଖି ବର ଯୋଷାରେ ।୨୨।

ଅମ୍ବର ମଣ୍ଡିଲେ ନୀପ ଡାଳରେ
ଆରମ୍ଭି ଗାୟନ ବଂଶୀ କଳରେ
ଅଙ୍ଗନାଙ୍କ ନେହ ଶୁଣି ଚଞ୍ଚଳ
ଅନ୍ୱେଷଣା କରେ ଦଶ ସକଳ
ଅର୍ଜ୍ଜୁନ ଯୋନକ,
ଆକର୍ଣ୍ଣରେ ନିଲ ଡାଳ ଘଣ୍ଟିକ ।୨୩।।

ଚାପ ହତ ହୋଇଥିଲା କମଳ
ଅଙ୍ଗନାଙ୍କ ମୁଖ ପଦ ବିମଳ

ଅନଳ ଯୋଗରେ ଚଳଳ ପ୍ରାୟେ
ଆନନ ବକ୍ଷ ତଥା ଶୋଭା ପାୟେ
ଆଲୋକଲେ କୂଳ,
ଅପହୃତ ହୋଇଅଛୁ ଦୁକୂଳ ।୨୪ ॥

ଅନଳ ବନା ପ୍ରେ କୃଷ୍ଣ କାହାର
ଅଦ୍ଭୁତ ଚନ୍ଦ୍ର ନ ସ୍ଫୁରେ କ୍ୟାହାର
ଅବଲୋକନ କେ କଲା କଦମ୍ବ
ଆମନ୍ତ୍ରନ ଶୋଭା ବାସ କଦମ୍ବ
ଅଛନ୍ତି ଗୋବନ୍ଦ,
ଅତି ପ୍ରସନ୍ନ ମୁଖ ଅରବିନ୍ଦ ॥୨୫॥

ଅପହୃତ ହେଲା ମୂର୍ଚ୍ଛା ସ୍ୱଭାବ
ଅନାୟତ୍ତେ ଧର ପ୍ରଗଲ୍‌ଭ ଭାବ
ଅଳ୍ପ ବାଣୀ ଶୁଣିମାରେ ସାଦର
ଅତି ଦୃଷ୍ଟେରେ ନ ଶୁଣେ ନାଗର
ଅନେକ ଭାରତ,
ଅନାୟାସେ ଶୁଣେ ଅଚ୍ୟୁତ ଶ୍ରୁତ ।୨୬॥

ଆମ୍ରେଶ୍ୱର ଯଥା ରତାନ୍ତ କାଳେ
ଅମ୍ବର ଲୁଚଇ କୁତୂକ ବଳେ
ଆପଣେ ପିନ୍ଧାଇବା ଅଭିଳାଷୀ
ଆତୁର ଲଜ୍ଜ୍ୟାରେ ପ୍ରେମ ଲାଳସୀ
ଅତି ଯତନରେ,
ଅମ୍ବର ମାଗେ ମଞ୍ଜୁ ଭାରତରେ ।୨୭॥

ଅନ୍ତେ ସେ ହରଷ ଚିନ୍ତ ପ୍ରକାଶ
ଆକାଙ୍‌କ୍ଷା କଷିମାରେ ବାଣୀ ଶାଣ
ଅମୃତ ମଧୁର ଭୁଞ୍ଜ ନମିତ୍ତେ
ଅମ୍ବର ମାଗନ୍ତି ବନସ୍ଥ ମତେ

ଅରଣ୍ୟ ପ୍ରିୟଙ୍କୁ,
ଆଜ ବନୁ ଦୂର କର ଦେବାକୁ ॥୨୮॥

ଅନିରୁଦ୍ଧ ନେତ୍ର ହୋଇ ପ୍ରସନ୍ନ
ଆମ୍ଭଙ୍କୁ ପ୍ରଦାନ କର ବସନ
ଅବନୀପାଳ ପୁତ୍ର ଗୋପେ ହୋଇ
ଅନ୍ୟାୟ ଆଚରିବା ନ ଯୋଗାଇ
ଆନେ ନୋହୁ ଜଣା,
ଅଧିକେ ହେବ ମହତକୁ ଊଣା ॥୨୯॥

ଅବାଲ୍ୟ କାଳୁଁ ଜଣା ଏଉଦାର
ଆମିମାଦ୍ଧ ଯେତେ ହୃତ ହେବାର
ଅଳ୍ପ ତରୁଣ ଅବସ୍ଥାକୁ ପାଇ
ଅଛ କୁଳବଧୂ ମନ ଗ୍ରେସାଇ
ଅଦୃଷ୍ଟ ଅଶ୍ରୁତ,
ଆଜ ନାରୀ ପିନ୍ଧା ବାସ ହରୁତ ॥୩୦॥

ଆଦ୍ୟରୁଁ କର୍କଟି ଆଦିନର ଫଳ
ଅପହୃତ କର ହୋଇ ପେଷଳ
ଅଭ୍ୟାସ କର ତୁମ୍ଭେ ସେହ୍ବି ମତ
ଅବଳା ବସନେ ବଳାଇ ମତ
ଅଟୁଁ ତବ ଦାସୀ,
ଅମ୍ବର ଦିଅ କେ ନ ଦେଖୁ ଆସି ॥୩୧॥

ଆଜ ଲାଜରୁଁ ରଖିଲେ ଲଳନା
ଆଜ୍ଞା ଅବଶ୍ୟ କରିବୁଁ ପାଳନା
ଅଚ୍ୟୁତ ବୋଲନ୍ତି ରମଣୀମଣି
ଅଭ୍ୟାଖ୍ୟାନ କର ନ ବୁଟି ମଣି
ଆଣେ ପବମାନ,
ଅଛନ୍ତି ଶାଖୀ ସାକ୍ଷୀ ବର୍ତ୍ତମାନ ॥୩୨॥

ଆଣେ ଯେ ହର ପୁଷ୍ପବର୍ଣ୍ଣ ବାସ
ଆଶ୍ଚର୍ଯ୍ୟ କ ସ୍ୱେ ତା'ଠାରେ ବିଶେଷ
ଆମ୍ଭେ ନ ଧରୁଁ ନଅ ସ୍ୱେ ଦୁକୂଳ
"ଅନାଶ୍ରନ ଶୁଣି କନ୍ୟା ସକଳ
ଆଣିମା ଅମ୍ବର,
ଆନରୁ ଶ୍ରେୟ କୃଷ୍ଣ ଦେଖିବାର ।୩୩।

ଅନଙ୍ଗ ଆଗାରେ ନାବଣି କର
ଆଚ୍ଛାଦ ଭୁଜବଲ୍ଲୀ କୁଚ ଧର
ଅଭିଷେକ ହେବ କ ମାର-ରାଜ
ଅନେକ ହେମ କୁମ୍ଭ ନେଇ ଆଜ
ଆପରେ ବୁଡ଼ାଇ,
ଅଣି ମାର ସ୍ୱେ ଆଣନ୍ତ ଛଡ଼ାଇ ।୩୪।

ଅନ୍ଧକ ପର ବିଷଜ୍ୱାଳା ଉରେ
ଆମଗ୍ନି ଥିଲେ କ କାଳନ୍ଦୀ ନୀରେ
ଅଙ୍ଗନା କ ମନୋରଥ ଆଶାପ୍ଲୀ
ଆରମ୍ଭି ଥିଲେ ଶମ୍ଭୁ ଜଳଶାୟୀ
ଅଭିମତ ଲାଭ,
ଅଚ୍ୟୁତ ପାଣି ହୋଇବ ସୁଲଭ ।୩୫।

ଅମ୍ବୁକଣ ସୁବେଣୀରୁ ପତନ
ଅଶ୍ରୁ କରଇ ଗରଳ ବମନ
ଅବୟବ ତ ପ୍ରଫୁଲ୍ଲ ଚମ୍ପକ
ଅଚ ବିନ୍ଦୁ ମକରନ୍ଦ ପ୍ରାପ୍ୟେକ
ଅଙ୍ଗ ତପମାପ୍ତ,
ଅନଙ୍ଗ ଦଣ୍ଡ ମନ୍ତ୍ରାଇ ପମାପ୍ତ ।୩୬।

ଅଣୁ ଉଦର ବନ୍ଧଅଛି ମେରୁ
ଅଷ୍ଟନେତ୍ର ତାହକର୍ମା ପଣରୁ

ଅନୁମାନ ନାଭି ଗର୍ତ୍ତ ସ୍ୱେ ଶାନ୍ତ
ଅସିତ ରୋମାବଳୀ ପ୍ରସ୍ଥ ଦୋନ୍ତ
ଅଛୁ ସ୍ତନ ଖଞ୍ଜି,
ଅନ୍ୟଥା ହେଲେ କଟି ଯାନ୍ତା ଭଜ ।୩୭।

ଅନେକ ଦାଢ ହେମ ସିଂହାସନ
ଅନୃତ ନୋହେ ଶୋଭନ ଜଘନ
ଅଛୁ କଟି ସିଂହ ଉର୍ଦ୍ଧ୍ୱେ ବଂକତ
ଆତପତ୍ର କୁଚଦ୍ୱୟ ମୁଦ୍ରିତ
ଅନଙ୍ଗ ନୃପର,
ଅଟେ ଛତ୍ର ସିଂହାସନ ଛୁରିଅ ।୩୮॥

ଆସନ୍ତେ ରାମା ଚରଣ ବିମଳ
ଅବନୀରେ ଫୁଟେ ସ୍ଥଳ କମଳ
ଅଙ୍ଗନା ପ୍ରତ୍ୟଙ୍ଗ ଶୋଭା ଇନ୍ଦ୍ରୁଣ
ଅପଲକ କଲ୍ପ କମଳଦୃଶ,
ଅନଙ୍ଗ ନିବାସ,
ଆଲୋକନ ଇଚ୍ଛା ଜଗନ୍ନିବାସ ।୩୯।

ଅଚ୍ୟୁତ ବୋଲନ୍ତି ନବରମଣୀ
ଆଗ ନମସ୍କାର କର ଦ୍ୟୁମଣି
ଅମ୍ବୁଜାରେ ଅରଜିଲ ଅପ୍ରାଧ
ଅମ୍ବର ବିନା ମଜ୍ଜନ ବିରୋଧ,
ଅଧିକରେ ଲଜ,
ଅନା ଅନ ହେଲେ ରାମା ସମାଜ ।୪୦॥

ଆରମ୍ଭ ପୂର୍ବକ କରେ ନମସ୍କାର
ଅମ୍ଭୋଜମାରେ କି ପୂଜ ଭାସ୍କର
ଅଚ୍ୟୁତ ବୋଲେ ମନ୍ଦ କୃତ୍ୟ କର
ଅଧ ଅଧିକେ ଅଞ୍ଜଳି ସୁନ୍ଦରୀ

ଅଞ୍ଜଳି କବନ୍ଧି,
ଝଟରେ ଶିରେ ଦେଇ ରବ୍ବ ବୋଧ ||୪୧|

ଅଟେ ରମଣୀ ଶିରୋମଣି ରାଧା
ଅର୍କ ପୂଜନେ ହଟରେ ମନ ବାଧା
ଅଳ୍ପରେ କଟୁ ବଚନ ସୁମର
ଅନାପ୍ଳୁତରେ ବରଜ କ୍ଷମାଶି
ଅଣି ବେନି କର
ଅଷ୍ଟି ମୂର୍ଦ୍ଧ୍ନରେ ମଣ୍ଡି ମସ୍ତକର | ୪୨ ||

ଅଂଦେହ ଗେହରେ ନେଶ ପଥିକ
ଆଚ୍ଛୟକୁ କର ମଣିଲ୍ଲ ନାକ
ଅଲକ୍ଷ ହେଲେହେଁ ଲକ୍ଷ ବସ୍ତୁରି
ଅଙ୍କୁର ରୋମାଳି ଲେଖା କସ୍ତୁସି
ଅଟେ ହେମ ଝୁଳି,
ଅଧିକେ ମର୍କତ ମୀନା ଆବଳି || ୪୩ ||

ଅଷ୍ଟାପଦ ପଦକରେ ନାୟକ
ଆଖଣ୍ଡଳ ମାଳ ଉତ୍ତ ନାୟକ
ଆଲମ୍ବିତ ଉରେ କଞ୍ଚୁକ ଘାଳି
ଅସିତ ସୂକ୍ଷ୍ମ ଉଦର ରୋମାଳି
ଅଳି ଶିଶୁ ବ୍ରାତ
ଅନୁରୁଦ୍ଧ ସ୍ୱେ କରେ କ ବେଷ୍ଟିତ |୪୪|

ଅତନୁ ବବାହ ବେଧୀ ନୟନ
ଅଙ୍କୁର ତମାଳ ତୋରଣ ଘନ
ଆନନ ପୋତଟ୍ଟି ଜଘନ କୂର୍ମ
ଅସିତ ପଙ୍କ ଯୋଗେ ମନୋରମ
ଆସି ଭଗ ରୁକ୍ଷେ,
ଆଦର୍ଶ ସ୍ପୁତ କ ରହେ ପ୍ରତ୍ୟକ୍ଷେ |୪୫||

ଅଚ୍ଛି ଇନ୍ଦୀବର ହେମ ପାର୍ଶିରେ

ଅନଙ୍ଗ ସଂକଳ୍ପ ଜୟ ମଣ୍ଡରେ

ଅନାଙ୍କୁର ରେକେ (?) ଅବଲୋକ

ଅଟେ ହେମ ଚଳ ଦଳ ଦଳକ

ଅର୍ଭକ କାଳରେ,

ଅତନୁ କ ମଣ୍ଡିଥିଲା ଭାଲରେ ।୮୬।

ଆଲୋକ ପ୍ରେମନ୍ତ ଶୋଭା ରହରେ

ଆତୁର କେ ନୋହିବ ବଦେହରେ

ଅଟେ ହର ଧୀରୋଦାତ୍ତ ନାୟକ

ଅନାତୁର ବନ୍ଧୁ କାମ ସାୟକ

ଅନ୍ତରେ ବିଷାଦ,

ଆରାଧି ନାହାନ୍ତି ରାଧିକା ପାଦ ।୮୭।

ଅନୁଗୃହ ରାସେଶ୍ୱର ହେବ

ଆମ୍ଭରେ ପ୍ରେକା ରାସ ଅସମ୍ଭବ

ଅଭିଜ୍ଞା କାମକଳାରେ ନବୀନା

ଅଟନ୍ତି ମନ୍ତ୍ର ଉପାସନା ହୀନା

ଅଯୋଗ୍ୟ ଭକ୍ତ କି,

ଆମ୍ଭେ କହିବା ହିତ ଭାରଣକ ।୮୮।

ଅଙ୍ଗ ଶୋଭନ ମୁରୁଛୁ ନ ପାରି

ଅମ୍ବର ବଳମ୍ବେ ହଅନ୍ତି ହରି

ଆତୁର ହୋଇ କେ ଲଜ୍ଜା କାତରେ

ଆନର ଚିର ପିନ୍ଧେ ଚଉଚରେ

ଉବରେନ୍ଦ୍ର କୃଷ୍ଣ,

ଅତ୍ୟେତ ମୁରଲୀ ବାଦନେ ଦକ୍ଷ ।୮୯।

ଅଟବୀ ଦେବୀ ଆଦେଶରେ ଶୁକ

ଅଙ୍ଗ ହେଲା ବୋଲେ ପୀତ ଅଂଶୁକ

ଅନଙ୍ଗ ସ୍ମୃତି ମତେ ପ୍ରାପୃଷ୍ଟିତ

ଆସ୍ୟ ହିଜବଳେ ଚୁମ୍ବନ ଦତ୍ତ

ଅମ୍ବରୁହ ପାଣି,
ଅର୍ଚ୍ଚନ ଉରଜ ପିନାକ-ପାଣି । ୫୦ ॥

ଆବେଷ୍ଟିତ ରମ୍ୟ ମାରଦ ଅଙ୍ଗ
ଅଷ୍ଟାପଦ ଶକ୍ତ ମର୍କତ ଲିଙ୍ଗ
ଆମ୍ଭ ଉଲଗ୍ନ ଦେଖା ଦୋଷ ହତ
ଆଜ କହିଲେ ଶୁକ ପ୍ରାୟଶ୍ଚିତ
ଆଚରବୁଁ ରସି,
ଆଗତ କାର୍ତ୍ତିକ ପୌର୍ଣ୍ଣମୀ ନିଶି ।୫୧॥

ଅଟବୀ ଦେବୀ ନାଦମୂର୍ତ୍ତି ଠାରୁ
ଅଭ୍ୟାସ ରାସ ମନ୍ତ୍ର ଶିକ୍ଷାଗୁରୁ
ଆରାଧନା କର ରାଧା ପଦ୍ମର
ଆଗତ ଶରଦ ନିଶି ବିହାର
ଆହେ ବଂଶୀ ଧର,
ଅନ୍ୟଥା ନୋହେ ପ୍ରମାଣକୁ କର ॥୫୨॥

ଅଚ୍ୟୁତଙ୍କୁ ଖୋଜ ମଧୁମଙ୍ଗଳ
ଆସି ଭେଟି ବୋଲେ ତବ ମଙ୍ଗଳ
ଆମନ୍ଦ ପୃଥୁଳ ଅତନୁ ଆଣି
ଅଭିଷେକ କୁମ୍ଭ କୁଚ ନିର୍ମାଣି
ଅଧିକରେ ଶୋଭା,
ଆରମ୍ଭ ଶୁଭରେ ଜଘନ ରମ୍ଭା ॥୫୩॥

ଆଡ଼ମ୍ବର ପୃଥୁ ନିତମ୍ବ ବାଣା
ଆଣେ ନେତ୍ର ଲୋଳ ମୃଗ ଲକ୍ଷଣା
ଅତନୁ ଧନୁ ଜିଣିଲାନ ଭ୍ରୂରୁ
ଆଦରଣ ଫୁଲ୍ଲ ଆନନ ଗୁରୁ
ଅଧରେ ଫୁଲକ,
ଅଳପ ହାସ ହାରକ ଭୁଲକ ॥ ୫୪ ।

ଅଲଭ୍ୟ ବସ୍ତ୍ର ପାଲଟା ବସନ
ଆଜ ସହସ୍ରଯୋଜନ ପରସନ

ଅଗନ କଟି ଗତ କଷବର
ଅତନୁ ସମ୍ପତ୍ତି ସଞ୍ଚତେ ବର
ଅଛ ଆଜ୍ଞ ପାଇ,
ଆଖିର ମେଳ ରୁଚର କମ୍ପାଇ ।। ୫୫ ।।

ଯେ ଅବତୀର୍ଣ୍ଣ ଯୌବନ ବଜାର —
ଆଖିର କୁମାରମାନେ ଯେ କାଳେ
ଆନନ୍ଦେ ବର ଲଭ ଗୃହେ ଚଳେ
ଅପାଙ୍ଗ ଜିଣି ନେତ୍ର କରେ ଗତ
ଅଳ ପ୍ରାୟେ ମଣି ନବାରେ ଖତ
ଆଲୋକ ରେମାଳ,
ଅପଗା ଶୈବାଳ ଲଟଳ ବୋଲି ।। ୫୬ ।।

ଆଳକ ପତ୍ରରେ ମନ୍ଥର ଗତ
ଅଙ୍ଗକୁ ଭାର ବକ ଦୋଇଲ ଅନ୍ତ
ଅନା ବୋଲେ ବକ୍ଷେ କୁଚ ଅଚଳ
ଅଧିକେ ନତମ୍ବ ଜଂଘ ଯୁଗଳ
ଆରୋହ ଅପାର,
ଅନଙ୍ଗ ବସିଛୁ ବ୍ରଜକୁମାରୀ ।। ୫୭ ।।

ଶ୍ଳେଷ—
ଅଜ ଗୌର ପ୍ରିୟ ହରଚାମ୍ବର
ଅତ ସୁମନ ପୂଜ୍ୟ ଦେବବର
ଅଖିଳ ଭୂତେଶ ସ୍ତୁତି ଜୀବନ
ଅଶ୍ରୁ ବର୍ଣ୍ଣ ପୀତ କଳେବର
ଅଙ୍ଘ୍ରି ସେ ଦେବର,
ଅରଣ ଶ୍ୟାମସୁନ୍ଦର ଦେବର ।। ୫୮ ।।

## — ପଞ୍ଚମ କୁସୁମ —

# ଆଠ ଚଉପଦୀ

( ଏକ )

— ପୂର୍ବାନୁରାଗ —

|| ରାଗ – ମୁଖାରୀ । ଏକତାଳି ||

ଅରୁଣ ଅଧର ରେ ଗୋ, ଅନୁରାଗ ଧର ରେ ଗୋ ।
ଅଧୀନ ପରେ କଟାକ୍ଷ । ଅନୁ ନ ପାରୁ ପ୍ରାଣେଶ ||ପଦ||

ଆଗାରେ ପଞ୍ଜର ଶାରୀ । ଅଲୋକକୁ ସୁକୁମାରୀ ।
ଆଦର ଶୁଣି ସମ୍ବାଦ । ଅଙ୍ଗଣରେ ମଣ୍ଡୁ ପାଦ ||୧||

ଅନଙ୍ଗ ବାଣେ ଉଚ୍ଛନ୍ନ । ଅଲୋକକୁ ଛନ ଛନ ।
ଆସିଥିବେ ପରା ପ୍ରେଣେ । ଆପେ ଯେବେ ସଖୀ ଜଣେ ||୨||

ଅଧିକେ ବରତ୍ତ ଜନ । ଅଶେଷ ପୂର ରଜନୀ ।
ଅତି କୃଶ ବସ୍ତ୍ର ଭାର । ଅଟେ କୁଚ ଧରାଧର ||୩||

ଅନ ଆଗେ ପ୍ରେ ଚରିତ । ଆଖ୍ୟାତକୁ ଖ୍ୟାତବନ୍ତ ।
ଅନଳ ଭସ୍ମରେ ଯଥା । ଆଚ୍ଛନ୍ନରେ ଥାଇ ତଥା ||୪||

ଅତି ଭାଗ୍ୟେ ଚତୁରାକ୍ଷ । ଆଲୋକ ସୁଖ ଅଲକ୍ଷ ।
ଶ୍ରୀ ଶ୍ୟାମସୁନ୍ଦର ଦେବ । ଆଖ୍ୟାତେ ଜସ ସରବ ||୫||

( ଦୁଇ )

## — ଅତିଶଯ୍ୟାନୁରାଗ —

( ରାଗ—ଆଶାବରୀ । ତାଳ—ପଡ଼ତାଳ )

ଆରେ ଅଙ୍ଗନା ! ଅଧିକ ପ୍ରାଣରୁ ତୁ ମୋ ସଙ୍ଗ ।
ଅନଳେ ନୋହିଲେ ଜଳେ        ବୁଡ଼ିବି ମୁଁ ରି ଆକୁଳେ
ତୋ ବିଚ୍ଛେଦକୁ ନ ପାରି ସହି ।ପଦ ।

ଆସୁଁ ଆସୁଁ ମୋର ରତି        ମାନ୍ତରେ କର ପିରତି
ଲଲାଟ ଲେଖନ ଜଣା ନୋହି
ଅଶୁଦ୍ଧ ହେଲେ କାତର    ନୋହି ମୁଁ ପ୍ରେତେ ମାତର
ମା'ଗୁଅଛି କରିବାକୁ ବହି    ॥ ୧ ॥

ଅବଶ୍ୟ ଭୂତ ପଞ୍ଚକ        ନିଜ ଅଂଶରେ ବ୍ୟାପକ
ତୋ ଗମନ ମାର୍ଗେ ରହୁ ମହି
ଆପ ତୋ କେଳି ସରସୀ        ଆଦରଣେ ତେଜ ମିଶି
ବାତ ବିଞ୍ଚଣୀରେ ତୋଫୁ ରହି ॥୨॥

ଅଙ୍ଗରେ ରହୁ ଆକାଶ        ଦେହାନ୍ତେ ପୁନ ହରଷ
ନ ଦେବେ କ ପ୍ରେ ବିଧିରେ ପ୍ରେହି
ଆଳସ୍ୟ କରିଛୁ ହୃଦେ        ଧ୍ୟାନେ ବଶିବୁ ପ୍ରମାଦେ
ପ୍ରତ୍ୟକ୍ଷେ ବା ନ ପାରିବ ଗୃହି ॥ ୩ ॥

ଅବଲୋକନେ ନୟନ        ଶ୍ରବଣ ଶୁଣି ବଚନ
ତନୁ ସ୍ପର୍ଶେ ନାସିକା ମୋହି
ଆଶ୍ଳେଷେ ଭୁଜ ଇନ୍ଦ୍ରିୟ        ଓଷ୍ଠ ମଧୁ ସ୍ୱାଦୁମୟ
ଶ୍ରୀ ଶ୍ୟାମସୁନ୍ଦର ଦେବ କହି ॥୪॥୦॥

## ( ତିନି )

## — ସାବଧାନାନୁରାଗ —

( ରାଗ—କଳହଂସ । ତାଳ—ପଡ଼ତାଳ )

ଅରଣ୍ୟେ ପୃଷ୍ଟ ଡୋଳନ୍ତ ବେନ ଯୂଥେଶ୍ୱରୀ
ଅଟନ୍ତି ଧନ୍ୟା ଶ୍ୟାମଳା ନାମେ ମନୋହାରୀ । ସେ ଅଙ୍ଗନା ॥୧॥

ଅଚ୍ୟୁତ ଚରଣେ ଆସି ଧନ୍ୟା ନେଇ ବୁଜ
ଆସ୍ୟ ବନ୍ଦେ ଶ୍ୟାମଳା ଗଣ୍ଡରେ ଚୁମ୍ବ ସଜି ॥ ୨ ॥

ଆଳି ଜଣେ ଅଚ୍ଛି ବୃନ୍ଦଁ ଦେଖି ତା ଉରଜ
ଅଳପ ହସି ଦେଖାଇ ସୁସ୍ପଷ୍ଟ କରଜ ॥ ୩ ॥

ଅନଙ୍ଗ ସାୟକେ ବିଦ୍ଧ ହେଲା ତା ହୃଦୟ
ଆରମ୍ଭିଲେ ଖେଳ ହେନ ସଖୀ ସମୁଦାୟ ॥ ୪ ॥

ଅସ୍ତ୍ରପ ସ୍ୱମକୁ ନେଇ ବୋଲନ୍ତି ଯେ ମାର
ଆସ୍ୟ ଦେଖି କହୁଁ କୁଞ୍ଜେ ପିରତି ସମାର ॥ ୫ ॥

ଅଳି ନେଇ ଚୁମ୍ବୁ ଅଛି ତା ମୁଖ ସାରସ
ଆଖ୍ୟାତ ଶ୍ୟାମସୁନ୍ଦର ଦେବ କରେ ରସ ।୬।

---

## ( ଚାରି )

## — ଅଭିସାରାନୁରାଗ —

( ରାଗ—ମୁଖାରି । ତାଳ—ପଡ଼ତାଳ )

ସେ ଅଙ୍ଗନା, ଆଶ୍ଚର୍ଯ୍ୟ ଗାଥା
ଅଭିସାର ନଶୀଥରେ ପ୍ରେମେ କରନ୍ତି ।ପଦ।

ଅଧିକ ସୁଧା ଅଙ୍ଗଣ । ବୃଳନ୍ତି ପଦରଞ୍ଜଣ
କଣ୍ଟକ ନିର୍ବାରଣ । ମାର୍ଗ ଦଳନ ॥ ୧ ॥

ଅଦ୍ଧ ଚନ୍ଦ୍ରଙ୍କୁ ସ୍ୱାନ୍ତରେ । ଦେଖି ଚମକେ ସ୍ୱାନ୍ତରେ
ତା ମଣି ଦୀପ ଜ୍ୟୋନ୍ତରେ । ସୁଖେ ଗମନ୍ତି ॥ ୨ ॥

ଅଛି ଯେ ରମ୍ୟ ଭବନ । ତାହାକୁ ମଣନ୍ତି ବନ
ରକ୍ଷଣ ହୋଏ୍ୟ ଜୀବନ । ସର୍ବରେ ପନ୍ଥ ॥ ୩ ॥

ଅଲଭ୍ୟ କାନ୍ତ ପ୍ରସାଦ । ଲଙ୍ଘି ପ୍ରାଚୀର ପ୍ରାସାଦ
ନଷାଦେ ନୋହୁ ବିଷାଦ । ମନେ ଉଦ୍ଭ୍ରାନ୍ତ ॥ ୪ ॥

ଅଶେନ ପାତେ ବଦର । ଗୃହକ ମାନ୍ତ ଆଦର
ପ୍ରେମାନୁରାଗ ହୃଦର । ଜନିତ ଉଭ ॥ ୫ ॥

ଅଙ୍ଗନା କାନ୍ତି ବସନ । ବଲ୍ଲଭ ସିନ୍ଧୁ ପ୍ରସନ୍ନ
ରମଣୀ ପିନ୍ଧେ ତେସନ । ନାୟକ କାନ୍ତ ॥ ୬ ॥

ଆଶ୍ରୟ ଶ୍ରୀକୃଷ୍ଣ ଦେବ । ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲଇ କେ ଲକ୍ଷ ଦେବ । ସେ ରାଗ ମନ୍ତ ॥ ୭ ॥

---

( ପାଞ୍ଚ )

— ପୁଂସାଭିସାରାନୁରାଗ —

( ରାଗ—ଆହାରି । ତାଳ—ରୂପକ )

ଅମ୍ବୁଜ ମୁଖି, ଅଧିକେ ମୁଁ ଦୁଃଖୀ ।
ଆସିବାକୁ ନଥି କେତକାରେ ଥିଲା ଲେଖି । ପଦ ।

ଅନ୍ଧକାର ଆଗତରେ    ପ୍ରାଚୀର ଲଂଘି ଭିତରେ
ପଶିଲି କାମ କାତରେ    ଦ୍ୱାର ଥିଲା ଦେଖି ॥ ୧ ॥

ଅଳପ କବାଟେ ପାଣି    ଟୁକିବାରୁ ବାଣୀ ବାଣୀ
ଉଠିଥିଲୁ ପର ଜାଣି    ଜାଣେ ମାତ୍ର ସଖୀ ॥ ୨ ॥

ଆରବ କରୁଁ ନୂପୁର    ଚେତି ଶାଶୁ ବୋଲେ ହେର
ଶୁଣିଲୁ ପଲଙ୍କ ପର    ଡରେ ବୁଜି ଆଖି ॥ ୩ ॥

ଆଶା ଚନ୍ଦ୍ରକୁ ଆଗେଇ ବଦଶ୍ୟ ମୂଳରେ ସତ୍ତ୍ୱ
କା କଣ୍ଠରେ ଥିଲ ରତ୍ନ ସେତ୍ତ୍ୱ ଶାଖୀ ସାକ୍ଷୀ ।୪।
ଅଶ୍ରୁ ଯୋଗେ ଜଣା ଥିବ ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲେ ପଦ୍ମ କଇରବ ଆସିଥିଲ ରାତି ॥ ୫ ॥

---

( ଛଅ )

— ପ୍ରୀତି ଅନୁରାଗ —

(ରାଗ — ଚିନ୍ତା ମୁଖାରି । ତାଳ — ପଡ଼ତାଳ)

ଅଙ୍ଗନା !

ଅଙ୍ଗ ମୋ ଖଟଦୋଳ, ଅଙ୍ଗ ମଣ୍ଡ ହେମ ଛବି ଝଳ । ପଦ ।

ଆଜ ବରଜ ଲଜ ବରଜ ରାମା ଶିଖି ମନସିଜଂ କେଳ
ଅଜଣା ଯେବେ ଜାଜଣା ତେବେ ଖୁଦ୍ର ଘଣ୍ଟି କଟି ରୁଳ ରୁଳ ॥ ୧ ॥
ଅମୃତ କର ଝଟକ ଚର ମୁଖ ଝଟତରେ ଦେଖା ବାଳ
ଅନମିଷର ସମ୍ପଦ ସାର ନେତ୍ରେ ବଅ କମାଇଣ ବାଳ । ୨ ।
ଅଳପ ବ୍ରୀଡ଼ା ବଢ଼ାଇ ଲୋଡ଼ା ଦେଖିବ ନରୂଅ ଭ୍ରୂରୁ ବଲ୍ଲୀ
ଆନନେ ମଦ ହାସରେ ମନ୍ଦ- ଗମନା ମନ ବନ୍ଧନ ଶାଙ୍କୁଳ । ୩ ।
ଅଧିକ ଦୋଷ ମୋ ପ୍ରୀତି ବଶ ବିଶେଷରେ କରୁ ଗୁଣାବଳ
ଅନୁରାଗର ଶ୍ରୀ ଶ୍ୟାମସୁନ୍ଦର ଦେବ ବୋଲେ ପ୍ରୀତିରୁ କେ ବଳ ।୪।

---

( ସାତ )

— ରତି ଭୀତାନୁରାଗ —

(ରାଗ — ପାହାଡ଼ି । ତାଳ — ତ୍ରିପୁଟା)

ଅଚ୍ୟୁତ ଦେଖି ସଖୀ ବେନି ପୟୋଧର ଆସ ବରଷା କାଳ ମାତରେ
ଅଙ୍ଗ ସ୍ୱେଦ ମାରୁ ଅଳତା ଚନ୍ଦନ ଇନ୍ଦ୍ରଗୋପ କରକା କ୍ଷିତିରେ ॥ ୧ ॥

---

୧ । (କ) ମଜୀର

ଅସ୍ଫୁଟ ପିକ ବଚନ ନୃତ୍ୟ କରୁଅଛୁ କେକୀ ଦମକ ଗୁଣ୍ଠରେ
ଅଚଳ କୁଚ ଯୋଡ଼ାଇଥିଲ କରେ ପତ୍ରାବଳି ରୁଚି ବଚଡରେ ॥ ୨ ॥

ଅନଳ ଝଞ୍ଜା; ଶ୍ୱାସ ସୁମନା ସୁବାସ ଚନ୍ଦ୍ରଲକ୍ଷ୍ମା କଣ୍ଠ ଖଣ୍ଡରେ
ଆଶୁଗ ଘାତ ହରଣ ପର ଉପେକ୍ଷୁ ବୃନ୍ଦଂ ଦେଉଛ ଚଉକଣ୍ଠରେ ॥ ୩ ॥

ଆଳାପ ଶୁଣି ବୋଲନ୍ତି ବେଣୁପାଣି ବସିଥିଲ କେଉଁ ରତରେ
ଆଗତ କେ ପୁର ବୋଲେ ଶ୍ୟାମସୁନ୍ଦର ଦେବ ଆସିଲ ଯେଉଁ ଘଣ୍ଟରେ ।୪।

---

( ଆଠ )

— ନବାନୁରାଗ —

( ରାଗ—କାମୋଦୀ )

ଅନୁରାଗୀ ନବ ନବ ସୁକୁମାରୀ ସେ ବୃଷଭାନୁର କୁମାରୀ
ଅର୍ଦ୍ଧାଙ୍ଗ ଦେଖାଇ ଦେହଳରେ ଥାଇ ପ୍ରେକ ନେତ୍ର ଶର ମାରି ।ପଦ।

ଅଚ୍ଛନ୍ନ ସ୍ଥାନରେ ରହି ସେ ବରହ କେଶୀ ନବେଣି ନୟନ
ଅନ୍ତକେ ଦେଖି କାନ୍ତ ଦନ୍ତ ରସନା ଦଂଶି କରେ ପଳାୟନ ॥ ୧ ॥

ଅଜାଗେ ପନ୍ଥରେ ଭେଟ ହେଲେ ଥରେ ପୋତି ମୁଖ ନଶାପତି
ଆମଣା କର ବଳୟ ରତ୍ନାକର ରହେ ବସ୍ତ୍ର ବୃନ୍ଦେଁ ପତି ॥ ୨ ॥

ଅପାଙ୍ଗ ଖରଣ ବାଣ କି କାରଣ' ବନ୍ଧିଲୁ ଶୁଣି ପ୍ରେମନ୍ତ
ଅଧର କୋଣରୁ ଚନ୍ଦ୍ରହାସ ସରୁ କାଢ଼ି ଦେଖାଇ କେମନ୍ତ ॥ ୩ ॥

ଆନରେ ନୟନ ଦେଇ ସାବଧାନ କୃଷ୍ଣ ଗୁଣ କୀର୍ତ୍ତନରେ
ଅନ୍ତର ମନ୍ତ୍ର ଶ୍ରୀ ଶ୍ୟାମସୁନ୍ଦର ଦେବ ବୋଲେ ଭଜନରେ ॥ ୪ ॥

---

୧ । (କ) କାମ୍ବୋଦ
୨ । (କ) ବକାରଣ

## — ଷଷ୍ଠ କୁସୁମ —

# ଚଉତିଶା ଲେଖନ

। ରାଗ—ଶଙ୍କରାଭରଣ ।

( ସୀତା ହରଣ ଚଉତିଶା ବାଣୀରେ )

ଆସି ଶିଶିର ଦାସୀର ଶୋଭ କଲା ଠେକ
ଆଗପା ନଳିନ ମୁଖ ମଳିନ ବ୍ୟାପକ
ଅଳ୍ପ ହାସରେ ରଞ୍ଜକ,
ଆଶ୍ରମ ରାମା ଦେଖାଇ କୁନ୍ଦଦନ୍ତ ସ୍ତୋକ ॥ ୧ ॥

ଅମ୍ଭୋଜନୀ ବରହରେ ପ୍ରଖର ମୟୂଖ
ଆଗେ କବଳିତ ହେଲେ କୁଜ୍ଝଟିର ମୁଖ
ଅଧିକରେ ଲଭି ସୁଖ,
ଆଚାର ଦମ୍ପତି ରତି ପ୍ରଭାତେ ଅଲେଖ ॥ ୨ ॥

ଅଦୃଶ୍ୟ କମଳ ଗିରି ଯୋଡ଼ାଇଲା ବେଗ
ଅବମା ବନିତା କୁଚ ଚନ୍ଦନେ କି ଯୋଗ
ଅଭିସାର ଜାର ସଙ୍ଗ,
ଆପଗା ଘାଟରେ ବାଟୀରେ ନିଃଶଙ୍କେ ଉଦ୍ବେଗ ।୩।

ଆତଙ୍କ ରଥାଙ୍ଗ ମୁଦ ନିଶାଚର ଉଘ
ଅନଙ୍ଗଙ୍କୁ ସ୍ୱ ସ୍ଥାନ ମକର ଦେଲା ମାଘ
ଆଟୋପ୍ତ ସେ ଶୀର ବାଘ,
ଅଭିମତ ଆଲୋଚନା ତରୁଣ ପରିଘ ॥ ୪ ॥

ଅକ୍ଷତ ତନ୍ତ୍ର ଲୋମ୍ବଳ ବ୍ୟାଜରେ ପ୍ରଦାନ
ଅପ୍ରସର ଇଚ୍ଛା ତନୁ ସେ ତନ୍ତୁ ରାଜନ

ଅଙ୍ଗନାର ଅପଘନ,
ଅଙ୍ଗକୁ ଶୋଚକ ଯଥା ହେମନ୍ତ ତପନ ।। ୫ ।।

ଆପରେ ତପରେ ସ୍ନାନ ମଜ୍ଜନ ସେବ୍ୟ ପାଞ୍ଚ
ଅନେକ ଜନମେ ମିତ୍ର ଶ୍ୟାମା ରମ୍ୟ କୁଚ
ଅଙ୍କ ପୀଠ ଉର ମଞ୍ଚ,
ଅବିରତ ରତି ସୁରତରେ ବଘ୍ନ ନ ଚ ।। ୬ ।।

ଆସେ ବସନ୍ତ ପଞ୍ଚମୀ ଶୀତ ଲଟା ଗଚ୍ଛ
ଅଶ୍ୱିମା ଅଶ୍ୱ ଆରୋହେ ନଶାପତି ସ୍ୱଚ୍ଛ
ଅଟ୍ଟୁ ଅନଙ୍ଗର ପଚ୍ଛ,
ଅନଳେ ବୋଲ୍ଲେ ତ୍ରିଗୁଣ ଧରି ଆଗେ ଗଚ୍ଛ ।।୭।

ଆଜ ଅରମ୍ଭି ମାଶବା ଶ୍ୱେର ପଣେ ଆଜ
ଅଜାଗ୍ରତେ ରକ୍ଷଚ୍ଛନ୍ତି ତରୁଣ ସମାଜ
ଅତି ପାଣ୍ଡେ ଦେଲେ ସଜ,
ଅବିର ବ୍ୟାଜେ ଆଶୁଗ ବଘାତି ଷଟଜ ।। ୮ ।

ଆନନ୍ଦ ଶ୍ରୀମନ୍ତ ସ୍ୱେ ଶ୍ରୀ ପୂର୍ଣ୍ଣା ଅର୍ଥ ବୃଷ୍ଟି
ଅଧିକେ ବସନ୍ତ ବେଶ ଶିଶୁ ଯୋଗେ ଶଷ୍ଟି
ଆଣି ଲେମ୍ବୁରସ ମଷ୍ଟି,
ଅଭୁକ ହରିଦ୍ରା ପେଷି କାନ୍ତ ତ୍ୱଶ ଶୁଷ୍ଟି ।। ୯ ।।

ଆଲେପିତ ସେ ହରିଦ୍ରା ଅଙ୍ଗେ ଶ୍ୟାମା ଶଙ୍କା
ଅନେକ ବସନ୍ତ ବୃନ୍ତୁ ହୋଇଲେ ଅବଜ୍ଞା
ଅମଳିନ ପୁଷ୍ପ ସଂଜ୍ଞା,
ଆମନ୍ତ୍ରନ ମାଳ ବିଦ୍ୟୁ କେଶ ଘନେ ବଜ୍ଞା ।। ୧୦ ।

ଅଭିନବ ବାସ ହରିଦ୍ରାର ରସେ ସ୍ଫୁଟ
ଅଙ୍ଗେ ଥିବାଭି ସନ୍ଦେହ ଅତନୁ ପୁରଟ
ଆଦ୍ୟ ଉତ୍ସବ ପ୍ରକଟ,
ଆଣି ବସନ୍ତ ତିଳକ ଲେଖି ଭାଲପଟ ।। ୧୧ ।।

ଅତି ମୃଦୁ ଶେଯେ ବାସ ବେଶେ ବମ୍ବଓଷ୍ଠୀ
ଅଙ୍କୁରି ଚଳେ ଅଚ୍ୟୁତ ଆପଣେ କ ଉଠି
ଆଲିଙ୍ଗିତ ହେବନ୍ତି କଣ୍ଠୁ,
ଆଧ୍ୟାନ ଶ୍ୟାମସୁନ୍ଦର ଦେବର ବୈକୁଣ୍ଠ ।୧୨।।

—ଗୀତ—

।। ରାଗ — ଚକ୍ରା ।।

(ରସକୁଲ୍ୟା ବାଣୀରେ)

ଅଚ୍ୟୁତ ରାହେ ପଲଙ୍କ ପର୍ହୁଡ଼ି
ଆଚ୍ଛାଦିତ କଲ୍ପ ଝରକୁ ହୁଡ଼ି ।
ଅନଙ୍ଗ ସବଳେ ପଡ଼ିଲା ମାଡ଼ି
ଅପମାନ ହେଲେ ସଖୀଙ୍କୁ ଗୁଡ଼ି ସେ ।
ଅନ୍ତେ ରାଧା ଖୋଲି ଜଡ଼ି ସେ,
ଅନ୍ଧାରେ ବନ୍ଧୁର ପନ୍ଥେ ପଥ ହୁଡ଼ି
ଆସନ୍ତି ଜାବଟ ଲେଉଡ଼ି ସେ ।୧।

ଆଗାରକୁ ଅଛି ପ୍ରାଚୀର ବେଢ଼ି
ଅଲଂଘ୍ୟ ଲଂଘାଇଲା ଭୟ ବଢ଼ି ।
ଅଛନ୍ତି ମନୋରଥ ରଥ ଚଢ଼ି
ଅଜଣା ସେ କାମ ଶାସ୍ତ୍ର ନ ପଢ଼ି ସେ ।
ଅସ୍ତ୍ରନେତ୍ର ଅଛି ଗଢ଼ି ସେ,
ଅଳି ଅରଣ୍ୟରୁ ଆସି ରମେ ସରେ
ଆଇ ପଡ଼ ଫୁଲଝଡ଼ି ସେ ।।୨।।

ଅଛି ଗୋଢ଼ାଇ ପଛେ ରଣ ରଣ
ଅଚ୍ୟୁତ ଆସି ରାଧାରେ ଶରଣ ।
ଆଚ୍ଛନ୍ନ ନଶାର ମଧ୍ୟ ଚରଣ
ଆପଣ ପାଣିରେ କଲେ ଗ୍ରହଣ ସେ ।

ଉଠେ ଚେଟି ଆଚରଣ ଯେ,
ଆଳସ ନିଦ୍ରାରେ ନିଷେଧିଲେ ସୀତ
କର ସମ୍ମୁଖ କାରଣ ଯେ ।୩।

ଉଠିରେ ହୋଇ ନିଦ୍ରା ଉପହତ
ଅଚ୍ୟୁତଙ୍କୁ ଅବଲୋକ ବସି ତ ।
ଆଦରେ ପାଦରେ ହୋଇ ପ୍ରଣତ
ଅଙ୍ଗ ପୋଛିଦେଲେ ଧରି ପଣତ ସେ
ଆଣି ବସନ୍ତ ପୁରତ ଯେ,
ଅଗୁରୁ ଧୂମେ ଧୂପିତ ପୁର କରି
ପରସ୍ପର ଆଲିଙ୍ଗିତ ଯେ ।।୪।

ଅଚ୍ୟୁତ ବୋଲନ୍ତି ଆଜ ମନ୍ମଥ
ଆଜ ମାରିକ ମୋର ମନୋରଥ ।
ଅବଶ୍ୟ ସନ୍ଧି ପକାନ୍ତା ଯଥାର୍ଥ
ଅଙ୍କେ ତୋ ବସିବାର ହୋନ୍ତା ବ୍ୟର୍ଥ ସେ ।
ଆସିଲ ଭଜବ ପଥ ଗୋ,
ଅବଳାମଣି ଆଶ୍ୱାସେ ଦୁଃଖ ଶୁଣି
କର ମାର ହୃଦ ପଥ ଗୋ ।୫।।

ଆରମ୍ଭିଲେ ରତି ମଦନ ବାଦ
ଅଧିକ ବଜାଇ ମଞ୍ଜୀର ବାଦ୍ୟ ।
ଅତି ଦୂର ଗଲା ଶୁଣି ସେ ନାଦ
ଅଚ୍ୟୁତ ଶୁଖାଇଲେ ଦେଇ ଖେଦ ସେ ।
ଅନ୍ତରେ ଲଭି ପ୍ରମୋଦ ଯେ,
ଅଙ୍କେ ବସାଇ ବସନ୍ତ ବେଶ ଛବି
ପରଶଂସି ପଦ ପଦ ଯେ ।୬।

ଅଙ୍ଗନା ବୋଲେ କୃଷ୍ଣ ଅବରୋଧ
ଅନୁଭବ କେଳି ହୋଇଲା ବୋଧ ।
ଆଜି ପ୍ରେମିକ ପରବାସେ ସଧ
ଆଲୋକ ଅଟବୀ ଚଟିମା ରୋଧ ସେ ।

ଅତନୁ ଲୀଳା ଲବଧି ଯେ,
ଅଙ୍ଗୀକାର କର          ଧର ବୋଲେ ପିବା
ନକଟେ ନାହିଁ ବିରୋଧ ଯେ ।୭।

ଅଧିକ ସିତ ଉରେ ଆଲିଙ୍ଗନ
ଅଙ୍ଗେ ଅଙ୍ଗେ ଦୁଗ୍ଧ ଜଳ ବିଧାନ ।
ଅଚଳ ଉରଜ ହୃଦେ ନିଧାନ
ଆଣି କୌଶେୟ ନିଶାର ପିଧାନ ସେ
ଅଲେଖ ସୁଖ ଶୟନ ଯେ,
ଅଶରେ କୁକୁଟ          ମୁକୁଟ କୁଟେ କି
ନନଦେ କଲା ଛେଦନ ଯେ ।୮।

ଅତ୍ୟୁତ ସଭୟେ ତେଜି ତଳପ
ଆପଣାକୁ ଗଲେ ଜନ କଳାପ ।
ଅନୁଗତ କଲେ ମୁଣ୍ଣ ଚାପ ସେ
ଆଳତପୁ ମିଳ ରାଧା ସଙ୍ଗୀତ ଯେ ।
ଆସ୍ୟରେ ହାସ ଅଳପ ଯେ,
ଅନ୍ୟେ ଇଙ୍ଗିତ          ନେତ୍ରାନ୍ତୁ ଜାଣି ବୃନ୍ଦ
କ୍ଷତ ହୋଇନାହିଁ ଲୋପ ଯେ ।୯।

ଆଜ ଶେଷର ପଣେ ମଦନ ରୋପ
ଅଭିନବ ଗୁଣ ସାଜ ଦ୍ୱିରେଫ ।
ଆଲୋକ ଭୟୁ ଧର ହୃଦ-ଗୁମ୍ଫ
ଅପିଥିବେ ପୀଡ଼ା ଲକ୍ଷଣ ଗୁଳ୍ଫ ସେ ।
ଅଚଳ ଉରଜ ଗୁମ୍ଫ ଯେ,
ଆଶ୍ରୟ କରଥିଲା          ନାଭି କୁରଙ୍ଗ
ଦେଖ ତାର ଚନ୍ଦ୍ର ଶଫ ଯେ ।୧୦।

ଆନ ବୋଲେ ଆଜ ପାପେ ଗ୍ରାସିବ
ଆଶ୍ଚର୍ଯ୍ୟ ମାତ୍ର ତୋଷେ ଅନ ଧବ ।
ଆଜ ନ ବଶୋର ପଦ୍ମିନୀ ଲ୍ୱବ
ଆସି ନିବ୍ରିତ ଛବ ଦେଖିଥିବ ସେ ।

ଆତୁରରେ ଦେଇ ଚୁମ୍ବ ଯେ,
ଅଧିକେ ବସନ୍ତ କେଶର ସୁଷମା
ବଢ଼ିଥିବ ଅବସ୍ଥବ ଯେ ॥୧୧॥

ଆନ ବୋଲେ କାଳ ବେଶ ଆରମ୍ଭ
ଅନ୍ୟଥା ବୃଥା ନୋହୁ ହେଲା ଶୁଭ ।
ଅଟେ ଶ୍ରେଷ୍ଠ ଋତୁ ଯେ ସୁଖ ଲଭ
ଅମର ନାଗ ଆଦରେ ଦୁର୍ଲ୍ଲଭ ସେ ।
ଅନୁଭବ ପଦ୍ମନାଭ ଯେ,
ଅଟେ କବିବର ଶ୍ରୀ ଶ୍ୟାମସୁନ୍ଦର
ଦେବ ବର୍ଣ୍ଣନେ ସୁଲଭ ଯେ ॥୧୨॥

— ଗୀତ —

॥ ରାଗ – କାମୋଦୀ ॥[୧]

( ଯଦୁସିଂହ ଚଉତିଶା ବାଣୀରେ )

ଅନକୂଳ ଆରମ୍ଭ ସ୍ଥାପେ ମଙ୍ଗଳ କୁମ୍ଭ
ଫାଲ୍‌ଗୁନ ମନୋରମ ଯେ
ଅରୁଣ କଶଳସ୍ତ ଧଣ୍ଡା କଲେ ଉଦୟ
ବସନ୍ତ ନୃପ କାମ ଯେ
ଆହେ ଧୀରେ, ଆଗମ ଲତା ଦ୍ରୁମେ ଯେ,
ଆଶ୍ରାସି ସୈନ୍ୟରାଜ ପ୍ରସାଦ ଦେଇ ସାଜ
ବଶ୍ୟ କଣିମା କାମରେ ॥ ୧ ॥

ଅବଳା ବୟଃସନ୍ଧି ପରି ବସନ୍ତ ବଧି
ଆଗମ ଶୋଭାମୟ ଯେ
ଅଙ୍କୁରିତ ଉରଜ ନବଗୁଚ୍ଛ ବରାଜ
ଶୋଭା ବୃଦ୍ଧି ଉଦୟ ଯେ

---

୧ । (କ) କାମ୍ବୋଦ

ଆହେ ଧୀରେ, ଅଟେ କେତକୀ ବାସ୍ତୁ ଯେ,
ଅଳି ନେତ୍ର ଚଞ୍ଚଳ ହାବ ଯୁତେ¹ ମଞ୍ଜୁଳ
ବଚନ ବନ ପ୍ରିୟୁ² ଯେ ॥ ୨ ॥

ଆସି ପ୍ରବେଶ କିବ ବହିରେ ଯୋଗ କିବ
ଶ୍ରବଣା ସୋମବାର ଯେ
ଅନ୍ତ ଯୋଗ ଆଗତ ଷଷ୍ଠ ବରଷେ ଖ୍ୟାତ
କଲେ ତଣକ ବାର ଯେ
ଆହେ ଧୀରେ, ଆଖିର ନୃପବର ଯେ,
ଅମ୍ବିକା ବନ ସର୍ବେ ଗମେ ଯାହା ଉତ୍ସବେ
ଶୁଣି ହେଲେ ତତ୍ପର ଯେ ॥ ୩ ॥

ଅନମାନ କେ ଦ୍ରବ୍ୟ ଭର ବାହାର ଜବ
ବ୍ରଜବାସୀ ସକଳ ଯେ
ଅଚ୍ୟୁତ ଗ୍ରାମ ଆଦ୍ୟ ପନ୍ଥେ ଭୋଜନ ସାଦ୍ଧ
ପ୍ରବେଶ କିବ ସ୍ଥଳ ଯେ
ଆହେ ଧୀରେ, ଅରଣ୍ୟର ମଞ୍ଜୁଳ ଯେ,
ଆଲୋକ ପରଶଂସି ପୁଷ୍ପ ଫଳ ବଶେଷି
ରାଧାଦ ରାମା କୂଳ ଯେ ॥ ୪ ॥

ଅନାଶନରେ କିବ ଗଙ୍ଗାରେ ସ୍ନାନ ନବ
ବ୍ରଜ କୁମାରୀ ସର୍ବେ ଯେ
ଆରାଧି ବୃନ୍ଦା ନାନ୍ଦୀ- ମୁଖୀ ଚରଣ ବନ୍ଦ
ମନ୍ତ୍ର ଗ୍ରହଣ ଜବ ଯେ
ଆହେ ଧୀରେ, ଅଚ୍ୟୁତ ଯୋଗ୍ୟ ହେବ ଯେ,
ଅଙ୍ଘ୍ରି ରାଧାର ସେବ ଅନୁଗ୍ରହକୁ ଲଭ
ଯେଜନଲେ ଭକ୍ତି ଭାବ ଯେ ॥ ୫ ॥

---

୧। (କ) ହାଁସ ଯୁତେ

୨। (କ) ପ୍ରିପ୍ରିୟୁ

ଆନନ୍ଦ ବୀଣା ଗୀତ     ଆଦି ରାସ ସଙ୍ଗୀତ
ବୃନ୍ଦା ଶିକ୍ଷାରେ ବଶ ଯେ
ଆଭୀର ନୃପ ଆଦି     ରତି ଜାଗର ବିଧି
ତୋଷି ଅମ୍ବିକା ଈଶ ଯେ
ଆହେ ଧୀରେ, ଅଙ୍ଗନାଚୟ ବନ୍ଧୁ ବେଗେ ଯେ,
ଅନେକ ଦେଶୁଁ ଆସି     ଅନିମିଷରେ ରସି
ଆଲୋକ ହୃଷିକେଶ ଯେ ॥ ୬ ॥

ଅର୍ଦ୍ଧ ନିଶିରେ ନନ୍ଦ     ଶୟନେ ଥିଲେ ପଦ
ଗିଳିଲା ଆଶୀବିଷ ଯେ
ଆଭୀରଙ୍କ ଆୟୁଧ     ଘାତରେ ନୋହେ ବଧ
ଅଧିକେ ଅମରଷ ଯେ
ଆହେ ଧୀରେ, ଆକୁଳିତ ବିଶେଷ ଯେ,
ଅଚ୍ୟୁତ ନିଦ୍ରା ହତ     କରିଲେ ପଦଘାତ
ମଲା ନନ୍ଦ ନିର୍ବିଷ ଯେ ॥ ୭ ॥

ଅଟେ ଗନ୍ଧର୍ବ ପତି     ଶାପୁଁ ହେଲା ମୁକତି
କୃଷ୍ଣ ପାଦ ସ୍ପରସ ଯେ
ଅର୍ଚ୍ଚିଲେ ଗନ୍ଧର୍ବ     ବିଦ୍ୟାକୁ ଦେଇ ସର୍ବ
ଗଲା ନିଜ ନିବାସ ଯେ
ଆହେ ଧୀରେ, ଆଲୋକ ଅଂକାଶ ଯେ,
ଅନ୍ତର୍ଦ୍ଧିରୁଁ ମାଗି ବିଦ୍ୟା     କୁମାଷ ବାଢ଼େ ବୃନ୍ଦା
ବାଣ୍ଟି ଦେଲେ ସରସ ଯେ ॥ ୮ ॥

ଆପେ ନନ୍ଦ ନନ୍ଦନ     ଭୋଜନ ପୁଷ୍ପ ଚନ୍ଦନ
ସେ କୁମାଷ ନିବନ୍ଧ ଯେ
ଆଚରିଲେ ନାନ୍ଦୀ-     ମୁଖୀ ସହ ବୃନ୍ଦାଦି
ସେ ଗାନ୍ଧର୍ବ ବିବାହ ଯେ
ଆହେ ଧୀରେ, ଅଠବା ଶୋଭାବହ ଯେ,
ଅଚ୍ୟୁତ ରହି କେଳି     ରାଧା ବଚନ ପାଳି
ଜାତ ସୁଖ ସନ୍ଦୋହ ଯେ ॥ ୯ ॥

ଅଷ୍ଟଖା ଦେଖା ପୂର୍ବ ପର ନବ୍ୟାଦେ ସର୍ବ
ଯେ ସ୍ୱଧାନ ଅସଂଖ୍ୟ ଯେ
ଅଚ୍ୟୁତ ପ୍ରିୟ ବାଳୀ ଶ୍ରୀରାଧା ଚନ୍ଦ୍ରାବଳୀ
ସ୍ୱଦେଶୀ ରାମା ଲକ୍ଷ ଯେ
ଆସି ଚହିଁ, ଆରାଧିଲେ ପ୍ରତ୍ୟକ୍ଷ ଯେ,
ପ୍ରାଣେଷ୍ଟ କୃଷ୍ଣ ବର କହେ ଶ୍ୟାମସୁନ୍ଦର
ଦେବ ଚନ୍ଦ୍ର ପଦ୍ମାକ୍ଷ ଯେ ।। ୧୦ ।।

— ସପ୍ତମ କୁସୁମ —

# ଢଗ ଲେଖନ

। ଦଶ ଢଗ ବୃତ୍ତେ ।

ଅମ୍ବିକା ବନ　　　　　ଗହଳ ଜନ
　　ଅତୁଳ ହାଟକୁ ସ୍ୱର୍ଗ ସମାନ ।
ଅଙ୍ଗ ବ୍ରେଡ଼ଙ୍ଗ　　　　　ବଙ୍ଗ ତେଲଙ୍ଗ
　　ଆସି ଛପନ ଦେଶ ଲୋକ ସଙ୍ଗ ।୧।

ଆଲୋକ ପାଠ-　　　　　ଗ୍ରଣୀ କେ ବଟ
　　ଅନ୍ତକେ ମିଳ ବାଣୀ କଳ୍ପ ସ୍ଫୁଟ ।
ଅବମା ଭୂତ　　　　　ବକ୍ଷରେ ସ୍ଥିତ
　　ଆସିଛୁ କର କରିବାକୁ ଦତ୍ତ ।୨।

ଅଙ୍ଗନା ଚିତ୍ତ　　　　　ଜାଣି କଥିତ
　　ଅନୁଗ୍ରହ ନେମୁ ପାଠ ବରତ
ଆତ୍ମଜା ବର　　　　　ଗିର ସୁନ୍ଦର
　　ଆଲୋକ କେ ବଟ କହଇ ଗିର ।୩।

ଆସିଛୁ ପୀତ　　　　　ଅ ଙ୍ଗ ନମିତ୍ତ
　　ଆତୁର ଯା ମାରେ ଦ୍ରୁଅଇ ଚିତ୍ତ ।
ଅମ୍ବୁଜ ଦୃଶୀ　　　　　କଣ୍ଠ ଦେ ଭ୍ରଷି
　　ଅଛୁ ତ୍ର ଯାମା ମଧ୍ୟ ଦେଖ ଆସି ।୪।

ଅତି ଜଗତ　　　　　ସୁହରେ ଖ୍ୟାତ
　　ଆଲୋକ ନାଗର କହେ ଭାରତ ।
ଅଟୁ ବିବେକ ଗୋ　　　　　ଆଣ ମସ୍ତକ
　　ଅନ୍ୱେଷଣା ଦ୍ରବ୍ୟ ସୁହକାରକ ।୫।

ଆଳାପ ଶୁଣି ଜରତ ଭଣି
ଅନେକ ସୂଦ ଅଛୁ ମୁହିଁ ଜାଣି ।
ଅଛୁ ବେଶରେ ସୂଦ ମୋ ଠାରେ
ଅଦଭୁତ ଦେଖାଇ ବବାସରେ ।୭।

ଆଲୋକ କର ସୁନାର ନାଶ
ଆଦର କର ନାଗର ପରୁଷ ।
ଅଛୁ ସୁବର୍ଣ୍ଣ କେତକ ବାନ
ଅଧିକ ରତ ଇଚ୍ଛା ବର୍ତ୍ତମାନ ।୭।

ଅବଳା ବାକ୍ୟ ଅଛୁ ପଦକ
ଅନରୁପେ ନ ମିଳଇ ନାୟକ ।
ଆଗରେ ମିଳ ତାମ୍ବୁଳ ବାଳ
ଅଳ୍ପ ବୟସୀରେ କହେ କେ ଭଲ ।୮।

ଅଧର ରାଗ ପାଇ ସରାଗ
ଅଧିକ ସ୍ୱାଦୁ ପାନ ବଣ୍ଟ ବେଗ ।
ଅଛୁ କ ସୁଧା ପୁରରେ ଶ୍ରଦ୍ଧା
ଅଟରେ ସ୍ୱାଦୁ ବୁଝ୍ ବୋଲେ ମଧ୍ୟା ।୯।

ଆଲୋକ ମାଳା- କାର ଅବଳା
ଆସି କେ କହେ ଦେଖି ଅଳଅଳା ।
ଆସିଲ ଖଟରେ ଗୋ ଚନ୍ଦ୍ରା ମନରେ
ଅନୁଦନ ମଲ୍ଲ ସୁମନ ଶରେ ।୧୦।

ଅବଳା କନ୍ତ ଜାତି ତ ନାହିଁ
ଅମ୍ଳାନ ଯୋଗ ସର୍ବଦାରେ ମୁହିଁ ।
ଆବାସେ ମୋର ପ୍ରେମ ବେଶର
ଅନବରତେ ଶୋଭା ସୁଂ ନାଗର ।୧୧।
ଆଲୋକ ଘଷ କେ କଲା ପ୍ରକାଶ
ଆସି ଗୁଡ଼ାକାର ରମଣୀ ପାଶ ।
ଅଛୁ ମନାସି ଗୋ ଦେବଙ୍କୁ ଆସି
ଆଜ କରବ ଭୋଗ ଚଉ ରସି ।୧୨।

ଅବଳା ଧୀରେ ବୋଧିଲା ଗିରେ
ଆମଧୁର ସାକର ସୁଖ ଜାରେ ।
ଆଖିଶ ପାଶେ ଯାଇ କେ ଭାଷେ
ଆକାଙ୍କ୍ଷା ଗୋରସ ଦେବୁ ବଶେଷେ ॥୧୩॥

ଅବଳା ଶୁଣି ଇଙ୍ଗିତେ ଭଣି
ଅଧରେ ରଖିଅଛୁ ଆଗୁଁ ଜାଣି ।
ଆତୁର ପସ୍ତୁ କଳସ ଦ୍ୱସ୍ତୁ
ଅଛୁ ଉଦ୍ଧେ ଯ,ହା ରୁଚବ ନସ୍ତୁ ॥୧୪॥

ଅମ୍ବର କାର ବନିତା ସାର
ଆଗେ କେ କହେ ଥାନ ଲୋଡ଼ା ମୋର ।
ଅବଳା ବୋଲେ ଥାନ ନ ମିଳେ
ଆସ ବାସକୁ ଦେଖା.ଇବ ଭଲେ ॥୧୫॥

ଆଳାପ ଯେତେ କେ କାମ ଆରତେ
ଆସି ଲୋହକାର ସମା ପୂରତେ ।
ଆକାଙ୍କ୍ଷା ମୋର ଗୋ ଯେତେ ମାତର
ଅବଲୋକବ ଚନ୍ଦ୍ରହାସ ତୋର ॥୧୬॥

ଅବଳା ବୋଲେ ପ୍ରଦ୍ୟୁମ୍ନ ବଳେ
ଆସିଲେ ରହ ଦେଖାଇବ ଭଲେ ।
ଆସି କୁସଳ ସମା ମଞ୍ଜୁଳ
ଅବଲୋକ କେତୁ କହେ ଶୀତଳ ॥୧୭॥

ଅଛଇ କାନ୍ତି ଗୋ ଲୋଡ଼ଇ ମୂର୍ତ୍ତି
ଅଧିକ ସେହ ପାଣ ଥିବ ଯନ୍ତି ।
ଆଳାପ ଧୀର କଳ ଉପର
ଆଲୋକ ଯେଠାରେ ମହତ ସର ॥୧୮॥

ଆସି ନାଗରୁ ରଙ୍ଗା ଗାବର
ଅବଳାକୁ ବୃତ୍ତି କହଇ ଗିର ।
ଅଛୁ କ ତସ ଦେଖନ୍ତା ନେସ
ଅଧିକ ସରେ ସୁଶୋଭନ ଗାଡ ॥୧୯॥

ଅବଳା ଭଣେ ଚନ୍ଦ ମୁଁ ଜାଣେ
ଆଲୋକ ରାଗ କୁସୁମ ପ୍ରମାଣେ ।
ଅମ୍ବୁଜ ମୁଖ ଚନ୍ଦ ଦୃଷ୍ଟେଷ
ଆଜ ସର୍ବତୋମୁଖ କୁଞ୍ଜେ ଦେଖ ।୨୦।।

ଆରକୁଠାଦ ଗାଦ ସମ୍ବାଦ
ଅବଳା ରଖିବା ଦେଖି କେ ବଦ ।
ଅଙ୍କୁ କ ଜାଣି ଗୋ କୁଣ୍ଡ ନର୍ମାଣି
ଆଗ୍ରହେ ସେ ବଜାରେ ନାହିଁ ଆଣି ।୨୧।
ଅର୍ଦ୍ଧ ମାଳ ଚନସ୍ପା ବାଳ
ଅନେକ ରୂପ କେ କହଇ ଭଳ
ଅଦରଶନ ହେଲେ ଈଶାନ
ଅର୍ଦ୍ଧଚନ୍ଦ୍ର ଦେବ କରନ୍ତୁ ମନ ।୨୨।

ଅଙ୍ଗନା କନ୍ତୁ ସେ ରାଜା ଯାଇ
ଆନ ରାଜା ହେଲେ ପାରନ୍ତୁ ଦେଇ ।
ଅଶ୍ୱ କାଷ୍ଠର କର ବିସ୍ତର
ଅଟ୍ଟ କଡ଼ଆଳେ ହେଲେ ସୁନ୍ଦର ।୨୩।

ଅନେକ ମାଟି ପାଦ ପ୍ରକଟି
ଅରୁଣ ରୁଚି ଫୁଲ ଯେବେ ଫୁଟି ।
ଆସି ବନ୍ଧକ୍ଷ ଧ୍ୱଂସ ଆଲୋକ
ଆମ୍ର ମୂଳେ ବୋଲେ ଅଛୁ ଚପୁକାକ୍ଷୀ ।୨୪।
ଆମ୍ର ଦ୍ରୁପତ ପାଖରେ ରାତ୍ତ
ଆସି ଜଗନ୍ତ ଯେ ବେଦର ପତ ।
ଆସନ୍ତ ଗୃହ ଚେତା ମୋହର
ଅଦୃଶ୍ୟ ଚକ୍ଷୁ ନଶାରେ ଅମ୍ବାର ।୨୫।
ଅଛନ୍ତି ଆସି ଅନେକ ଦେଶୀ
ଉଦ୍ଭିଲାଷ ଦେଖି ଭାଷା ନ ଆସି ।
ଆଣି ଚଟକ କରେ ଆଲୋକ
ଅଧିକ ନଖ କ୍ଷତ ଭରିତକ ।୨୬।

ଅବଳା ସ୍ତନ          କାଞ୍ଚନ ପୂନ
ଅଳପ ଫେଣ୍ଟ ବନ୍ଧନେ ପତନ ।
ଅମ୍ଳୁଦ କେ          ତୁମ୍ଭେ ଆଲୋକେ
ଅବଳା ବୋଧେ କସ୍ତୁରୀ ତିଳକେ ।୨୭।*

ବିଦୂଷକ—
ଅବମାଣ କେ          କାମ ଆଚଙ୍କେ
ଆଗଳକା ହାତେ ଛୁଷି ନିଃଶଙ୍କେ ।
ଅନ୍ୟ ଦେଶର          ରାମା ରୁଚିର
ଆଣି ରମଣି ଯେନ ସାଡ଼ିଘର ।୨୮।

ଆଳାପ ଗୀତେ          ସେ ରତେ ଭୂଷଣେ
ଅମୃତ କେ ଭୁଞ୍ଜାଇଲ ଦର୍ପିତେ ।
ଆପେ ମନ୍ତ୍ରୀ          ପେଷିଲ ଦାସୀ
ଆସି ବୁଦ୍ଧି ସବ୍ ଚରିତ ଗହି ।।୨୯।।

ଆପେ ବାର୍ତ୍ତା କ          ସେ ପୁଚ୍ଛୁଁ ବଳଙ୍କ
ଅଳ ପଦ୍ମ ତେଜ ତୁମ୍ଭେ ବାର୍ତ୍ତା କ ।
ଆଲୋକ ନୃପ          ସେ କହେ କୋପ
ଅଳସ୍ୟ ହଂସର ପଦ୍ମ କଳାପ ।୩୦।

ଅଷ୍ଟ ବସ୍ତୁତ          ଚନ୍ଦ୍ରାନ୍ନ ଯୁତ
ଅଗସ୍ତ ଭୋଗୀ ସେ ଉଚ୍ଛିଷ୍ଟ ଗର୍ଭ ।
ଅଙ୍ଘ୍ରିରେ ନତ          ହେଲ ନୃପତି
ଅବୋଧ ରାମା ନୋହିଲ ଭୂପତି ।୩୧।

ଆଦ୍ରସିକା ଯେ          ଦୁଷ୍ଟ ସହଜେ
ଅଷ୍ଟ ଭୃଣ୍ଡିକ ଫେଡ଼ ଫେଡ଼ ଶେଯେ ।
ଆସନ୍ନେ ଅଷ୍ଟ          ସେ ଚନ୍ଦ୍ରମା ମୂର୍ଚ୍ଛ
ଆଲିଙ୍ଗନ କରୁ ହରଷ ଗୁଚ୍ଛ ।୩୨।

* "ଶୃଙ୍ଗାରେଽସ୍ୟ ସହାୟା ବଟଚେଟବିଦୂଷକାଦ୍ୟାସ୍ୟୁଃ ।।"
(ଇତି ସାହିତ୍ୟେ) ।। ପୋଥିପାଠ ।।

ଆରମ୍ଭେ ନୃତ୍ୟ    କରି ସ୍ୱେ କୃତ୍ୟ
ଅଧିକେ ତାଳ ତାର୍ଳ ହେଲା ସତ୍ୟ ।

ଗୀତମର୍ଦ୍ଧ । ସ୍ୱେ ଗୀତମର୍ଦ୍ଧ କଳା କୁଶଳା—

ଆଳି ସକଳ    ଆଗେ ପେଷଲ
ଆସି କହଇ ସ୍ୱେ ନୋହେ କୁଶଳ ।୩୩।
ଅମରଷ କ    କରି ପତ୍ରକ
ଅଳଙ୍କାର କାବ୍ୟ ଅଛି ବାଂଲାକ ।
ଅପୂନେ ଯାଇ    ଶପୂନେ ଥାଇ
ଅଙ୍ଗନା ପୃଷ୍ଠ ନ ଥିଲା ଦେଖାଇ ।୩୪।

ଅରି ମଦନ    ଥାଉ ସ୍ୱେ ମାନ
ଅଲେକ ଛିଦ୍ର ହେବ ଦୁଷ୍ଟ ମନ ।
ଆଶୁର ଘାତ    ହୋଇଲେ ପତ
ଆତୁରେ ଭଜବ ଆନ ଯୁବତୀ ।୩୫।

ଅ ଛନ୍ତି ଆସି    ଯାହା ଊର୍ବଶୀ
ଅମୂଲ୍ୟ ସ୍ୱଦସ୍ତ ନବ ବପୁସୀ ।
ଅବଳାମଣି    ସଖୀ ମୁଖୁଁ ଶୁଣି
ଅପଦସ୍ତ ମାନ ହେଲା ସେ କ୍ଷଣି ।୩୬।

ଝଃ—

ଅମ୍ବୁଜାନନ    କାନ୍ତେ ମାନନ
ଆସି ସ୍ୱେକ ଦାଷ କହଇ ଯେନ ।
ଆମ୍ଭେଶ୍ୱରଙ୍କୁ    ଗୋ କରି କୋପଙ୍କୁ
ଅକାରଣେ ଚିତ୍ତୁ ମନ୍ଥ ଦେହଙ୍କୁ ।୩୭।

ଅମୃତ୍ହସ୍ତ    ଜନମ କଷ୍ଟ
ଆପସ୍ୱେ ଶୁଣା ନ ଥିଲା ରମ୍ଭୋରୁ ।
ଅବ କଳନା    କରି ତୁଳନା
ଅଛି କେତେ ପତି ପ୍ରେମ ଲଳନା ।୩୮।

ଅଧିକ ଊନ ହୋଇଲେ ପାନ
ଅବଶ୍ୟ ଚାପ କରଇ ବର୍ଦ୍ଧନ ।
ଅବଳା ଦେଖ ସୀତ ମୟୂଖ
ଅବଲୋକ ଚନ୍ଦ୍ର ପରାଗ ମୁଖ ।୩୯।
ଅଛୁ ତା ଆଣି ଗୋ ତୋ ମୁଖ ଜିଣି
ଅନା କାନ୍ତ ମୁଖ ରଜନୀ ମଣି ।
ଅବଳା ହାସ କଲା ପ୍ରକାଶ
ଆଳାପ ଶୁଣି ତେଜିଲା ବରଷ ।୪୦।

ଚେଟ —

ଅଟେ କୋପିନୀ କେ ମନ୍ତ୍ର ଜାଣିମା
ଆସି କେ ଚତୁର ବୋଲେ କାମିନୀ ।
ଅନଙ୍ଗ ପର ଦେଉଳ ଠାର
ଆନ ନଶି ଜନଗହଳତର ।୪୧।
ଆଲୋକ ଚନ୍ଦ୍ର- ଉଦୟୀ ଚନ୍ଦ୍ର
ଅନେକ ବଧି ବାଣଗଣ ସାନ୍ଦ୍ର ।
ଅନେକ ଦେଶ ଅବନୀ ଈଶ
ଅତୁଳ ହାଟ ନୋହିଥିଲା କୃଶ ।୪୨।
ଆସ ସୁକେଶି ଦେଖିବୁ ରସି
ଅବନୀ ଗୃହଁକୁ ଯାବାକୁ ଆସି ।
ଅଛୁ ସୁମନ୍ତ ନେମି ଯଥାର୍ଥ
ଅବଳା ଗମେ ବାଣୀ ମଣି ତଥ୍ୟ ।।୪୩।
ଅଗ୍ରେ ପେଷଲ ଜନ ଗହଳ
ଆଣି ଦେଖାଇଲା ଭଗ୍ନ ଦେଉଳ ।
ଅନ୍ତର ହୋଇ ଚତୁର ଯାଇ
ଅବଳା ଛନ୍ଦ ଚିତ୍ତରେ ଅନାଇ ।୪୪।
ଆସି ବଲ୍ଲଭ[1] ମଣେ ସୁଲଭ
ଆଲିଙ୍ଗନ କଲାବେଳେ ଆରମ୍ଭ ।

---

୧ । (କ) ଭଲଭ

ଆକାଶେ ଆସି — ଧାବେଲ ମିଶି
ଅଧିକେ ଚମକେ ଚମରୁଦ୍ଧୃଣୀ ।୪୫।

ଆଶ୍ଳେଷ ବେନି — ମନେ ସୁଖ ଘେନି
ଆନନ ଦ୍ୱିଜରାଜେ ଚୁମ୍ବଦାନ ।

ଅନ୍ତରେ ଚିନ୍ତି — ବର ଯୁବତୀ
ଆରମ୍ଭିଲା ଚେଟ କେମନ୍ତ ଘାତ ।୪୬।

ଅତି ଗଦ୍ଗଳ — କୁଚ ଯୁଗଳ
ଅଙ୍ଗେ ଲଗୁ କେ ମଣିଲା ଶୀତଳ ।

ଅଭିଳାଷରେ — ଚୁମ୍ବି ମୁଖରେ
ଅନାୟାସେ ସ୍ତନ ରସିକ ଧରେ ।୪୭।

ଅଧୋକ୍ଷଜ ସେ — ରାଧାରେ ରାଜେ
ଅନ୍ତ ହୋଲେ ଯାହା ବଳସ୍ଥ ବ୍ରଜେ ।

ଅମର ବର — ହରିଚାମ୍ବର
ଆଶ୍ରୟ ଶ୍ୟାମସୁନ୍ଦର ଦେବବର ।୪୮।

— ଅଷ୍ଟମ କୁସୁମ —

## ଭୋଜି ମନାସ ଲେଖନ

॥ ରାଗ—କେଦାର ॥

(ନୀଳାବନ୍ତ, କ କରବ ସଖି କହ—ସ୍ୱେ ବାଣୀରେ)

ଅଛୁ ଝିଲି ହଂସକେଳି ଛେନା ଲଡ଼ୁ ସରପୁଳି
ଅଧାମ ଗୋଟିକା ପାରିଜାତକ ଯେ, ଚାଟଡ଼ା ସରପାପୁଡ଼ି ।
ଅମୂଲ୍ୟ ସର ବଟୁଲି ମୋହନ ଭୋଗ ରସ୍ମାଳି
ଅମୃତ କେଳି ଖଇର ଚୁର କୋର ଯେ, ନଳାଦ୍ରି ବଲ୍ଲଭ ଶୋଳ ॥୧॥

ଅଧାମ କର୍ପୂର କେଳି ଦୁଧ ଲଡ଼ୁ ସରପୁଳି
ଅମୃତ ସାଗର ପାରିଜାତକ ଯେ, ସରମଣ୍ଡା ହଂସକେଳି ।
ଅମୃତ କେଳି ମୁଗୁଡ଼ି ମୋହନ ଭୋଗ ତପୁର
ଅଛୁ ନାଗସ୍ୱଣ ବଲ୍ଲଭ ଝିଲି ଯେ, ମିଠାଇ ସରପାପୁଡ଼ି ॥୨॥

ଅପୂର୍ବ ଖଇରି ଚୂର ଛେନା ଲଡ଼ୁ ମୋତିଚୁର
ଅଛୁ ଝିଲି ଦୁଧ ଲଡ଼ୁ ଗୋଟିକା ଯେ, ସର ଚାପୁଡ଼ି ଯେ ସାର
ଅଛୁ ନବନୀତ ପୁଳି ପାରିଜାତ ହଂସକେଳି
ଅମୃତ କେଳି ଚାଗଡ଼ା ମୁଗୁଡ଼ି ଯେ, ମିଠାଇ ବଫା ତପୁର ॥୩॥

ଅଧାମ ଖଇର ଚୂର ବଫା ଅମୃତ ସାଗର
ଅଛୁ ଗୋଧୂମ ଫେଣି ଦଧି ରସ୍ମାଳି ଯେ, ସାଚ କୋର ମୋତିଚୂର
ଅମୁଲ୍ୟ କର୍ପୂର କେଳି ମୋହନ ଭୋଗ ତପୁର
ଅମୃତ କେଳି ଦଧି ଲଡ଼ୁ ମିଠାଇ ଯେ, ଗୋଟିକା ସରପାପୁଡ଼ି ॥୪॥

ଅଛୁ ଝିଲି ସରମଣ୍ଡା ପାରିଜାତକ ଚାଗଡ଼ା
ଅମୃତ କେଳି ମୋତିଚୁର ମିଠାଇ ଯେ, ଝିଲି ମିସର ଖରଡ଼ା
ଅମୁଲ୍ୟ ସର ବଟୁଲି ଛେନା ମୁଗୁଡ଼ି ରସ୍ମାଳି
ଅମୃତ ସାଗର ମୋହନ ଭୋଗ ଯେ, ଫେଣି ଖୈରଚୁର ଶୋଳ ॥୫॥

— ଗୀତ —

( ରାଗ — ଗଉଡ଼ମାଳଶ୍ରୀ )

ଆଖଣ୍ଡଳ ମାଳ କେଶୀ,
ମାଳ:ଦ୍ରି ବଳ୍କଳେ ତୋ ମନ ରସି ଯେ
ଆଜ ନର୍ମାଣିମି ବସି । ଅଙ୍ଗନା ଗୋ ! ।୧।

ଅଧରକେ ତବ ବନ୍ଧୁଜ,
ନାଗବର ନାଗପୁଣ ବନ୍ଧୁଜ ଯେ
ଅଗାରେ ନୋହେ ଦୁର୍ଲ୍ଲଭ । ଅଙ୍ଗନା ଗୋ ! ।୨।

ଆସ୍ୟ ନନ୍ଦେ ସରସିଜ,
ସରସିଜରେ ତୋ ସେନେହ ଆଜ ଯେ
ଅଛୁ ପର ପୁରେ ହେଜ । ଅଙ୍ଗନା ଗୋ ! ।୩।।

ଅଙ୍ଗ ନନ୍ଦେ ନବମୀତ,
ନବମୀତ ପ୍ରୀତ ପାଇଁ ତୋ ଚିତ୍ତ ଯେ,
ଆଜ କରବ ଉଚିତ । ଅଙ୍ଗନା ଗୋ ! ।।୪।।

ଆଣି ଉରେ ଉର ଯୋଡ଼ୁ,
ଛେନା ଲଡ଼ୁକୁ ତୁ ମନରେ ଲୋଡ଼ୁ ଯେ
ଅଣିଦେବ ପଦ୍ମ ଛୁଡ଼ୁ । ଅଙ୍ଗନା ଗୋ ! ।୫।।

ଆକାଙ୍କ୍ଷା ତୋ ଦୁଧ ଲଡ଼ୁ,
ଦୁଗ୍ଧ ଜଳ ପରି ବପୁରେ ଜଡ଼ୁ ଯେ
ଆଣିମି ନପୁ ବେନ ବଡ଼ୁ । ଅଙ୍ଗନା ଗୋ ! ।୬।

ଆଳସ ହଂସ-ଗମନା,
ହଂସ କେଳ ପାଇଁ ନୁହ ବମନା ଯେ
ଆଜ ହୋଇବ ଉଚନା । ଅଙ୍ଗନା ଗୋ ! ।୭।

ଉଠ ତୁ ଶୋଭା ଜଳଧି,
ଦଧି ଲଡ଼ୁ ପାଇଁ ବଳଚୁ ବୁଦ୍ଧି ଯେ
ଅଳପ କେ ହେବ ସିଦ୍ଧି । ଅଙ୍ଗନା ଗୋ ! ।।୮।

ଅମନ୍ତ୍ରନ ସାଚ ଦାଗ,
ସାଚ କୋଗ ପାଇଁ ହେଉଛୁ ଚୋଗ ଯେ
ଆଣିମି ନୟନ ଚାଗ । ଅଙ୍ଗନା ଗୋ ! ॥ ୯ ॥

ଅଝୁ ତୁ କର୍ପୂର ଦାସୀ,
କର୍ପୂର କେଳଟରେ ଚିତ୍ତ ଲାଳସୀ ଯେ
ଅତି ଶୀତଳେ ସେ ଶଶୀ । ଅଙ୍ଗନା ଗୋ ! ॥୧୦॥

ଆଣିମି କନ୍ୟା ଲଲାମ,
ଲେଡ଼ା କରଅଛୁ ଗୃହୁ ଅଧାମ ଯେ
ଅଧିକ ସ୍ୱାଦୁର ଧାମ । ଅଙ୍ଗନା ଗୋ ! ॥ ୧୧ ॥

ଅନଫା ଯୋଗ ଜାତକ,
ବଫାକ୍ସ ପାଞ୍ଚିଲ ମନେ ବିବେକ ଯେ
ଆସ୍ଥର୍ଯ୍ୟ ତୋ ପୁରେ ନକ । ଅଙ୍ଗନା ଗୋ ! ॥୧୨॥

ଅବଳା ତୁ ମୋ ନାଟିକା,
ଲାଳସା ରସାଳ ସାର ଗୋଷ୍ଠିକା ଯେ
ଆସି ବଢ଼ିଛ ଘଟିକା । ଅଙ୍ଗନା ଗୋ ! ॥ ୧୩ ॥

ଆମନ୍ତ୍ରନ ତିନି ପୁଷ୍ପ
ଭାବନା କରିଛୁ ମନେ ତିପୁର ଯେ
ଆଳପୁରେ ଅଛୁ ପୁର । ଅଙ୍ଗନା ଗୋ ॥ ୧୪ ॥

ଅବଳା ନ କଷ୍ଟୁ ଫେଡ଼,
ଚିନ୍ତା କରଅଛୁ ସର ପାପୁଡ଼ ଯେ
ଅଣାଇମି ଆଜ ଲେଡ଼ । ଅଙ୍ଗନା ଗୋ ! ॥ ୧୫ ॥

ଆକଳ୍ପ ତୋ ଧୀର ବୁଡ଼ା,
ପାଞ୍ଚ କରଅଛୁ ସର ଖରଡ଼ା ଯେ
ଅଛି ରମ୍ଭା ଦଳ ପୁଡ଼ା । ଅଙ୍ଗନା ଗୋ ! ॥ ୧୬ ॥

ଅନ୍ନେ ଦରଷ ସଂଗୃହ,
ସର ବହୁଳକୁ କରୁ ବିଗ୍ରହ ଯେ
ଅଛି ସଖୀରେ ପଗ୍ରହ । ଅଙ୍ଗନା ଗୋ ! ॥ ୧୭ ॥

ଅପାଙ୍ଗ ତୋ କାମ ଖଣ୍ଡା,
ମନେ କରୁଅଛୁ ସ୍ୱେ ସର ମନ୍ତ୍ରୀ ଯେ
ଅଛୁ ଧର କେତେ ଗଣ୍ଡା । ଅଙ୍ଗନା ଗୋ ! ॥ ୧୮ ॥

ଅଳକା ବକ୍ର କୁଟିଳ,
ମାନସରେ କ୍ରୀଡ଼ା କରଇ ଟିକ୍ଲି ଯେ
ଅବଧି ଆଶିଷି କାଲି । ଅଙ୍ଗନା ଗୋ ! ॥ ୧୯ ॥

ଅଧିକରେ ହୋଇ ପ୍ରେମୀ,
ଇଛା କରୁଅଛୁ ସଜ ଝିଲମି ଯେ
ଅଦ ମଧ୍ୟରେ ଆଶିଷି । ଅଙ୍ଗନା ଗୋ ! ॥ ୨୦ ॥

ଅନ୍ତରେ ନ ରଖ ବ୍ରୀଡ଼ା,
ଇଛା କରୁଅଛୁ ପର ଚାଗଡ଼ା ଯେ
ଅନ୍ୟ ଗାବ ପସୁ ଲେଡ଼ା । ଅଙ୍ଗନା ଗୋ ! ॥ ୨୧ ॥

ଅଚନ୍ଦ୍ରର ରସ ପେଡ଼ି,
ତୋ ମନ ହରଇ ଚେଷ୍ଟା ମୁଗ୍ଧ ଯେ
ଅବଶ୍ୟ ଦେବ ସଜାଡ଼ି । ଅଙ୍ଗନା ଗୋ ! ॥ ୨୨ ॥

ଆମ୍ଭକୁ ରସ ଜାତକ,
ଅଧିକ ଲୀଳାରେ ପାରିଜାତକ ଯେ
ଆକାଙ୍କ୍ଷା ଭାବଜାତକ । ଅଙ୍ଗନା ଗୋ ॥ ୨୩ ॥

ଅସଦୃଶା ରସାଳସି,
ଗୋଧୂମ ପେଷିରେ ମଣ୍ଡ ଢଳସି ଯେ
ଆଶିଷି ଅଗାରେ ପଶି । ଅଙ୍ଗନା ଗୋ ! ॥ ୨୪ ॥

ଅପୂର୍ବ ରମ୍ଭା ଜଘନା,
ରମ୍ଭାଳ ଦଧିକ କରୁ ଶୋଚନା ଯେ
ଆଗୁ କରୁଛୁ ରଚନା । ଅଙ୍ଗନା ଗୋ ! ॥ ୨୫ ॥

ଅଟଇ ମନୋହର ପେ,
ଅମୃତ ସାଗରେ ତୋ ମନ ରସେ ଯେ
ଅଧିକରେ ତୃଷ୍ଣା ନାଶେ । ଅଙ୍ଗନା ଗୋ ॥ ୨୬ ॥

ଅଖିଳ ମନ ମୋହନା;
ମୋହନ ଭେଶକୁ ଜଳୁ ସ୍ୱଜନା ଯେ
ଅଚିରେ ଦେବ ନଯାନା । ଅଙ୍ଗନା ଗୋ ! ॥୨୭॥

ଅମୂଲ୍ୟ ମୋତି ଦଶନା,
ମୋତିଚୁର ପାଇଁ ରୁଷି ବସନା ଯେ
ଆଜ ରୁଖିବ ରସନା । ଅଙ୍ଗନା ଗୋ ! ॥ ୨୮ ॥

ଆଲୋକ ଧଇର୍ଯ ଚତୁର,
ଆଦର କରନ୍ତୁ ଖଇର ଚୂର୍ଣ୍ଣ ଯେ
ଅଛି ମନ୍ଦରେ ପ୍ରଚୁର । ଅଙ୍ଗନା ଗୋ ! ॥ ୨୯ ॥

ଅଚନୁ ଦେଉ ଉଠାଇ,
ଅଛି ଛବ ମନେ ଗୃହ୍ଣ ମିଠାଇ ଯେ
ଅବଧି ଦେବ ପଠାଇ । ଅଙ୍ଗନା ଗୋ ! ॥ ୩୦ ॥

ଅମୃତ ଅଧରେ ଗୃହ୍ଣ,
ମଧୁ ବନ ରଙ୍ଗେ ମୁଖ ପ୍ରସୃନ୍ତ ଯେ
ଅମୃତ କେଳି ବସୃନ୍ତ । ଅଙ୍ଗନା ଗୋ ! ॥ ୩୧ ॥

ଅଧୋକ୍ଷଜ ଲୀଳା ରସ,
ଶ୍ରୀ ଶ୍ୟାମସୁନ୍ଦର ଦେବର ଭାଷ ଯେ,
ଅବରତ ମନେ ଘୋଷ । କୋବଦେ ହେ ! ॥୩୨॥

ଆଦ୍ୟେ ଶ୍ରୀ ଯମୁନା ସୁତ,
ନନ୍ଦ ପୁରେ ରାଧା ପାକ ରଚନ୍ତ ଯେ
ଅପ୍ରୂପ ପ୍ରକମ୍ପ ହତ । କୋବଦେ ହେ ! ॥ ୩୩ ॥

ଅଷ୍ଟ ପୋଷର ବର୍ଣ୍ଣନେ,
ରାଧା କୃଷ୍ଣ ବେନ ବଚ୍ଛେଦ ବନେ ଯେ
ଆଶ୍ଳେଷ ଶ୍ଳେଷ ବଚନେ । କୋବଦେ ହେ ! ॥୩୪॥

ଆଦ୍ୟ ବୋଲ କୁଞ୍ଜ ଗ୍ରେତ,
ଦ୍ୱିଶ୍ଚପ୍ତେ କାଳୀପୁ ଦର୍ପକୁ ହର ଯେ,
ଅନନ୍ତ ଗୋପଙ୍କୁ ତାର । କୋବଦେ ହେ ॥୩୫॥

ଅଳଙ୍କାର ଆଦ୍ୟ ଗ୍ରନ୍ଥ,
ଦ୍ୱିଷ୍ଟପ୍ରେ ସ୍ୱମନ୍ତ କନ୍ୟା ବରଦ ଯେ
ଅଷ୍ଟ ସଗେ ଚଉପଦ । କୋବଦେ ହେ ! ॥ ୩୬ ॥

ଅଛୁ ଚଉତିଶା ରସ,
ଶିଶିରେ ବସନ୍ତ ପଞ୍ଚମୀ ବେଶ ଯେ
ଅମ୍ବିକା ବନ ପ୍ରବେଶ । କୋବିଦେ ହେ ! । ୩୭ ।

ଅଛୁ ଉଗରେ ବିଶେଷ,
ପୀଠମର୍ଦ୍ଧ ଆଦ୍ଧ ବାଗ ବିଳାସ ଯେ
ଅଷ୍ଟମେ ଭେଳ ମନାସ । କୋବଦେ ହେ ! । ୩୮ ।

ଇତିଶ୍ରୀ ଅନୁରାଗ କଳ୍ପଲତା ଷଷ୍ଠ ପ୍ରବନ୍ଧ ସମ୍ପୂର୍ଣ୍ଣ ।

॥ ଶ୍ରୀମଦ୍ ଗୌରଚନ୍ଦ୍ରାୟ ନମଃ ॥

# ସପ୍ତମ ସ୍ତବକ

## — ପ୍ରଥମ କୁସୁମ —

# ସ୍ତୁତି ପ୍ରକାଶ ଲେଖନ

॥ ରାଗ — ମଙ୍ଗଳ ଗୁର୍ଜରୀ ॥*

(ହଳଦ ଘେନଣ ଚଢ଼ି ଅନ୍ତଃପୁର ନାସି — ଯେ ବାଣୀରେ

ଶ୍ଳେଷ—

ଅଜସ୍ର ନମାମି ଈଡ଼୍ୟ ଦେବୀ ଭାର୍ଗବୀରେ
ଅଜ ମଣ୍ଡଳ ସୁମନ ମାଳିକା ଛନ୍ଦରେ ॥ ୧ ॥

ଆଲସ୍ୟ କମଳ ଧୀରେ ଘାଟରେ ଶୋଭନ
ଅମ୍ବୁରୁହ ଧର ହର ମୁଦ ବର୍ଦ୍ଧନ ॥ ୨ ॥

ଆଶ୍ୱ ଆଶ୍ରିତ ଜନର କଦନ ଛେଦନ
ଅଗାଧ ଉପଶ୍ରାନ୍ତ ମହିମା ବଦନ ॥ ୩ ॥

ଅଧିକେ ବାରଣ ଇନ୍ଦ୍ରେ ହୋଇ ସେବମାସ୍ୟ
ଅଷ୍ଟାପଦ କଣ୍ଟକ ଭେଦନେ ରମଣୀୟ ॥ ୪ ॥

ଅଖିଳ ଜନ ବନ୍ଦ୍ୟ ରୂପ ଷଡ଼ଦରେ
ଅନଘା ଯେ ପରଶୁଦ୍ଧା କ ସ୍ତୁତ ତର୍ବ୍ବରେ ॥ ୫ ॥

---

ରାଗ ଲକ୍ଷଣମ୍ ଶ୍ଲୋକଃ—
ଶ୍ୟାମା ସୁକେଶୀ ମଲୟଦ୍ରୁମାଣାଂ ମୃଦୁଲ୍ଲସତ୍ପଲ୍ଲବତଳ୍ପମଧ୍ୟେ ।
ଶ୍ରୀତେ ସ୍ୱରାଣାଂ ଦଧତୀ ବକ୍ଷରଂ ଚନ୍ଦ୍ରୀମୁଖୀ ମଙ୍ଗଳଗୁର୍ଜରୀୟଂ ॥
(ଇତି ବୃହତ୍ସଙ୍ଗୀତକୌମୁଦ୍ୟାଂ) ॥ପୋଥିପାଠ॥

ଅସ୍ଥୂଳବାଦରେ ନୋହେ ମହିମା ଗୋଚର
ଅଳ୍ପ ବର୍ଣ୍ଣମାରେ ଶକ୍ୟ ହେବ କ ମୋହର ।୬।
ଅତରେ ବଗୁଣ ହୋଏ୍ସ ଶୀଳାଦ ଯେ ଗୁଣ
ଅଟ ଯାହା ବଷୟରେ ବମୁଖୀ ଆପଣ ॥ ୭ ॥*
ଅନୁରତ ପାଶର ଯେ ଗୁଣ ହୋଏ୍ସ ଦୋଷ
ଆଳସ୍ୟ ଦୋଷ ତୁମ୍ଭର ସ୍ଥଇଭ ପ୍ରକାଶ ॥ ୮ ॥
ଅତ ଲୁଣ୍ଠ ପୁରୁଷ ଉଦ୍ୟମୀ ଉତ୍ତମ
ଅଙ୍ଗ ଗଣନାରେ ଧୀର ମହତ ଅଧମ ॥ ୯ ॥
ଅନୁରତ ନଗରରେ ଯେ୍ସପର ଅନେକ
ଆଶ୍ଚର୍ଯ୍ୟକୁ ଦେଖାଇ ପାଳନା କର ଲୋକ ॥୧୦॥
ଅବରତ ସେ ଦେବୀର ଚରଣେ ବନନ
ଅମ୍ବୁଜାଳୟା ଗଙ୍ଗାରେ ଆରମ୍ଭିଲ ସ୍ତୁତ ।୧୧॥
ଆହେ କୃପା ଅକୂପାର ଦେବ ନାରାୟଣ
ଅନୁକମ୍ପା କର ପ୍ରେସୀ ପଦ୍ମର ଆପଣ ।୧୨॥+
ଅବରତ ହୃଦ ସ୍ଥାନ ସ୍ପର୍ଦ୍ଧା କ ହେବାରୁ
ଅମ୍ବରୁହ ସଜାତ ହୋଇଲା ନାଭରୁ ॥ ୧୩ ॥
ଆଳସ୍ୟ କରାଇ ତହିଁ ମନୋରମା ରମା
ଅବଲୋକନରେ ହୃଷ୍ଟ ଅସମା ସୁଷମା ।୧୪।
ଅଭ୍ର ବପୁରେ ଚଞ୍ଚଳା ଚଞ୍ଚଳାର ଛବ
ଅରବନ୍ଦ ପଦ ମକରନ୍ଦ ସଙ୍ଗେ ଦେବୀ ।୧୫॥

---

ଶ୍ଳୋକ —
* ଯଦେ୍ୟା ବୈଗୁଣ୍ୟମାସ୍ୱାତ ଶୀଳାଦ୍ୟାସକଳାଗୁଣାଃ ।
ପରାଙ୍ମୁଖୀ ଜଗଦ୍ଧାତ୍ରୀ ଯସ୍ୟ ତ୍ୱଂ ବଷ୍ଣୁବଲ୍ଲଭେ ॥ ୧ ॥
(ଇତ ବଷ୍ଣୁ ପୁରାଣେ) ॥ ପୋଥପାଠ ॥

+ ଲକ୍ଷ୍ମୀ ସରସ୍ୱତୀ ଗଙ୍ଗାତସ୍ରୋଭାର୍ଯ୍ୟାଃ ହରେଃ ମତା ।
(ଇତ ବ୍ରହ୍ମବୈବର୍ତ୍ତେ) ॥ ପୋଥପାଠ ॥

ଅବଲମ୍ବ କର ହରିବାକୁ ଭବ ଦୁଃଖ
ଅନ୍ତରେ ଗଲ ଶରଣ ଅନୁଗ୍ରହ ରଖ ॥ ୧୬ ॥

ଶୃଙ୍ଗାର ଉଦ୍ଦୀପନ—
ଅଥ ଉଦ୍ଦୀପନ ଭାବ କରିବ ପ୍ରକାଶ
ଅତି ରମ୍ୟ ବୃନ୍ଦାବନ କୁସୁମେ ସୁବେଶ ॥ ୧୭ ।
ଅଳି ଝଙ୍କାର ଚୁମ୍ବରେ ବିକାର ବର୍ଦ୍ଧନ
ଅତନୁ ଗୁଣ ଟଙ୍କାର ଶଂକା ରହେ ମନ । ୧୮ ॥
ଅତିକାଷ୍ଟେ ଜାତ ହୋଇ ହସେ କୁରଅନା
ଅଳି ବୋଲେ ତରୁଣଙ୍କୁ କାମ କୁରଅନା । ୧୯ ।
ଅତି ମୁକ୍ତ ଧନୁ ମୁକ୍ତ ଆଶୁଗର ପ୍ରାୟେ
ଆମୋଦରେ ହୃଦରେ ଭେଦନ୍ତେ ଭୟ ଦୟେ ।୨୦।
ଅରଣ୍ୟ ପ୍ରିୟ ଗଣକ ବୋଲେ କୁହୁ କୁହୁ
ଅନଙ୍ଗ ଅନ୍ଧାର ନେହେ ଘୋଟେ କହୁ କହୁ ।୨୧।
ଅନଳ ମଳୟ ଅଚଳରୁ ତ୍ରେଭିପଡ଼ି
ଅତି ମନ୍ଦେ ଆସେ ରେବା ନଦୀ ଜଳେ ବୁଡ଼ି ।୨୨।
ଅଙ୍ଗୁ ଚନ୍ଦନ ସୁବାସ ଜାଣି ପୁରାତନ
ଆଡୁରେ ହରଇ ପୁଷ୍ପବାଟୀ ବାସ ପୁନ ॥ ୨୩ ॥
ଆଲୋକ କାନ୍ତ ବିକଚ ମୁଖ ପଦ୍ମକାନ୍ତ
ଅର୍ଘ୍ୟ ମକରନ୍ଦ ହୃଷ୍ଟ ସଂଗ୍ରହ ପ୍ରେୟକାନ୍ତ ।୨୪।
ଅର୍କଜା ପୁଳିନ ବନ କୁଞ୍ଜ ବ୍ୟବସ୍ଥିତ
ଆମୋଦିତ ପୁଷ୍ପ ତଳ୍ପ ଅନଳ୍ପ ବନ୍ଦିତ ॥ ୨୫ ॥
ଅରୁଣ ପଲାଶ ଦ୍ରବ୍ୟ ସୁରଙ୍ଗ ବିତାନ
ଅଟେ ମୋତି ଝାଲର କଳିକା ବିଦ୍ୟମାନ ।୨୬।
ଆମଣ୍ଡନ କୁସୁମଂ ତୋରଣ ଯେ ପୁଷ୍ପିତ
ଅତର ସେ ପୁଷ୍ପରସେ ହେବାର ସିଞ୍ଚିତ ॥ ୨୭ ॥

---

୧ । (କ) କୁମ'

ଆକଳ୍ପରେ ନବ ବରାଙ୍ଗନା ଶୋଭମାପ୍ତୁ
ଅନଙ୍ଗ ଜପ୍ତୁ ପଞ୍ଚସ୍ତ ବେଣୀ ରଚମାପ୍ତୁ ॥ ୨୮ ॥

ଅନୃତ ନୂହଇ ଝୁମ୍ପା ବାନା ଥାଇ ବାନ୍ଧ
ଅତନୁ ମୁଦ୍‌ଗର ଖୋସା କେତେବେଳେ ସିଦ୍ଧି ॥୨୯॥

ଅତ୍ତ ରହସ୍ୟ ବଶରେ ଚୂଡ଼ାକୁ ନିର୍ମାଣି
ଅକ୍ଷି ମୀନ ଧରେ ମାର ମର୍କଟକୁ ବେଣୀ ।୩୦।

ଆବେଷ୍ଟିତ ସେବତୀ ମାନଅଁା ଫୁଲମାଳ
ଆଲମ୍ବିତ ଝୁମ୍ପି ଝରା ହଣଇ ମଞ୍ଜୁଳ ॥ ୩୧ ॥

ଆଙ୍ଗ ମାଙ୍ଗ ଭାଙ୍ଗ ସାଜ ତିଳକ ରଚନା
ଅଞ୍ଜନ ଲଞ୍ଜି କୁନ୍ତରେ ହରିଣ ଲୋଚନା ।୩୨ ॥

ଅଧର ରଙ୍ଗ ତାମ୍ବୂଳେ ଶୋଭେ ମନ୍ଦ ହାସ
ଅମୃତାଂଶୁ ନିନ୍ଦେ ମୁଖ ଝଳର ପ୍ରକାଶ ।୩୩ ॥

ଆଳାପ କନ୍ତୁ ହଳଇ ମୁଖ ଶଶଧର
ଆଧୃତ ଝୁମ୍ପି ଝଲକା ଅଳକା ଦେଶର ।୩୪।

ଅସିତ ସୂର୍ଦ୍ଧୀନ ସାଢ଼ି ଧଡ଼ି ଫୁଲ୍ଲ ପଡ଼ି
ଅସ୍ୟ ଜର ଲତା ଅଙ୍ଗେ ଯାଇଥାଇ ଜଡ଼ି ।୩୫।

ଅତରେ ମାର୍ଜନା କର ବୃନ୍ତ ଅବସ୍ଥବ
ଅତନୁ ପଟ୍ଟହ ପାଦ ନୂପୁରର ରବ ।୩୬ ॥

ଅଚ୍ୟୁତର ନଟବର ବେଶ ହରେ ଚିତ୍ତ
ଅଙ୍ଗ ମାଳ ଜଳଦରେ ଚନ୍ଦନ ଚର୍ଚ୍ଚିତ ॥ ୩୭ ।

ଅବତଂସ ଯେ ଚନ୍ଦ୍ରକ ଚୂଳ ବନମାଳ
ଆଲମ୍ବିତ ଗୁଞ୍ଜାହାର ବସନ୍ତ ଦୁକୂଳ ॥ ୩୮ ॥

ଅରୁଣ ଅଧରେ ହାସ କଳବେଂଶୀ ଗୀତ
ଅଷ୍ଟ ଦଶ ଚିହ୍ନ ପଦ ଅବନୀ ଅଙ୍କିତ ॥ ୩୯ ॥

ଅଙ୍ଗ ଭଙ୍ଗୀରେ ବୟସ ମେଳରେ ତାଣ୍ଡବ
ଆପେ ଗୋ ଦୋହନେ କ୍ଷୀର ବିନ୍ଦୁ ଅବପୂବ ।୪୦।

ଅଙ୍ଗ ସୌରଭ ଅସ୍ତ୍ରପ ବନାଶାଦ ଗୁଣ
ଅଧିକେ ଧୀର ଲଳିତ ନାୟକ ଲକ୍ଷଣ ॥ ୪୧ ॥

ଅସ୍ତମିତ ଦିଗାଙ୍ଗନା ସଗର୍ବ ପ୍ରକାଶ
ଅବଲୋକ ତାରକାର ସୁ ଝଲକ ହାସ ॥ ୪୨ ॥

ଅମୃତ କର କରରେ କୁମୁଦ ସମାରେ
ଆଲିଙ୍ଗନ କରୁ ହସେ ଫୁଟି ସୁଷମାରେ ॥ ୪୩ ॥

ଇତି ଯାତ୍ରି ମଧ୍ୟ ନଭେ ହରିଣ ଲାଞ୍ଛନ
ଅରଣ୍ୟ କୁଞ୍ଜ ଧବଳ ଚନ୍ଦରେ ଶୋଭନ ॥ ୪୪ ॥

ଆସବ ପାନରେ ସୁଖ ପ୍ରଣବ ମାନସ
ଆଗତ ଗତରେ ଦୂତି କହ ପ୍ରେମ ଭାଷ ॥ ୪୫ ॥

ଅଥ ଶ୍ରୀରାଧାର ଯେ ସ୍ୱପକ୍ଷ ପ୍ରତିପକ୍ଷ
ଅଟନ୍ତି ତଟସ୍ଥ ପୁନ କେ ସୁହୃଦ ପକ୍ଷ ॥ ୪୬ ॥*

ଅଷ୍ଟସଖୀ ଯେ ପରମ ପ୍ରେଷ୍ଠ ସେ ସ୍ୱପକ୍ଷେ
ଅଟେ ଶ୍ୟାମଳାଦି ପାଳି ପ୍ୟେ ସୁହୃଦ ପକ୍ଷ ॥ ୪୭ ॥

ଆଖ୍ୟାତ ତଟସ୍ଥ ମାତ୍ର ଅଟେ ଭଦ୍ରାବାଳୀ
ଅପଣ ଯେ ପ୍ରତିପକ୍ଷ ଜାଣ ଚନ୍ଦ୍ରାବଳୀ ॥ ୪୮ ॥

ଅଥ ସୁ ରମଣୀୟ ଯେ ପ୍ୟେ ରମଣୀତୟ
ଆଖ୍ୟାତ କରିବ ଶୁଣ ଯୌବନ ବିଷୟ ॥ ୪୯ ॥

ଅଛନ୍ତି କଳାବନ୍ତ୍ୟାଦି ସ୍ଥିତ ବୟଃସନ୍ଧି
ଅଭିନବଂ[1] ଯୌବନରେ ଧନ୍ୟାଦି ଯେ ବଧି ॥ ୫୦ ॥

ଅତି ରମ୍ୟ ଶ୍ରୀରାଧା ଦିବ୍ୟକୁ ଯୌବନରେ
ଅଛନ୍ତି ଚନ୍ଦ୍ରାବଳ୍ୟାଦି ଯୌବନ ପୂର୍ଣ୍ଣରେ ॥ ୫୧ ॥

---

* ସ୍ୟାତ୍ ସ୍ୱପକ୍ଷ ସୁହୃତ୍ପକ୍ଷ ତଟସ୍ଥ ପ୍ରତିପକ୍ଷକାଃ ।
ବଧୂସ୍ୟାଷ୍ଟଃଶ୍ୟାମଳାଦୌ ଭଦ୍ରା ଚନ୍ଦ୍ରାବଳୀ କ୍ରମାତ୍ ॥୧॥
(ଇତି ଉଜ୍ଜ୍ୱଳନୀଳମଣୌ) ॥·ପୋଥିପାଠ ॥

୧ । (କ) ଅଭିନବ୍ୟ

ଆଦ୍ୟ ସ୍ତବକରେ ରାଧା ଦେବୀଙ୍କର ରତି
ଅନୁରାଗ ଭାବ ରାଗ କରିଥାଇ ଖ୍ୟାତି ॥ ୫୨ ॥

ଅଟଇ ସମର୍ଥା ରତି କୃଷ୍ଣ ସୁଖେ ସୁଖୀ
ଅଣୁମାତ୍ର ସେ ସମ୍ବନ୍ଧ ବିନା ମହାଦୁଃଖୀ ॥ ୫୩ ॥

ଅଧିକରେ କୃଷ୍ଣ ସୁଖ ତାତ୍ପର୍ଯ୍ୟବନ୍ତି
ଅଟେ ମଧୁ ସ୍ନେହ ଭର ମଞ୍ଜିଷ୍ଠାରେ ହୃତ ॥ ୫୪ ॥

ଅଧିରୂଢ ରୂଢ ଆଦ ନ କଲି ଉଚିତ
ଅତି ଚନ୍ଦ୍ର ବିସ୍ତର ଭୟରୁଁ କରି ଚିତ୍ତ ॥ ୫୫ ॥

ଆଲୋକ ଉଜ୍ଜ୍ୱଳ ନୀଳମଣି ମାଧବାଢ
ଅଶେଷରେ ବୁଝିବ ପଣ୍ଡିତ ପ୍ରେମବାଦୀ ॥ ୫୬ ॥

ଅଭିନବ ଉତ୍ପଳ କୋମଳ ବପୁ ସାଧୁ
ଆଶାସ ଚକୋର ନେତ୍ର ସୁଖକାରୀ ବିଧୁ ॥ ୫୭ ॥

ଆଶ୍ରୟ ସେହି ଦେବର ଚରଣ ରାଜୀବ
ଅନ୍ତରେ ଶ୍ୟାମସୁନ୍ଦର ଦେବର ରାଜବ ॥ ୫୮ ॥

— ଦ୍ୱିତୀୟ କୁସୁମ —

# ଆଠ ପୋଇ – ବସନ୍ତ ଋତୁ

( ଏକ )

ଆସି ପରବେଶ ମଧୁ କାଳ ହେଲା ମଧୁମତ୍ତରେ ବାତୁଳ ହୋଇବାତ ।
ଅତି ଭୃଙ୍ଗ ସ୍ଥୂଳ ଶିଳ ଶ୍ରୀଖଣ୍ଡ ଅଚଳ ଚଞ୍ଚଳରେ ଡେଇଁ ମହାପାତ ॥ ୧ ॥

ଅଙ୍ଗ୍ରି ହୃଜ ମନ୍ଦଗତି କାବେଷ୍ଟ ହତଶ ସ୍ରୋତେ ମନ୍ଦି ଆସଇ ଧୀରେ ।
ଅଣି ଋତୁ ଯେ ଅଗ୍ରମ ବମାକୁ ସୁତମ ପୁଷ୍ପବେଷ୍ଟ କଲା ଔଷଧିରେ ॥ ୨ ॥

ଅଧ୍ୱେ ଶେକ କୋକିଳଠାରୁ ବାର୍ତ୍ତାକଳ ଶୁଣି ସେ ଚନ୍ଦନ କ୍ଷୀଣ ବାସେ
ଅତି ଆତୁରତା ମତ ହର ପୁଷ୍ପବନ୍ତ ସୁବାସ ବେଶରେ ଭ୍ରମି ଆସେ ॥ ୩ ॥

ଅବଲୋକ ଅଦଭୂତ ହାସକୁ ସଂଭୂତ ଦର ମୁକୁଳରେ ମୁଗ୍ଧା ହସେ
ଅଙ୍ଗ ମୁକୁଳରେ ମଧ୍ୟା ପ୍ରଳେହ୍ଲ ପ୍ରସିଦ୍ଧା ଅତି ସ୍ଫୁଟ ହାସ ପରକାଶେ ॥ ୪ ॥

ଅପହୃତ ବାସ ମଧୁ ଯୋଗରେ ସେ ସାଧୁ ଅଧୃତ ବାତେ ଅସ୍ଥିର ପଦ ।
ଅଳିକାଳ ବାଣୀ ପ୍ରେମେ ମଧୁ ପିଇ ଭମେ ଝଙ୍କାର ନୋହେ ଅନର୍ଥ ପଦ ॥ ୫ ॥

ଅଭିନବ ଦଳ ତଳପରେ କେ ମଞ୍ଜୁଳ ବାସ ମଲ୍ଲୀ ପୁଷ୍ପ ହସେ ବେଶ ।
ଆଗମନ କୁଞ୍ଜ ଭୃଙ୍ଗର କରଇ ବଧୂର ଉତ୍କଣ୍ଠିତା ଭାବେ ଗୃହେଁ ବଶ ॥ ୬ ॥

ଅଙ୍ଗ ଅନଳେ କମ୍ପିତ କେ ଖଣ୍ଡିତା ବତ ପରାଗ ଅଙ୍କିତ ବପୁ ଦେଖି
ଅତି ଗୁଞ୍ଜନ ଛଳରେ ଗୃହେ ମଞ୍ଜୁଳରେ ବୋଧି ମାନ ବ୍ୟାଧି ହତେ ସୁଖୀ ॥ ୭ ॥

ଅଛୁ ଆତରି ଉଲଠ ରତି ମଧୁଲଠ ତଳେ କେ ପୁଟି ଉପରେ ହସେ ।
ଅଠେ ହୋଳିତ ଆଶୁଗେ ଚଛିରି ପରାଗେ ଶ୍ରୀ ଶ୍ୟାମସୁନ୍ଦର ଦେବ ଭାଷେ ॥ ୮ ॥

— ଗୀତ —

( ଆଷାଢ ଶୁକ୍ଳ ବାଣୀରେ )

ଅନଙ୍ଗ ବସନ୍ତ ସଖା ସାକରେ
ଅନ୍ତେ ବଶ୍ୟ ଜସ୍ୟ ଭରସା କରେ
ଆମ୍ର ସପ୍ରଛାଦ ବାଣ ପ୍ରକରେ
ଅଶୋକ ଅମ୍ବରୁହ କ୍ଷିପ୍ର କରେ ।
ଆଣି ଧଟକରେ,
ଅଁଟିଚ କରବାକୁଁ ଦର୍ପ କରେ ॥ ୧ ॥

ଆତପତ୍ର ରୁଚ ପୁଣ୍ଡ୍ରସାକରେ
ଆଖ୍ୟା ଶିଖରେ ଗୃମରେ ନକରେ
ଆନ୍ଦୋଳନ ହୋସ୍ତେ ଚନ୍ଦ୍ର କଂକନ୍ତର
ଅତୁଳା କେତକୀ ଶବଳା କରେ ।
ଆସି କଂଶୁକରେ,
ଅଭିନବ ଦଳ ମେଖଳା କରେ ॥ ୨ ॥

---

( ଦୁଇ )

ଶ୍ଳେଷ—
ଅଛି ମନ୍ତ୍ରି ନାଗେଶ୍ୱର ଦନ୍ତ ବାସେ ମାର ଗୃମଗଣ କାନ୍ତେ ଶୀଘ୍ର ବେଗ
ଆଶୀବିଷ ବିଷରେ ଯେ ଆଶୁଗ ବିରାଜେ ବିରହୀ ବିନାଶେ ପରବେଶ ॥ ୧ ॥

ଅଗ ମାତଙ୍ଗ ପ୍ରକରେ ଢକ୍କା ସ୍ତବକରେ ଭୃଙ୍ଗନାଦ ବାଦ୍ୟ ସ୍ଫୁରେ ବେଗ ।
ଆଖ୍ୟା ପ୍ରିୟ ଯେ ବନରେ ଭେରୀ ପଞ୍ଚସ୍ୱରେ ବାଜନ ରଚ କର୍ମାସ୍ତେ ବିଗ ॥ ୨ ॥

ଆପେ ଚଢ଼ି ମୀନ ଯାନ ଅତନୁ ଶୋଭନ ଆଶୁଗ ସଗୁଣ ରୂପପାଣି
ଆଦ୍ୟ ଅଭ୍ରମଧ୍ୟେ ପୂନ କର ଶୀରପାନ ତରୁଣଙ୍କ ଦଶା ନୋହେ ଜାଣି ॥ ୩ ॥

ଆଳି ଆଶବରେ ମତ୍ତ ତଥା ପରଭୃତ ପୁଷ୍ପ ମଧୁ ଯୋଗ ସଖା ମଧୁ
ଆସି ମନ୍ଦ ସଦା ଗତ ବାତୁଳ ଯେ ଖ୍ୟାତ ବାନ୍ଧୁଣି ସେବନ ମିତ୍ର ବିଧୁ ॥ ୪ ॥

ଅତି ନୋହିଲ ଅଦ୍ଭୁତ ମହୀକ୍ଷିତ ହତ ବିରହ୍ମି ବିନାଶ ସମୂଳରେ
ଅଛୁ ରାଜ୍ୟଙ୍ଗ ସମୃଦ୍ଧ ସ୍ୱାମୀ ତେଜ ବୃଦ୍ଧ ଅମାତ୍ୟ ସୁହୃଦ ପ୍ରବଳରେ ॥ ୫ ॥
ଅଥ କୋଷ ଚତୁଃଷଷ୍ଟି କଳା ବିମ୍ବଓଷ୍ଠୀ କୂଟ ଦୁର୍ଗ ରାଷ୍ଟ୍ର ପୁର ଜନ
ଅଟେ ବଳ ଗୁଳ୍ମଗଣ ତିନ ଶକ୍ତି ଜାଣ ପ୍ରଭାବ ଉତ୍ସାହ ମନ୍ତ୍ର ଯେଣ ॥ ୬ ॥
ଅତି ଅମାନଆ ଯୋଗୀ ସକଳ ବିଯୋଗୀ ହିତ ବିଜେ ଦେଖିଲ ଭେଦର
ଅମ୍ବୁରୁହ ହୃଦେ ହର ଆସନକୁ କରିଥିଲେ କରାଇଲେ ଯୋଗୀ ଦୂର ॥ ୭ ॥
ଆଣି ଅବଳା କରାଇ ମାନସ ରସାଇ ହରିଣାକ୍ଷୀ ହେଲି ହରି ବାଣୀ
ଅଙ୍କେ ବିଭୂତିର ଛଳ ଶ୍ରୀଖଣ୍ଡ ମଞ୍ଜୁଳ ଶ୍ରୀ ଶ୍ୟାମସୁନ୍ଦର ଦେବ ଭଣି ॥ ୮ ॥

— ଗୀତ —

(ଆଷାଢ଼ ଶୁକ୍ଳ ବାଣୀ)

ଆଲୋକ ବିଯୋଗୀ ବିଦେଶ ଛାଡ଼ି
ଆସନ୍ତି ରମା ଧ୍ୟାନେ ପଥ ହୁଡ଼ି
ଆକଣ୍ଠଧାର ଭବ ଅକୂପାର
ଅନ୍ତରେ ପଥିକ ନ ପାଇ ପାର ।
ଅଶୋକ କାଣ୍ଡରେ,
ଆସୁ ଆସୁ ପଡ଼ି ପଳାଇ ଡରେ । ୧ ॥

ଅପି କଂଶୁକକୁ ଗୃହ୍ନି ଅପିତ
ଅରୁଣ ହରେ ପ୍ରେ କାମୀ ରକତ
ଆମ୍ରକାଣ୍ଡ ଦେଖି ହୃଦ କରତି
ଅଙ୍ଗନା ବର କି ଥିବ ବରତି ।
ଅବଧି ବାସର,
ଅତିକ୍ରମିଲେ ଭେଦିବ ପ୍ରେ ଶର । ୨ ॥

---

୧ । (କ) ପଦ ଛୁଟି

( ଭଜନ )

ଆସୁଁ କେ ଦେଖେ ମାର୍ଗରେ ଚଉଁର ରଙ୍ଗରେ ଖେଳ ରଚେ ଅତି ମନୋହାରୀ
ଅନ୍ତେ ସେହି ରାଗ ଜଡ଼େ ଗତ କରେ ଗୃଣ୍ତ୍ରେ ପ୍ରିୟା ଖେଳ ସଙ୍ଗ ଇଚ୍ଛା କରି ॥ ୧ ॥

ଅଗ୍ରେ ନାଗେଶ୍ୱର କଳ ମଦନ ବାଟୁଳି ଦେଖି କେ ଚମକ କରେ ଚିତ୍ତ
ଆଲୋଚନା ପ୍ୟେହ୍ନପରି ପୟୋଧର ଧରିଥିଲା ହୋଇଥିବ ପୃଷ୍ଠବନ୍ତ ॥ ୨ ॥

ଅଟେ ତୁଙ୍ଗ ଧରାଧର କାହା ପୟୋଧର ଆରୋହଣରୁ ମନ୍ଥର ଚାଲି
ଅଷ୍ଟି ପଦ୍ମ୍ୟ ଅଗ୍ର ଧାରା ଦେଇଥିବ ପଦ୍ମ ଲଦାଇ ଅଙ୍କିତ ନଖ ଖାଲି ॥ ୩ ॥

ଆସିଥିଲି ଯେ ନର୍ମାଣି ରାମା ରମ୍ୟ ବେଣୀ ପିନ୍ଧାଇ ନ ଥିବ ଟମା ପ୍ରେମରେ
ଅବଲୋକ ମାନବନ୍ତି ହେବାର ଯୁବତୀ ଲେଖିଥିଲି ବନ୍ଧୁ କରମରେ ॥ ୪ ॥

ଅନୁଭୂତ ଭୂତପତି ପରଶର ଖ୍ୟାତ କୁଚ ଶମ୍ଭୁ ଛୁଇଁଥିବ ଭ୍ରାନ୍ତି
ଆଜି ଥିବାରେ ଜୀବନ ନୋହିବ ଜୀବନ ଉର୍ଦ୍ଧମୁଖୀ କେବେ ପରବାସୀ ॥ ୫ ॥

ଅବଧିର ଦିନ ଗଣି କୈବର ତରୁଣୀ ସୁବେଶ ସଜାଡ଼େ ଅନ୍ନଥାଳି
ଆଣି ଗଣକ ପଚାରି କେ ମନେ ବିଚାରି ବଳିଭୁକକୁ ଦିଅଇ ବଳି ॥ ୬ ॥

ଆସି କଉଁ ପରବାସୀ ଅଙ୍କରେ ସୁକେଶୀ ଧରି ବୋଲେ ଥିଲୁ ଭାଗ୍ୟ ବଳେ
ଅନଙ୍ଗର ଚ୍ୟୁତ ଶରୁ ବଞ୍ଚିଲି ଉନ୍ମୋରୁ ଶୁଣି ସେ ଗୃହିଣୀ ଅଶ୍ରୁ ଢାଳେ ॥ ୭ ॥

ଆର୍ତ୍ତି ଆର୍ତ୍ତିବଟରେ କାହା ନାରୀ ଦେଖି ନାହା ଦୁଃଖେ ଭୁଙ୍କ ଭାଗ୍ୟ ପରଶଂସେ
ଅଭିନବ ଭୋଗ ସିଦ୍ଧି ତେଜିଲା କେ ବିଧି ଶ୍ରୀ ଶ୍ୟାମସୁନ୍ଦର ଦେବ ଭାଷେ ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀ )

ଅଳଙ୍କାରେ ଶଠ ନାୟକ ଧୃଷ୍ଟ
ଅନଟୁକ ଯେନ ଦକ୍ଷିଣ ପୃଷ୍ଠ
ଅଚ୍ୟୁତ ସେହିଁ ଲକ୍ଷଣାକୁ ଧରି
ଅମୃଦ ମାନରେ ରସିଲେ ନାରୀ

ଆପେ ଚନ୍ଦ୍ରାବଳୀ,
ଆଦରେ ମଙ୍ଗଳା ଶ୍ୟାମଳା ପାଳି ।୧।

ଅଟେ ଧୀର ମଧ୍ୟା ଅଧୀର ମଧ୍ୟା
ଅଖ୍ୟାତ କେହୁ ଧୀରା ଧୀର ମଧ୍ୟା
ଅଛନ୍ତି ଧୀର ପ୍ରଗଲ୍‌ଭ କେ ରାମା
ଅଧୀର ପ୍ରଗଲ୍‌ଭ କେ ମନୋରମା
ଅଧିକରେ ତହିଁ,
ଅଟେ ଧୀରା ଧୀର ପ୍ରଗଲ୍‌ଭା କେହୁ ।୨।

---

( ଗୀତ )

ଶଠ ନାୟକ—

ଅଧୋକ୍ଷଜ ପୁଷ୍ପାୟୁଧ ବାଣେ ହୋଇ ବଶ ଯେକ ଗୋପୀରେ ସୁରତେ ରସି
ଅଙ୍ଗ ତାଳ ତା କୁଙ୍କୁମ ଅଙ୍କରେ ସୁଷମ ଯେକ ରମଣୀ ଭେଟିଲେ ଆସି ।୧।

ନାୟିକା ମଧ୍ୟା ଧୀରା—

ଅବଲୋକ ସେ କଥିତ କୃଷ୍ଣଚନ୍ଦ୍ର ସତ ପୂର୍ଣ୍ଣ ଉଦେ ହେଲପର ଦଶ
ଅଭିନବ ଯେ କୁଙ୍କୁମ ଅରୁଣ ସୁଷମ ଅଙ୍କିତ ହୋଇଛୁ ତନୁଦେଶ ।।୨।।

ଆନନ୍ଦିତ କୁମୁଦିନୀ ପରି ରେ ମୋଦିନୀ ହେଲାକ ସମ୍ଭୋଗ ମୋହିତ
ଅନୁକମ୍ପାରୁ ପ୍ରସନ୍ନ ଦେଲା ପରା ଘନ ପିରନ୍ତରେ ନୋହୁ ଆଚ୍ଛାଦିତ ।।୩।।

ଦକ୍ଷିଣ ନାୟକ—

ଅଚ୍ୟୁତ ଯେ ଯେକ ବାଳି ସଙ୍ଗେ ରତି କେଳି ଅନ୍ତେ ପୁନ ଯେକ ରାମା ପାଶେ
ଅନୁରାଗ ପ୍ରବଳରେ ଗୃହ ପଟଳରେ ତୋଷନ୍ତେ ନ ଯେନ ରୋଷେ ଭାଷେ ।।୪।।

ନାୟିକା ମଧ୍ୟା ଅଧୀରା—

ଆସିବାକୁ କେବି ସତ ବଳିଲ ଅଚ୍ୟୁତ ସେ ପ୍ରେମ ରମଣୀ ପାଶ ଛାଡ଼ି
ଅବକାଶ ମୋର ଭାବ ହୃଦେ ନକ ଲବ ପୁରି ରହିଛି ତା ପ୍ରୀତି ଜଡ଼ି ।।୫।।

ଆସ କରବ ସୁବେଶ ବୋଲ ଯାହା ଭାଷ ଭ୍ରମେ ସେ ରମଣୀ ପର ମଣି
ଆଲୋକରେ ଢଣେ ଢଣେ ସେହ୍ନ ରମା ଢସେ ମୋ ବିଷୟେ ହୋଇ ସୂର୍ଯ୍ୟମଣି । ୬ ।

ଧୃଷ୍ଟ ନାୟକ—

ଅଧରରେ ଅଞ୍ଜନକୁ ଦେଖି କେ ଶ୍ଳେଷକୁ କରିବା ଯୁହୁଁ ବଲ୍ଲଭ ଭାଷେ
ଅନ୍ୟେ କହିଁ ହେତୁ ସେନ ହୋଇଛୁ ମାନିନୀ ମୁଖ ଟେକ ଅନା ସଦରଷେ ॥ ୭ ॥

ଅଶ୍ରୁଜାତରେ ପଙ୍କିଳ କରୁ ଗଣ୍ଡସ୍ଥଳ ବୋଧିଲେ ନ କହ ପ୍ରୀତି ବାଣୀ
ଅବସ୍ଥିତ ତୋହପର କେତେ ମୋ ସୁନ୍ଦରୀ ଶ୍ରୀ ଶ୍ୟାମସୁନ୍ଦର ଦେବ ଭଣି ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀ )

ନାୟିକା ମଧ୍ୟା ଧୀର ଅଧୀରା—

ଅବଳା କହେ ଅପରାଧୀ ମୁହିଁ
ଅଛନ୍ତି ମନୋହାରୀମାନେ କହି
ଆଳାପ କା ଆଗେ କରିବ ବସି
ଅନ୍ୟେ ଚିନ୍ତ କଥା ଅଶ୍ରୁ ବରଷି
ଅତ ଢଙ୍ଗ କାନ୍ତ,
ଆସି ପ୍ରବୋଧନା କଲେ ନିତାନ୍ତ ॥ ୧ ॥

ଅଛି ସମସ୍ତ ବିଷୟ ଗୋଚର
ଅଶ୍ରୁ ମୁଞ୍ଚିଲେ କି ଗଲା ତୁମ୍ଭର
ଅଛନ୍ତି ରମଣୀ ମସ୍ତକ ମଣି
ଅନ୍ତର ଲଭ ଯାର ଯୁଗ ମଣି
ଅନ୍ୟେ କି କାରଣ,
ଅଧିକ ତାପ ହେବ ଅକାରଣ ॥ ୨ ॥

( ପାଞ୍ଚ )

ପ୍ରଗଲ୍ଭା ଧୀରା—

ଅବଲୋକି ବନମାଳୀ ଭଦ୍ରା ଚନ୍ଦ୍ରାବଳୀ ଉଦାସୀନ ହୋଇ ସୁରତରେ
ଆଦରକୁ କରିନେଇ ଆସନେ ବସାଇ ତୋଷନ୍ତି କୁସୁମ ତାମ୍ବୂଳରେ ॥ ୧ ॥

ଅନ୍ତେ ମାନ ଥାଇ ପୁଣି ଅପ୍ରକଟ କରି ବଞ୍ଚାଇ ବିଳମ୍ବ କରେ କାଳ
ଆଲିଙ୍ଗନ ଯେ ଚୁମ୍ବନ ନ ଦେଇ ବଚନ ରଚନେ ତୁଷି ନ କରେ କୋଳ ॥ ୨ ॥

ପ୍ରଗଲ୍ଭା ଅଧୀରା—

ଆସି ଶ୍ୟାମଳା ପାଶରେ ମିଳୁ ସେ ରୋଷରେ ନ ଗୃହ୍ଣି ଅବମା ନିରୀକ୍ଷଇ
ଅଧୋକ୍ଷଜ ଚାଟୁ ବାଣୀ ରମଣୀ ନ ଶୁଣି ନିଷ୍ଠୁର ବଚନ ପ୍ରକାଶଇ ॥ ୩ ॥

ଅଟେ ସହଜେ କୋପନା କରଇ ତର୍ଜନା ବିଶେଷେ ମାନ ନିଦାନ ପାଇ
ଆଣି କର୍ଣ୍ଣ ନୀଳୋତ୍ପଳ ଅବତଂସ ଫୁଲ ଗୋବିନ୍ଦ ବପୁରେ ପ୍ରହାରଇ ॥ ୪ ॥

ପ୍ରଗଲ୍ଭା ଧୀରା ଅଧୀରା —

ଅନ୍ୟ ରମଣୀ ସୁରତ ଚିହ୍ନରେ ଅଙ୍କିତ ହେବାର ଦେଖି ମଙ୍ଗଳା କହି
ଅଟ ନାୟକ ବିଧିରେ ସୁବର୍ଣ୍ଣ ତନୁରେ ଜଡ଼ିବା ଅନ୍ତର ହେଲା କହି ॥ ୫ ॥

ଅଟେ ସୁନାରୀ ସେ ଯେଣୁ ମରକତ ତନୁ ରତି ଚିହ୍ନ ନଖ ରେଖା ଦେଇ
ଅଧିକରେ ତ ମଞ୍ଜୁଳ ହେଲା ବହୁମୂଲ୍ୟ ଯେଣୁ ମୋ ମାନସ ମୋହ ହୋଇ ॥ ୬ ॥

ମୁଗ୍ଧା ମାନ—

ଆସି ମୁଗ୍ଧା ମନୋହାରୀ ପାଶେ ମିଳୁଂ ହରି ନ କହି ବଚନ ମାନ ଜାତେ
ଅଶ୍ରୁ କରଇ ଜନନ ପଙ୍କଜ ନୟନ ମୁଖ ପୋତି ପୋଛେ ବସନାନ୍ତେ ॥ ୭ ॥

ଅଟେ ମଧ୍ୟା ପ୍ରଗଲ୍ଭାର ଲକ୍ଷଣ ବେଭାର ତିନ ତିନ ବୁଝ ବିଜ୍ଞ ବାର
ଏଣୁ ମୁଗ୍ଧା ମାନ ଯେକ ବିଧି କହେ ଠିକ ଶ୍ରୀ ଶ୍ୟାମସୁନ୍ଦର ନଦେବ ଧୀର ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀରେ )

ଅଳି ଚୁମ୍ବ ଦେଇ ସୁମନସରେ
ଆପୀଡ଼ିତ ହୋଇ ସୁମନ ଶରେ

ଅଳ୍ପ ନ ରଖି ମାନ ମାନସରେ
ଅକଥନ ଲୀଳା ମାନ ନ ସରେ
ଆଶ୍ଳେଷ ବେଶରେ,
ଅନୋକହେ ପୁଂସ ଭ୍ରାନ୍ତି ବଶରେ ।୧।

ଅତ ଉଲ୍ଲାହ ଚର୍ଚ୍ଚର ଖେଳରେ
ଆପେ ଚନ୍ଦ୍ରାବଳୀ ଆଳି ମେଳରେ
ଅଛନ୍ତି ଶ୍ୟାମଳା ମଙ୍ଗଳା ପାଳି
ଆଖିଗ୍ରୀ କନ୍ୟା ଧନ୍ୟା ଭଦ୍ରା ବାଳି
ଅଚଳସ ମୁଣା (?)
ଅବର ଭର କୁରଙ୍ଗୀ ଈକ୍ଷଣା ॥ ୨ ॥

---

( ଛଅ )

ଅବଲୋକ ଥିଲେ ବସ୍ତୁ ଦେଶ ଗ୍ରାମ ସେସ୍ତୁ ଭନେ ଛବରେ ଅମ୍ବିକା ବଚନ
ଅତି ଶ୍ରଦ୍ଧା ଶତେ ମଧ୍ୟା ପ୍ରଗଲ୍‌ଭା ସୁମଧ୍ୟା ମୁଗ୍‌ଧା ସେହି ବେଶ ସୁଶୋଭନେ ॥ ୧ ॥
ଅଟେ କେ ଉତ୍କଳ ରମା ସୁବେଶ ସୁଷମା ଗଭା ଯୁଡ଼ା କେ ଲୋଟନ୍ତି ଜୁଡ଼ା
ଆମନ୍ତ୍ରନ ମାଳ ଝରା ମାନଅାଁରେ ଚୋରା କଥା ମାଳା ବାନ୍ଧି ଲଭେ ବ୍ରୀଡ଼ା ॥ ୨ ॥
ଅଟେ କେ କଳଙ୍ଗ ଦେଶୀ କଣ୍ଠାଠ ସୁକେଶୀ ସୁ ଖୋସା କେ ବନ୍ଧ ଖୋସା ରଙ୍ଗେ
ଅର୍ଦ୍ଧ ଚନ୍ଦ୍ର ରତ୍ନ ହେମ ଶତା ମନୋରମ କର୍ଣ୍ଣଫୁଲ ଝୁମ୍ପି ବାଳୀ ଖଞ୍ଜେ ॥ ୩ ॥
ଆଣି ଥାଣି ଗୁଞ୍ଜରାଟ ମହାରାଷ୍ଟ୍ରବତ ରତ୍ନ ବେଣୀ କେ କୁସୁମେ ଶୋହେ
ଅଙ୍ଗ ଆଦ ବଙ୍ଗ ଯେତେ ଛବ ଅନୁମତେ ଗୋବନ୍ଦ ନୟନ ମନ ମୋହେ ॥ ୪ ॥
ଅଭିନବ ବେଶ ଦେଖି ଅପଲକ ଆଖି ବନ୍ଧନ ହୋଇ ଲାବଣ୍ୟ ପାଶେ
ଅବଳା ଯେ ଲାଜ ଲାଜମୁଖ ସରସିଜ ମୁକୁଳ କର ପ୍ରବେଶ ପାଶେ ॥ ୫ ॥
ଆବେଷ୍ଟିତ ମନୋହାରୀ ବୃନ୍ଦ ହେଲେ ହରି ଅବର ଉଞ୍ଚାଇ ହସି ମନ୍ଦେ
ଅଙ୍ଗ ହୋଇ କାମମାନ ପାଞ୍ଚ ମୂର୍ତ୍ତିମାନ ଘନ ବପୁରେ କ ରାଗ ଉଦେ ॥ ୬ ॥

ଅତି ରଣିତ କଙ୍କଣ କବା ରଣ ରଣ ରଣରେ ବଜାଇ ଥାଇ ବାଦ୍ୟ
ଅପାଙ୍ଗରେ ଶଷ ବାଣ ଭ୍ରୂଲତା କମାଣ ସନ୍ଧି ବନ୍ଧ ଗମା ରଚି ବାଦ ॥ ୭ ॥

ଅଚ୍ୟୁତଙ୍କୁ ହୋଇ ବଳ ସେ ମଧୁମଙ୍ଗଳ ସୁବଳ ଫଗୁ ନଯୋଜ ଭଙ୍ଗେ
ଆରକତ କ ଉତ୍ତୁଙ୍ଗ କୁଚ ମାତୁଲଙ୍ଗ ଶ୍ରୀ ଶ୍ୟାମସୁନ୍ଦର ଦେବ କହେ ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀ )

ଆପଣେ କଳ କୃଟୁଣି ସନ୍ତରେ
ଅବର ବରଷାଇ ନିରନ୍ତରେ
ଅଧିକେ ଘନ ଜଘନ ସନ୍ଧରେ
ଅଲକ୍ଷ ଲକ୍ଷ କୁଚ ଅସନ୍ଧରେ
ଅରୁଣ କ ରମ୍ଭା,
ଅରୁଣ କରେ ଉଦେ ଗିରି ଶୋଭା ॥୧॥

ଅବର ଅଙ୍ଗରେ କେ ଅସମ୍ଭାଳ
ଆମୁକ୍ତ ମାଳା କବରୀ ସୁମାଳ
ଅବଳା ବଦନେ କ ରଚାନ୍ତ ଗମା
ଅଧି ବିଭବ ପ୍ରଭବ ସୁଷମା
ଆବନ୍ଧ ସୁକାଞ୍ଚି,
ଅଞ୍ଚଳ ଦୁଢେ ବାନ୍ଧେ ପୁନ ପାଞ୍ଚି ॥୨॥

---

( ସାତ )

ଆଭୃସୃତରେ ଫନିର ପିଚକା ସେ ମିରଜାକ୍ଷୀମାନେ କଲେ ବରଷଣ
ଅର୍କ ଜ୍ୟୋତିରେ ରଚନେ ଝଟକ ସତନ ପ୍ରାବୃଟେ ଜ୍ୟୋତିରଙ୍ଗଣ ଗଣ ॥ ୧ ॥

ଅପେ ହେମ ନଳ ଧରି ହରି ପୁନ ମାରି ଜଘନ ସନ୍ଧରେ ପୟୋଧରେ
ଅବିରତ ଅବିର ତ ହେଉଅଛି ପାତ ବିଶେଷରେ ସ୍ୱେଦ୍ଧ ଶୋଭା ଧରେ ॥ ୨ ॥

ଅତି ଉଚ୍ଚ ପୟୋଧର ଗଇରକ ଧର ତୁଙ୍ଗ ଲଳିତ କ ସଂପୁଟକ
ଅତନୁର ତୀକ୍ଷ୍ଣ ଶର ଘାତରେ ରୁଧିର ବହଇ ଶଙ୍କର ସୁପ୍ରଣତକ ॥ ୩ ॥

ଆଜ ମହା ପୁଷ୍ପବନ୍ତୀ କଳାପର ଘେନି କୁସୁମ ସଙ୍ଗରେ ରତ୍ନ ମଧୁ
ଆଣ ରମଣୀ ପାଟକ-ବଧୂ କ କଣ୍ଠକ ପାଠ ବିନ୍ଧି ଚୋଷେ ଅଳବଧୂ ॥ ୪ ॥

ଆପେ କାହାର କଞ୍ଚୁକ ଫିଟାଇ ଚୂଚୁକ ଧରନ୍ତେ ପଳାଇ ହସି ହସି
ଆଣି ଅଧର ଲେପନ୍ତି କଜ୍ଜଳ ପୀଡ଼ନ୍ତି ଚମକ ବୋଲେ ଇଷି ଇଷି ॥ ୫ ॥

ଆସି କନ୍ଧରା ଛଳରେ କେ କର୍ଣ୍ଣ ମୂଳରେ ଚୁମ୍ବ ଦେଇଗଲା କ ମାଧୁରୀ
ଆସିବାରେ ଯିବାରେ କେ ଗୋବିନ୍ଦ ପ୍ରତି କେ ସ୍ତନ ଠେସି ହସ୍ତେ ଜବାଧରୀ ॥ ୬ ॥

ଆଶ୍ଳେ ଭିଡ଼ନ୍ତେ କାହାକୁ କମ୍ପାଇ ଦେହକୁ ଛଡ଼ାଇ ପୀଡ଼ଇ ନଖ ମୁନ
ଆଣି ଅଧର ପିଙ୍ଗଇ କେ ପଳାଇ ଯାଇ ପାଲଟି ଅନାଇଁ ପୁନଃ ପୁନ ॥ ୭ ॥

ଅଭିନବ ସୁକୁମାରୀ ବରଜ କୁମାରୀ ମୁଗ୍ଧା ଭାବ ଖେଳ ମନ ଜାଣେ
ଅଛି ପ୍ରଗଲ୍‌ଭା କେ କହେ ଜାଣିମା ଯେ ରହେ ଶ୍ରୀ ଶ୍ୟାମସୁନ୍ଦର ଦେବ ଭଣେ ॥ ୮ ॥

— ଗୀତ —

( ଆଷାଢ଼ ଶୁକ୍ଳ ବାଣୀ )

ଆଲୋକ ପ୍ରେ ଋତୁବର ସୁଷମା
ଅଧିକ ବେଶ ବୃଷଭାନୁ ଜେମା
ଅଟନ୍ତି ବର୍ଧିରେ ଲାବଣ୍ୟ ଧାମା
ଆକଳ୍ପ ଯୋଗରେ ଅନ ଉପମା
ଅତି ମନୋରମା,
ଅଳଙ୍କାରେ ରମ୍ୟ ବଶିଲ୍ପ କ୍ଷମା ॥ ୧ ॥

ଆଚର ଚଇଁର ଖେଳ ବିଦେଶ
ଅବର ଶୁକ୍ଳରେ ବଧୂ ସଂକାଶ
ଅରୁଣତର କେ ରୁଚି ପଲାଶ
ଅତର ସଦୃଶ୍ୟ ପୂରଇ ବାସ
ଆଜନ୍ମ ପାଶ,
ଅଛି ମୁ ସଜର ମୁଣା ଅଶେଷ ॥ ୨ ॥

( ୫୦ )

ଅପସର ମେଳେ ସଜେ ପୂର୍ଣ୍ଣେମଜା ବଜେ ନନ୍ଦନଙ୍କୁ ଦ୍ୱେଷ୍ଟି ମନୋରମା
ଅଙ୍ଘ୍ରି ଯୁଗଳ କମଳରେ ମାର୍ଗ ମଞ୍ଜୁଳରେ ପୃଷ୍ଟଦଳେ କୃଷ୍ଣ ପ୍ରିୟତମା ॥ ୧ ॥

ଅଭିନବ ପୁଷ୍ପବନ୍ତି ଶୋଭନ ବ୍ରତତି ଭୃଙ୍ଗ ଚୁମ୍ବି ଦେଖି ହୃଦ ସଳ
ଅନ୍ତେ ଗୋବନ୍ଦର ପ୍ରୀତି ଚିହ୍ନେ ଣ୍ଟମଣ୍ଡି ଓହ୍ରାଦ ଚିତ୍ତ ନନ୍ଦର ଗ୍ଳଳ ॥ ୨ ॥

ଅମ୍ଳଚ୍ଛ ମୁଖ ସୁଖେ କୃଷ୍ଣଚନ୍ଦ୍ର ଦେଖେ ବଲ୍ଲଭ ଯୁବତୀ ସହସ୍ରେ
ଆବେଷ୍ଟିତ ହୋଇ ଖେଳ ରଚି କୁତୁହଳ ହାସ ପରିହାସ ବିଶେଷରେ ॥ ୩ ॥

ଅପାଙ୍ଗର ଶରେ ଭେଦ କରି କୃଷ୍ଣ ହୃଦ ଲେଉଟିଲେ ଭଙ୍ଗ ଉଲ୍ଲାସରେ
ଆପଗା କ ଅକୂପାର ସଙ୍ଗକୁ ଆତୁର ଉଜାଣି ବହିଲା ଚପଳରେ ॥ ୪ ॥

ଅଧୋକ୍ଷଜ ଥିଲେ ଗୃହିଁ ବାହୁଡ଼ିଲେ ସଙ୍ଗ ହସ୍ତରୁ ପତନ ହେଲା ବଂଶୀ
ଅର୍କ ତନୁଜା ପ୍ରାନ୍ତରେ ବିଷାଦ ମନରେ ଅଙ୍ଗନାଙ୍କ ସଙ୍ଗ ତେଜି ବସି ॥ ୫ ॥

ଅତି ସୁଗନ୍ଧ ସଧୀର ବହଇ ସମୀର ବନମାଳୀ ବସି ସ୍ୱେକାନ୍ତରେ
ଅଙ୍ଗେ ମନ୍ମଥ କେତନ ବାଣ ପଡ଼େ ଘନ ଇଚ୍ଛି ଗ୍ରଚ୍ଛି ଘାତ ନିତାନ୍ତରେ ॥ ୬ ॥

ଅନ୍ତେ ରାଧା ରୂପ ଧ୍ୟାୟି କଣ୍ଠ ନ ଛୁଟଇ ଆଉ କ ଭେଟିବି ବର ନାରୀ
ଅଳ୍ପ ଦାସର ପ୍ରସାଦ ମୋ ସର୍ବ ସମ୍ପଦ କଟାକ୍ଷକୁ ଥାଇ ଅନୁସରି ॥ ୭ ॥

ଆସ୍ୟ ଶୁଖାଇ ଲେଉଟି ଗଲେ ଯେ ପାଲଟି ନ ଗୃହିଁ ଯେବେ କେ ଆଣିଦେବ
ଆଜ କ କଲା ବିଧାତା ପ୍ରେମ ମାଧ ଚିନ୍ତା କହଇ ଶ୍ୟାମସୁନ୍ଦର ଦେବ ॥ ୮ ॥

— ତୃତୀୟ କୁସୁମ —

# ବୋଲି ଲେଖନ

।। ପ୍ରଥମ ବିଭାଗ ।।

( ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ )

**ଅନୁବନ୍ଧ—**

ଅନ୍ତରେ ବାହାରେ ଯେବା ହସେ ରାଧା ରୂପ
ଅରଣ୍ୟ ପ୍ରିୟର କଳ ବାଣୀ କଳାପ
ଅନୁରାଗ ଭୁଲେ ଲକ୍ଷ ନାହିଁ ସଂସାର
ଅଙ୍ଗ ସଉରଭ ମଣେ କୁସୁମ ସାର ।। ୧ ।।

— ଗୀତ —

( କେଦାର ରାଗେଣ ଗୀୟତେ )

ଅଛି ନବେଣୀ ଝଙ୍କତ କେତକୀ କୁସୁମେ
ଅଶ୍ରୁ ଜାତ ହୋଇ ପୁନ ପ୍ରେମ ଉଦଗମେ
ଅଳି କେଳ ଦେଖି ପୁଲେ ହୃଦ ପଡ଼େ ସଲ
ଅଧିକ କୂଜନ ବ୍ୟାଜେ ବାଜେ କାମ ଢାଲ ।ଘୋଷା।
ଅମ୍ବୁଜ ଧରି କରେ ଚୁମ୍ବନ ରଚନ
ଅରୁଣ ନବ ପଲ୍ଲବେ ଦଂଶିତ ଦର୍ଶନ ।। ୧ ।।

## — ଶଙ୍ଖଚୂଡ଼ ବଧ ବୋଲି —

( ଭୂତକେଳି ବାଣୀରେ )

ଅଚ୍ୟୁତ ଅନ୍ତକେ ଦୂତି ଯେକାଳେ ପ୍ରବେଶ
ଆତୁର ହରଷେ ହରି ବଚନ ପ୍ରକାଶ ।। ୧ ।।

ଅସିଦ୍ଧିଲେ ଉଦ୍ୟାନରେ ରାଧା ଗବେଶୁଷ
ଆଖିଖି ମେଳରେ ଖେଳ ଦେଖି ଅପସରି ॥ ୨ ॥

ଅଳିକୁଳ.କଦମ୍ବରେ ଯଦ୍ୟପି ବହରେ
ଆମ୍ରକାଳ ସୁଖ ଭାବ ପାଶୋରି ନ ପାରେ ॥ ୩ ॥

ଅତି ମୁକୁଳାଦ୍ୟ[1] ଯେତେ କୁସୁମ ପ୍ରଧାନ
ଅନ୍ୟୋକମା ବିଯୋଗ ନ କରେ ସମାଧ,ନ ॥ ୪ ॥

ଆଚ୍ଛନ୍ନ ଶ୍ରୀରାଧା ପ୍ରୀତି ପଟଳରେ ଅତି
ଅଦୃଶ୍ୟ ସକଳ ସୁଖ ଧଇର୍ଯ୍ୟ ପଦ୍ଧତି ॥ ୫ ॥

ଆବେଷ୍ଟି ମଦନ ବାମା ନୟନ ମୀନରେ
ଆବଦ୍ଧ ହୃଦୟ କରି ଗଲି ଯତନରେ ॥ ୬ ॥

ଅଧରୁ ଅମୃତ ଦେଇ କରାଇ ଅମର
ଅପହୃତ ପ୍ରାଣ ନୋହି ପୀଡ଼ିତ ଶରୀର ॥ ୭ ॥

ଅତନୁ ଜଳନିଧି କି ଦୃଢ଼ କୋଳ ଦେଇ
ଅନୁକମ୍ପା କରି ତାରୁ କର୍ଣ୍ଣଧାର ହୋଇ ॥ ୮ ॥

ଅନିଳ ପୁଷ୍ପ ସୁଗନ୍ଧ ବହି ଗମେ ଯଥା
ଅଚ୍ୟୁତ ସନ୍ଦେଶ ଘେନ ଦୂତୀ ଗମେ ତଥା ॥ ୯ ॥

ଆସିଲେ ଯେ ଗୋବିନ୍ଦ ବସ୍ତାଦେ ଖେଳ ତେଜି
ଆଭୀର କନ୍ୟା କାନନେ ଭ୍ରମେ କୃଷ୍ଣ ଖୋଜି ॥ ୧୦ ॥

ଅନ୍ୟେ କ ଗଣି ବଣା ଶ୍ରେଣୀ ଚନ୍ଦ୍ରାବଳୀ
ଅନ୍ୱେଷଣା କରି ଶ୍ରେଣେ ଭେଟେ ବନମାଳୀ ॥ ୧୧ ॥

ଅମୃତ କର ରୁଚିର ଆନନ୍ଦ ଦାୟକ
ଅନାଦର ସମାଗମ କାଳରେ ଅଧିକ ॥ ୧୨ ॥

ଅରେଚକ ତଥା ଚନ୍ଦ୍ରାବଳୀ ଦରଶନ
ଅଧିକ ବସନ୍ତେ ତେଜି ନିଶ୍ୱାସ ସ୍ୱସନ ॥ ୧୩ ॥

---

୧ । (କ) ମୁକୁଆଦ

ଆଦି କାରଣ ସ୍ନେହାଙ୍କ ଯୋଗୁଁ ରାଧା ମାନ
ଆଲୋଚନା ସୁଲୋଚନା ତେଜବେ ସେମାନ ।୧୪।

ଆଗତ ନିମିତ୍ତେ ଦୂତ ପେଷି କଲ୍ପ ବୋଧ
ଅନ୍ତକେ ପ୍ରେମ ଥିଲେ ହେବ ବିଶେଷ ବିରୋଧ ।୧୫।

ଅନଳ ନିବାରଣକୁ ଘୃତ ଉପଚାର
ଅପହୃତ ଶୀତକୁ କି ବ୍ୟଜନ ସଂଚାର । ୧୬ ।

ଅଳପ୍ପକୁ ଗଛ ଯେବେ କହିବା ବଚନ
ଅବଶ୍ୟେ ନିଷ୍ଠୁର ପ୍ରେମ ହେବ ସ୍ନେହହୀନ । ୧୭ ।।

ଅନ୍ତିକରେ ଥିବେ ରାଧା ଦେଖିଲେ ପ୍ରମାଦ
ଅଭାଗ୍ୟ କାଳେ ବିପଦ ଉପରେ ବିପଦ ।। ୧୮ ।

ଅନ୍ତରେ ସ୍ୱେମନ୍ତ ହରି କରୁ ବିସ୍ମରଣ
ଅରଣ୍ୟେ ଭ୍ରମନ୍ତେ ବ୍ରଜ କୁମାରୀ ହରଣ ।। ୧୯ ।

ଆସି ଶଙ୍ଖଚୂଡ଼ ନାମେ କିନ୍ନର ଅଧମ
ଅଳକା ଅଳଙ୍କାକୁ କରେ ନେମା କାମ ।। ୨୦ ।।

ଆଖିର ସ୍ୱରୂପ ଧରି ବୋଲେ କୃଷ୍ଣ ମତେ
ଆଜ୍ଞା ଦେଲେ ଯେନପିବ ତୁମ୍ଭଙ୍କୁ ସଙ୍ଗତେ ।୨୧।

ଅଙ୍ଗନା କୃଷ୍ଣ ବିଚ୍ଛେଦ ତାପରେ ତାପିତ
ଆପ୍ୟାୟିତ ବାଣୀ ଗ୍ରୀଷ୍ମେ ହିମାଂଶୁ ଯେମନ୍ତ ।୨୨।

ଅପହୃତ କନ୍ୟା ଗମେ ଉତ୍ତର ଦିଗରେ
ଆସି ଓଗାଳିଲେ ବଟୁ ସୁବଳ ଆଗରେ । ୨୩ ।

ଆଳାପ କରନ୍ତେ ନିଜ ସ୍ୱରୂପକୁ ଧରେ
ଅସ୍ଥି ମଧ୍ୟ ଠାରୁ ନର ଦେହ ଶଙ୍ଖ ଶିରେ । ୨୪ ।

ଅଧିକ ଶ୍ୱାସ ପବନେ ନେଇଅଛି ହରି
ଅରି ଭେଦରେ ପ୍ରେମ ବେନ ସିଂହନାଦ କରି ।୨୫।

ଅବଳା ପ୍ରେମିକାକୁ ବାଣୀ ଭକ୍ତି ଲଭି ଦେଇ
ଆର୍ତ୍ତି ହର ଗୋବିନ୍ଦ ମାଧବ ଦାମୋଦର । ୨୬ ।

ଅଚ୍ୟୁତ ଅଗ୍ରଜ ଶୁଣି ଶୀଘ୍ରେ କଲେ ଗତି
ଅଷ୍ଟ ପଳାଇଲ ଦେଖି ଦ୍ୱିଜରାଜ ଜ୍ୟୋତି ।୨୭।

ଅଚ୍ୟୁତ ପ୍ରେମକାଳେ ଚନ୍ଦ୍ରାବଳୀର ଭାଷଣ
ଆମ୍ଭେ ଉଦ୍ଧରିବୁଁ ଗୋପ କନ୍ୟାଙ୍କ କଷଣ ।୨୮।

ଆଶୁଗ ଗତିରେ ଶଙ୍ଖଚୂଡ଼ ଭେଟି ହରି
ଆଣ୍ଠେ ଚକ୍ର ପ୍ରହାରରେ ଜୀବନକୁ ହରି ।।୨୯।

ଆଣି ତା ମସ୍ତକ ମଣି ବଳଦେବ ଉରେ
ଆଲମ୍ବିତ କରନ୍ତେ ସେ ପ୍ରେମ ଶୋଭା ଧରେ ।୩୦।

ଅଙ୍ଗନାଙ୍କ ଦର ହର ଦର ହର ବାନା
ଆସୁ ଆସୁ ଅର୍ଦ୍ଧ ଶେଷ ପ୍ରଦୋଷ ଶୋଭନା ।୩୧।

ଆଭୀର କନ୍ୟାଙ୍କୁ ତାର ମାର ଶଙ୍ଖଚୂଡ଼
ଅବଲୋକନରେ ବ୍ରଜବାସୀ ସ୍ନେହ ବଢ଼ ।। ୩୨ ।।

ଆସି ବ୍ରଜ ସଂସଦରେ ଦଶତ ଅମ୍ବର
ଅନଙ୍ଗ ବାଣ ବ୍ରଣରେ କ୍ଷୀଣ କଳେବର ।୩୩।

ଆସିଥିବେ ସଂକେତ କୁଞ୍ଜକୁ ପର ପ୍ରିୟା
ଅନ୍ତେ ପ୍ରେମା ଚନ୍ଦ୍ର କାମଆର୍ତ୍ତେ କମ୍ପେ ହିୟା ।୩୪।

— ଗୀତ —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନୁବନ୍ଧ —

ଅନ୍ତିକରେ ଦୁଃଖ ମିଳୁଂ ରାଧିକା ଅଧୀର
    ଅଶ୍ରୁ ନେତ୍ର ଭୃଙ୍ଗ ମକରନ୍ଦ ଉଦ୍‌ଗାର
ଅଚ୍ୟୁତ ଚରିତ ସର୍ବ କରେ ପରକାଶ
    ଅକ୍ଷର ସ୍ଫୁରଇ ଗଦ୍‌ଗଦ ବିଶେଷ ।୧।

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଅନେକ ତାରା ରଜନୀ କୁମୁଦନୀ କେତେ
ଆଲୋଗୀ ଯେମନ୍ତେ ଚନ୍ଦ୍ର କୃଷ୍ଣ ସେହିମତେ ॥ ଘୋଷା ।

ଅବକାଶ ନାହିଁ ଚକୋରୀରେ
ଆଲୋକ ଆସିଲ ସେପରିରେ କ । ଓରେ ମାଇ ॥୧॥

## — ଦୂତୀ ବୋଧ ବୋଲି —

ଅଚ୍ୟୁତ ବ୍ରଜସୁନ୍ଦରୀ ସଙ୍ଗଲୀଳା ତେଜ
ଅଟବୀ ଭ୍ରମନ୍ତି ତବ ରୂପ ମନେ ହେଜ ॥ ୧ ॥

ଅମାତ୍ର ଆଚରି ଧୀର ଗତି ଦେଲୁ ଛାଡ଼ି
ଅତି ଚଞ୍ଚଳ ଗମନେ ଆସିଲୁ ସେ ଦୁଡ଼ି ॥ ୨ ॥

ଅଳପ ଯେମନ୍ତ ଥାନ୍ତୁ ଅରଣ୍ୟ ବଦରି
ଆଦରେ ପାଉଛି ପଥୁଁ ନେଇଥାନ୍ତେ ହରି ॥ ୩ ॥

ଅନୁସରି ପଦ ଅଙ୍କ ଗଲେ ବହୁ ଦୂର
ଅରଣ୍ୟ ପ୍ରିୟର କଳ ପଡ଼େ କି ଭଦୁର ॥ ୪ ॥

ଅମସୃଣ ତୋ କୁଚ ହୃଦୟରେ ବନ୍ଧ
ଅବଶ ଇନ୍ଦ୍ରିୟ ସୂର୍ଯ୍ୟ ସ୍ପନ୍ଦ ଷଣରେ ରନ୍ଧ ॥ ୫ ॥

ଅଙ୍ଗ ପଞ୍ଚଶର ପଞ୍ଚାଗ୍ନିରେ କରେ ତପ
ଅଧିକ ଜଡ଼ କେପଥୁଁ ତବ ଭାବ ଆପ ॥ ୬ ॥

ଆଚରଇ ପୁନ ଜଳ ତପ ମହା କ୍ଲେଶେ
ଆଶାରେ ତିନ୍ତ୍ରଣ ଜର ଜର ସେ ଅନଙ୍ଗେ ॥ ୭ ॥

ଅନ୍ୟେ ଧ୍ୟାନ କେବଳ ଉରଜ ସ୍ପୃର ହର
ଆନ କେ ଉଚ୍ଚରେ ନାମ ମନ୍ତ୍ରକୁ ତୋହର ॥ ୮ ॥

ଅଛି ଶ୍ରବଣାଦି ଯେ ସନ୍ଧିରେ ଅଧିକାର
ଅଚ୍ଛନ୍ତ ତବ ବକ୍ଷପୁ କର ଅଙ୍ଗୀକାର ॥ ୯ ॥

ଆଣି କଣଳପ୍ପ ଚଲ୍ପ ରଚିତ କୁଞ୍ଜରେ
ଅସହ ଚାପ ଲେଖନ୍ତି ଅନଳ ପୁଞ୍ଜରେ ॥ ୧୦ ॥

— ଗାଦ୍ୟ —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନୁବନ୍ଧ —

ଅଚ୍ୟୁତରୁ ମାନ ତେଜ କହ ସୁ ଶରଣ
ଅଳି ଠାରେ ଦେଖ ପୁଷ୍ପବଣର ପୀରତ ॥୧।
ଅଦ୍ୟରେ କ ଆତୁରେ ଦେଉଅଛୁ ରତି
ଅବଳାମଣି ହୃଦୟ ନୁହଇ କରତି ॥ ୨ ।

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଅନଙ୍ଗ ମୀନ ଯାନରେ ଆରେଣ୍ଟ ରତି ସଙ୍ଗରେ
ପରାଗ ଚର୍ଚ୍ଚିର ଖେଳ ହଚ ଗୋ
ଅନା ବସନ୍ତ ଛଟିରେ ତରୁବଲ୍ଲୀ ବତତିରେ
କଣଳପ୍ପ ଛଳେ ରାଗ ସଞ୍ଚ ଗୋ । ଘୋଷା ।

ଅଚେତନ ହୋଇ ସେହୁ କୁସୁମ ହାସରେ ଶୋହୁ
କାନ୍ତ ମନ ପ୍ରସନ୍ନେ ଉଲ୍ଲାସେ ଗୋ
ଅରଣ୍ୟ ପ୍ରିୟର କଳ ସଙ୍ଗୀତ ଗୀତ ମଞ୍ଜୁଳ
ପଞ୍ଚମ ସ୍ୱରରେ ପରକାଶେ ଗୋ । ୧ ॥

ଅନଳ ପୁଷ୍ପବଣର ବାସ ହର ଭ୍ରମେ ରେଣୁ
ଯହିଁ ପରବେଶ ଟିହ୍ନା ହୋଇୟେ ଗୋ
ଅବକାଶ ଜାଣି ଭୃଙ୍ଗ ଦକ୍ଷିଣ ନାୟକ ସଙ୍ଗ
ଶ୍ରୀ ଶ୍ୟାମସୁନ୍ଦର ଦେବ ଗାଏ ଗୋ ।୨।

## — ଅଭିସାର ବୋଲି —

ଶ୍ଳୋକଃ—

ଅଭିସାରୟତେ କାନ୍ତଂ ଯା ମନ୍ମଥ ବଶମ୍ବଦା
ସ୍ୱୟଂ ଗର୍ଦ୍ଦିସରତ୍ୟେଷା ଧୀରୈରୁକ୍ତାଽଭିସାରିକା ॥
(ଇତି ସାହିତ୍ୟେ)

ଅଭିସାର ବେଶେ ଅଙ୍ଗେ ଲେପ କସ୍ତୁରିକ
ଅପଦେଶ କରୁ କୁଚ ଅଞ୍ଜନ ଚିଉନ ॥ ୧ ॥

ଅଚ୍ଛି ମାରକତରେ ମାରକତଟେ ଭୂଷା
ଆଦର ମୁଖର ମଞ୍ଜୀରଙ୍କୁ ତେଜ ଯୋଷା ॥୨॥

ଅଧୋକ୍ଷଜ ଭୁଜବତ ମାଗର ମାଳାକୁ
ଅଚଳ କୁଚ ଖେଳାଅ ଆରମ୍ଭି ଲୀଳାକୁ ॥ ୩ ॥

ଶ୍ଳେଷ—

ଅସ୍ତ ଦାନବବନ୍ଧୁ ଦେଖି ହରିତ ଅମ୍ବର
ଆସ୍ୟ ମଳିନ ଶକୁନ୍ତ ଧ୍ୱନି ଆଉ ସ୍ୱର ॥ ୪ ॥

ଅମ୍ବୁରୁହ ନଳରେ ପକାଇ ଝଳଗୁଞ୍ଜ
ଅନଙ୍ଗ ସଂଯତେ ଉଦେ ଜାମ୍ବୁକ ଚାରିଜ ॥ ୫ ॥

ଅତି ଖଳ ଯଥା ପର ବିପତ୍ତିରେ ମୁଦ
ଅବଲୋକ ହାସ ମୁଖ ହେମନ୍ତ କୁମୁଦ ॥ ୬ ॥

ଅନ୍ଧକାର ସମୃଦ୍ଧିରେ ବଶୁରେ ବିହର
ଅଶିର ବିଭବ ଜନ ଲୋଚନକୁ ହର ॥ ୭ ॥

ଅବସ୍ଥିତ କଳା ନେଇ କୌଶିକ ଅକ୍ଷରେ
ଅରିଷ୍ଟ ଲୁଚିଲେ ତରୁକୋଟେ ମନ୍ଦାକ୍ଷରେ ॥ ୮ ॥

ଅମରବେଷ୍ଟେ ତମ କଲ୍ପ କବଳ ଜଗତ
ଅଛି କି ନାହିଁ ସଂଶୟ ସଉଧ ଜଗତ ॥ ୯ ॥

ଅଞ୍ଜନ ଗଜର ବପୁ ବ୍ୟାପିଲା ଧରଣୀ
ଅସିତାମ୍ବର ପିନ୍ଧିଲ କି ବଶୁ ତରୁଣୀ ॥ ୧୦॥

ଅସଂଶୟରେ ଶୃଙ୍ଗାର ମୂର୍ତ୍ତିବନ୍ତ ମଣି
ଅବଲୋକନେ ଆତୁର ରମଣ ରମଣୀ ॥ ୧୧ ॥*

ଆପଗା ଶୀର ସ୍ଥ ବାଟୀ ଦୂଷ୍ଟ ଗୃହ ବନ
ଅଛନ୍ନ ସ୍ଥାନ ପ୍ରାସାଦ ଭଗ୍ନ ପିତୃବନ ॥ ୧୨ ॥

ଅଷ୍ଟ ସ୍ଥାନେ ଶାସ୍ତ୍ର ମତେ ପୁଂଶ୍ଚଳୀ ଯୁବତୀ
ଅଭିସାର କରି ତୋଷ କରନ୍ତି ଉପ-ପତି ॥ ୧୩ ॥

ଅନ୍ୟ ପୁରୁଷ ସଂକେତ ସ୍ଥାନେ କେହୁ ଧୂର୍ତ୍ତ
ଆଗହୁଁ ଆସି ରମିଲ୍ଲ ବାଞ୍ଛିତ ଯୋଷିତ ॥ ୧୪ ॥

ଅନ୍ତ ହୁଅନ୍ତେ ସୁରତ ବଚନ ପ୍ରକଟ
ଅବଳା ଆଶ୍ଚର୍ଯ୍ୟ କେଡ଼େ କୃତ୍ୟ କଲୁ ଶଠ ॥ ୧୫ ॥

ଅଳଙ୍କାର ମୁକ୍ତା କୃତ କୁଳଜା ଭଣ୍ଡାର
ଆନନ ପ୍ରସନ୍ନ ବେଶ୍ୟା ରଣିତ ନୂପୁର ॥ ୧୬ ॥

ଅମରଷ ପୃଷ୍ଟକୁ ପକାଇ ଠାକୁରାଣୀ
ଅଭିସାର ସ୍ୱେ ସମସ୍ୱେ ଶୁଣି ଦୂଷ୍ଟ ବାଣୀ ॥ ୧୭ ॥

— ଗୀତ —

( ଧନାଶ୍ରୀ ରାଗେଣ ଗୀୟତେ )

ଅଭିସାର ବେଶ ତୋର କାମ ତରଙ୍ଗିଣୀ ଧାର
ଉଲଟାରେ ବହୁତାରେ ଆତ୍ରେୟ
ଅତି ଉତକଣ୍ଠା ଜାତ ଆନନ୍ଦେ ସଖୀ ପୁରତ
ଅନୁରାଗେ କୃଷ୍ଣଗୁନ ଗାଉଥି ॥ କର୍ଣ୍ଣରେ ସଜନ ॥ଘୋଷା॥

---

ଶ୍ଳୋକଃ — ଯଦାହ ଭରତାଗ୍ଯ୍ୟଃ—

ଶ୍ୟାମୋ ଭବତି ଶୃଙ୍ଗାରଃ ସିତହ୍ୱାସ ପ୍ରକୀର୍ତ୍ତିତଃ ।
(ଇତି ରସିକସର୍ବସ୍ୱେ) ॥ ପୋଥିପାଠ ॥

ଆସିଲ ଯେ ଅନାଦର କରମେ ବ୍ରଜସୁନ୍ଦର
ମୁଖ କେସେ କରିବ ଆଲୋକ
ଅବଲୋକ କରୁ ଦୂରେ ପାଉଛି ନେମେ ସାଦରେ
ଝୁଠା ମିଠା ବାଣୀ କହୁ ଠେକ । କଣ୍ଠରେ ସଜନ ।୧।

## — ଉତ୍କଣ୍ଠା ବୋଲି —

ଅଙ୍ଗୁଳି ଅଗ୍ରେ ଧରିବେ ପଶ୍ଚ ମୋ ଚିବୁକ
ଅଧୋମୁଖେ ରହୁ ମୁଁ ଯେ ନ କହୁବ ବାକ୍ୟ ।୧।
ଅଙ୍ଗେ ଅଙ୍ଗ ଦୁଗ୍ଧ ଜଳ ସମ ପ୍ରିୟତମ
ଆଚରି ଚୁମ୍ବ ରଚନେ ଜାତ ହେବ ପ୍ରେମ ।୨।।
ଅଦ୍ଭୁତ କାଞ୍ଚୁଲିରେ ସୁତୀକ୍ଷ୍ଣ କରଜ
ଅର୍ଦ୍ଧବିଧୁ ସୁମେରୁରେ ରାଜିବ ଉରଜ ।।୩।।
ଅଙ୍କେ ଆରୋହାଇ ନୀବୀ କରନ୍ତେ ମୋକ୍ଷଣ
ଅପସରି ପିବ ମାନ ମନୁ ସେହିକ୍ଷଣ ।।୪।।
ଆମନ୍ତ୍ରନ କରବାରେ କୋକନଦ କର
ଅରୁଣ କୁସୁମ ଗନ୍ଧ ପରି ଶୋଭାକର ।।୫।।
ଅନଙ୍ଗ ପ୍ରମତ୍ତ ହେବେ ଓଷ୍ଠ ମଧୁ ପିଇ
ଅବଶେଷେ ରଦ ଚିହ୍ନ ମୁଦ୍ରା ଥିବେ ଦେଇ ।୬।
ଆସୁତେ ରଖିବେ ହରି ଭୁଜ ବନ୍ଧନରେ
ଆସି ନ ପାରିବ ଥିବ ହରିଣୀ ଛନ୍ଦରେ ।।୭।
ଆସ୍ୱାଦେ ଚକୋରୀ ଯଥା ଅମୃତ ମୟୂଖ
ଅନୁଭବ ସୁଖ ହେବ ଚୁମ୍ବି କାନ୍ତ ମୁଖ ।।୮।।
ଆରବ କରନ୍ତେ କଟୀ କେଶରୀ କିଙ୍କିଣୀ
ଅନଙ୍ଗ ମାତଙ୍ଗ ପଳାଇବ ତାହା ଶୁଣି ।।୯।।
ଆଳାପ ଉତ୍କଣ୍ଠା କହୁ କୁଞ୍ଜ ଗୃହେ ମିଳେ
ଅନ୍ୱେଷଣା ହରି କହିବାରେ ଦୁଃଖ ଚଳେ ।୧୦।

## — ଗୀତ —

(ଧନାଶ୍ରୀ ରାଗେଣ ଗୀୟତେ)

ଅବଳା ମଣି କାନନ କୁଞ୍ଜବାସେ ପ୍ରବେଶ
ଆକଳ୍ପ କଳ୍ପନା କାନ୍ତ କୃତେ ଚିତ୍ତ ଆବେଶ ।ଘୋଷା।
ଅରଣ୍ୟ ପ୍ରିୟସ୍ୱର କଳ ମଧୁପର ଝଂକାର
ଅଧିକରେ ବାଧୁଅଛି ମଦନର ବିକାର ।। ୧ ।।

## — ବାସକସଜ୍ଜା ବୋଲି —

ଆଣି ଗଲି କୃଷ୍ଣଙ୍କୁ ସଂକେତ ସ୍ଥାନେ ଦୂତୀ
ଅଙ୍ଗନା ବାସକ ସଜ୍ଜା କୁଞ୍ଜଗୃହେ ସ୍ଥିତି ।। ୧ ।।
ଅନଳ୍ପ ସୁବାସ ପୁଷ୍ପ ତଳ୍ପ ବିରଚିତ
ଅବିରତ ତରଳାଇ କାମ ବୀର ଚିତ୍ତ ।। ୨ ।।
ଅତି ମୁକ୍ତ କୁରବକ କୁସୁମ ନାଗେଶ୍ୱର
ଆଣି ମାଳା ରଚେ ମଣ୍ଡନକୁ ଜୀବେଶ୍ୱର ।। ୩ ।।
ଅମୃତକର ଶ୍ରୀଖଣ୍ଡ ପଙ୍କେ କରି ସଙ୍ଗୀ
ଅତି ପଳିତ ଲଳିତ ନାଗବଲ୍ଲୀ ଭଙ୍ଗି ।। ୪ ।।
ଅମଣ୍ଡନେ ଥିଲେ ଯେ ରମଣୀ ମନୋରମା
ଆକଳ୍ପ ସଂକଳ୍ପରେ ସହଜେ ଅନୋପମା ।। ୫ ।।
ଅରୁଣ ପଳାଶ ପୁଷ୍ପ ବିକାଶ କଳିକା
ଆଳସ୍ୟ ମାଣିକ୍ୟରେ କି ମୁକ୍ତା ମାଳିକା ।। ୬ ।।
ଅଧିକରେ ମକରନ୍ଦ ପନୀର ପତନ
ଅଳି କଳ କୋକିଳ ଚେତାଇ ପୁନଃ ପୁନ ।। ୭ ।।
ଅନିଳ ସୁଗନ୍ଧ ମନ୍ଦ ଯମୁନା ପ୍ରାନ୍ତରେ
ଅଟେ ଦୃତ ଉଦ୍ରାହ ଅନଳ ବିତତରେ ।। ୮ ।।

ଅନ୍ଧକାରକୁ ମାଧବ ରୂପ ପ୍ରାପ୍ତେ ମଣି
ଆଲିଙ୍ଗନ ଭୂଜ ଟେକି କରଇ ରମଣୀ ॥ ୯ ॥

ଅଧରକୁ ଗୋଜ କରି କରେ ଚୁମ୍ବ ଦାନ
ଅନ୍ତରେ ବାହାରେ କୃଷ୍ଣ ମୁଖଚନ୍ଦ୍ର ନିଦାନ ॥୧୦॥

ଅନ୍ୟ କଣ୍ଠ ନାଦ ଶୁଣି ହରଷକୁ ପ୍ରାପ୍ତେ
ଅଚ୍ୟୁତ ଆଗତ ପଦନ୍ୟାସ ଧ୍ୱନି ଘାପ୍ତେ ॥୧୧॥

ଆଳିରେ ପଲ୍ଲବେ ତାର ଦେଖ କେତେ ଜଣ
ଅନାଗତ ଦୃଷ୍ଟି ଜାଣି ବିରସ ମନୀଷା ॥ ୧୨ ॥

ଅଧିକେ ଦମ ଭେଜଇ କରେ ବିସ୍ମରଣା
ଅନ୍ତେ ମମ ପୀରତି ନୋହିଲ ସୁମରଣା ॥ ୧୩ ॥

ଅନ୍ଧକାର ବନେ ପନ୍ଥ ନ ପାଇ ଭ୍ରମନ୍ତି
ଅଥବା ବଧୂସୀ ମେଳେ କୁଞ୍ଜକେ ରମନ୍ତି ॥୧୪॥

ଅମ୍ବୁ ଛିଦ୍ର ଘଟ ପରି ରଜନୀ ବିରାମ
ଆଜ ବିଫଳ ହୋଉଛି ପ୍ରେ ସୁବେଶ ରାମ ॥୧୫॥

— ଗାହା —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନବଦ୍ଧ —

ଅଚ୍ୟୁତ ଗଲେ ଶଙ୍ଖଚୂଡ଼ଂ ମାତ୍ର ନ ଦେଖି ଦୁଃଖିତ ଦୃଷ୍ଟି
ଅଚଳୁ ନଗରେ କର ଧରି ମୁଁ ମେଲିଲି ବରି ସୃଷ୍ଟି ।
ଅଭ୍ର ପଟଳ ପରି ଶଠ ବାଣୀ ସ୍ୱପନେ ନ ଥିଲି ଜାଣି
ଅଦ୍ଭୁତ ଗୋବିନ୍ଦ ଲଜ୍ଜିଲ ଶୁଣିକ ଦେବ ମୀନ ଲକ୍ଷଣୀ ॥୧॥

— ଗୀତ —

( କେଦାର ରାଗେଣ ଗୀୟତେ )

ଆସେ ଦୁଷ୍ଟ ଦ୍ୱେଷାକାନ୍ତ ନିରସ ଲପନେ
ଅବନେକ ରାଧା ବାଧା କହଇ କୋପନେ ।

---

୧ । (ଗ) ଶଙ୍ଖଚୂଡ଼

ଅକରୁଣ  ଶଠ ହୃଦ ନୁହଇ କଳିତ
ଅନାଗତ ଦୃଷ୍ଟ ପଦ୍ମ କମ୍ପା ବ୍ୟାକୁଳିତ ।। ଘୋଷା ।
ଅଳି ସଙ୍ଗୀ ବାମଙ୍ଗୀ ନରମେ ଚମ୍ପକଂରେ
ଅସ୍ଥିର ଯେ ଚିନ୍ମେ ଆନ ସୁମନ ପ୍ରକରେ ।। ୧ ।।

## — ବିପ୍ରଲବ୍ଧା ବୋଲି —

ଅଶ୍ରୁ ବାରି ଧାରେ କରେ ଉରଜ ମାଜଣା
ଅଚ୍ୟୁତ ନ ଥିବା ଦୃଷ୍ଟି ବିକମ୍ପରୁ ଜଣା ।। ୧ ।।

ଆଶା ତରି ଭଗ୍ନ ରସ ଜଳଧି ମଧ୍ୟରେ
ଅବଲମ୍ବ ଧ୍ୟାନେ କୃଷ୍ଣ ଗୃହ୍ଣ ରୂପ ଧରେ ।। ୨ ।।

ଅକର୍ଣ୍ଣଧାର ବିଷୟୁ କେ ଦେବ ଶରଣ
ଆବେଷ୍ଟ ଉପୁଦ ମୀନ ତର୍ଜିଁ ରଣ ରଣ ।। ୩ ।।

ଅପରାଧ ବିନା ମମ ବଧରେ ପ୍ରବର୍ତ୍ତି
ଆନନ୍ଦରେ ରମୁଥିବେ ବରଜ ଯୁବତି ।। ୪ ।।

ଅଶେଷରେ ହୃଦେ ପୂରି ସେ ସୁରତି ଭାବ
ଅବକାଶ ନାହିଁ ମୋ ବିଷୟୁ ଚିନ୍ତିଁ ଲବ ।। ୫ ।।

ଆଲମ୍ବିତ ଧୂମ୍ରା ବେଣୀ ନଗ୍ନଇବ ସେନ୍ଦ୍ରି
ଅନଙ୍ଗ ଅସ୍ତ୍ର ଖେଳିଲା ପରି ହେମ ମହୀ ।। ୬ ।।

ଆନ୍ଦୋଳନ କଟି ଚଳୁଥିବ ସେ ଜଘନ
ଆଧୂତ ପବନେ ହେମ ରମ୍ଭାର ଶୋଭନ ।। ୭ ।।

ଅଧିକ ସ୍ୱେଦ ବିନ୍ଦୁରେ ଶିଶିର ମୟୂଖ
ଆବେଷ୍ଟିତ ହିମ କଣ ପରି ରୁଚି ମୁଖ ।। ୮ ।।

ଆନ୍ଦୋଳିତ ତାଟଙ୍କରେ ମାଜି ହୋଇ ଗଣ୍ଡ
ଅଦରଣ ଝଳ ଖଣ୍ଡେ ଦେଉଥିବ ଦଣ୍ଡ ।। ୯ ।।

ଅତନୁ ଆରାମ ପରି ସେ ସୁରତ କୁଞ୍ଜ
ଅନେକ ବିଧ ସ୍ଫୁରିବ ପକ୍ଷୀଧ୍ୱନି ପୁଞ୍ଜ ।। ୧୦ ।।

ଅଧର ମଧୁର ଆସବରେ ହୋଇ ମତ୍ତ
ଅପହୃତ ଜ୍ଞାନ କରିଥିବେ ସେ ସମସ୍ତ ॥ ୧୧ ॥

ଅତ୍ୟନ୍ତ ବକ୍ଷରେ ଚଳୁଥିବ ମୋତି ହାର
ଅର୍କଜା ସ୍ରୋତରେ କରେ ହଂସାଳି ବିହାର ॥ ୧୨ ॥

ଆକାଶରେ ଯେ ସମୟେ ଉଦେ ହରିଣାଙ୍କ
ଆଖଣ୍ଡଳ ଦନ୍ତୀକରେ ଟେକେ ପୁଷ୍କରାକ ॥ ୧୩ ॥

ଅଙ୍ଗ ବ୍ୟାଜେ ଲଗିଅଛି ପୁଷ୍କରରୁ ପଙ୍କ
ଅବଲୋକ ବିରହିଣୀ ରାଧିକା ଆତଙ୍କ ॥ ୧୪ ॥

ଶ୍ଳେଷ—

ଆରେ ମନ୍ଦାନିଳ ସେନ ଯେ ଶୁଚି ମୂର୍ତ୍ତିକ
ଅଙ୍ଗକୁ ମୋ ଦହୁ କେତେ ଲଭିବୁ କୀର୍ତ୍ତିକ ॥ ୧୫ ॥

ଅନୁଜା ସମର ଲୋଡ଼ୁ ମୋ ଜୀବନ ହର
ଅଗାଧ ବୁଦ୍ଧି ବିଶେଷ ମନୋରଥ କର ॥ ୧୬ ॥

ଆଗତ ଯେ ମଧୁ କର୍ମା ନୋହିବ ନିର୍ଦ୍ଦୟ
ଅଶନ କରିବ ମୋତେ ଯେଣୁ ତା ଉଦୟ ॥ ୧୭ ॥

ଆଭରଣ ହାର ଅଗ୍ନି କିଶଳୟ ତଳ୍ପ
ଅଚ୍ୟୁତ ବିନା କ୍ଷଣଦା କ୍ଷଣ ହୋଏ କଳ୍ପ ॥ ୧୮ ॥

— ଗୀତ —

(କେଦାର ସ୍ୱରେଣ ଗୀୟତେ)

ଅନୁବନ୍ଧ—

ଆସିଥିବେ ରାଧା ସଙ୍କେତ କୁଞ୍ଜେ ଚିନ୍ତି ହରି ଆଭୂଷିତ
ଅଳସରେ ଗୋପ ସଭାରୁ ଉଠି ଅଭିସାର ସେ ତ୍ୱରିତ ॥ ୧ ॥

— ଗୀତ —

( ଧନାଶ୍ରୀ ରାଗରେ ଗୀୟତେ )

ଆସି କୁଞ୍ଜେ ପ୍ରିୟା ତନୁ ସୁରଭି ନ ଲଭ
ଅନାଗତ କ କାରଣେ ମୋ ପ୍ରାଣ ବଲ୍ଲଭ ।। ଘୋଷା ।।

ଆଶାୟୀ ଗୃତକ ମତ୍ତ ଯଥା ଘନ ରସେ
ଆଗତ ପଥରେ ଦୃଷ୍ଟି ତଥା ମନ ରସେ ।। ୧ ।।

— ଖଣ୍ଡିତା ବୋଲି —

ଅପହତ ମାନ ନୋହେ କି ଦୂତୀ ବଚନେ
ଅନଳ ନ ଲିଭେ ଜଳ କୁଶାଗ୍ର ସେଚନେ ।। ୧ ।।

ଅଶନି ଘାତେ ଅଖାତ ଚୃତକୀ ଯେମନ୍ତ
ଅଧିକରେ ମମ ପ୍ରୀତି ନଳସୀ ତେମନ୍ତ ।। ୨ ।।

ଅସିତ ବାସ ପଣନ୍ତ ପ୍ରିୟାରି ସ୍ୱେ ମଣି
ଅନ୍ଧକାରକୁ ଆତୁରେ ନିବେଶନ୍ତ ପାଣି ।। ୩ ।।

ଆଳି ଚନ୍ଦ୍ରାବଳୀ ରଜେ ଥିଲେ ଅନୁସରି
ଅଭିସାରି ଅଚ୍ୟୁତର ସ୍ୱେ କାଛେ ପ୍ରସରି ।। ୪ ।।

ଅତି ବେଗେ ଯାଇଁ ନିଜ ସଖୀରେ ଜଣାଇ
ଅଛନ୍ତି ମାଧବ ତବ ଗମନ ଅନାଇଁ ।। ୫ ।।

ଆତୁର ଶୁଣି ସେ ହୋଇ ଅଭିସାରୀ ବେଶ
ଅଳଙ୍କାର ବିଭ୍ରମରେ ଭେଟିଲେ ଗାବେଶ ।। ୬ ।।

ଅନ୍ଧକାର ସ୍ୱେକେ ଦ୍ୱିଷ୍ଟିପୁରେ କାମ ତମ
ଅନୁଭବୀ ସୁ ରସିକେ କର ତାରତମ ।। ୭ ।।

ଆଲିଙ୍ଗନ କଲେ ଦେଖି ଅଚ୍ୟୁତ ସଂଭ୍ରମେ
ଅଶ୍ଲିଷ୍ଟ ଉଭୟୁ ଜୟୁ ମଦନ ସଂଗ୍ରାମେ ।। ୮ ।।

ଅଙ୍ଗୁ ସଙ୍ଗୁ ଜଣା ନୋହେ ଅସିତ ବସନା
ଆସ୍ୱାଦି ଶର୍କରା ସ୍ୱାଦୁ ଯେମନ୍ତେ ରସନା ।। ୯ ।।

ଅନ୍ତରେ ଜାତ ବସ୍ତୁସ୍ଥ କଲ୍ଲ କେତେ କର୍ମ
ଆରକୂଟ ଭ୍ରମରେ ଚେଜଲ୍ଲ ଶୁଦ୍ଧ ହେମ ॥ ୧୦ ॥

ଆଳପୂଲୁ ଚନ୍ଦ୍ର,ବଳୀ ପେଟେଣ ଲେଉଟି
ଅନ୍ୱେଷଣା କରି ବ.ସ ସଜ୍ଜା ରାଧା ଭେଟି ॥ ୧୧ ॥

ଆଳ ଦେଖି ଜାଗ୍ରତ କରାନ୍ତେ ଉଠି ବସି
ଅଞ୍ଜଳ ବନ୍ଧରେ ହରି ସ୍ଥଳକତରେ ଭାଷି ॥ ୧୨ ॥

ଅଙ୍ଗନା ଗୁମ୍ଫୁକୁ କରି ଦୁଷ୍ଟାକ ପ୍ରେଷଣ
ଆଟମ୍ଭ ଗଲୁ ଶୁଣି କୋପ କୁମାରୀ କଷଣ ॥ ୧୩ ॥

ଅନ୍ତକ ନବାସେ ଶଙ୍ଖଚୂଡ଼କୁ ପ୍ରେଷିତ
ଆସୁ ଆସୁ ପୂରେ ହେଲ୍ଲ ନଶା ବିଶେଷିତ ॥ ୧୪ ॥

ଆଖିର ସଖିରୁ ମତ୍ତ ଚଞ୍ଚଳରେ ଆସି
ଆଗତ ପଥରେ ଦୃଷ୍ଟି ଦେଇ କୁଞ୍ଜେ ବସି ॥ ୧୫ ॥

ଅତି ବିଳମ୍ବ ହେବାରୁଁ ପ୍ରଳମ୍ବ କୁନ୍ତଳେ
ଅନ୍ୱେଷଣା କରି ଭେଟି ବାସ ସଜ୍ଜା ତଳେ ॥ ୧୬ ॥

ଅଛି କ ମୋ ଦୋଷ ଦ୍ରବ୍ୟ ଚିତ୍ତରେ ବିଗୁର
ଅନଙ୍ଗ ବ୍ୟାଧି କରବ ରସ ଉପଚାର ॥ ୧୭ ॥

ଅବଳାମଣି ନ ଶୁଣି ଦେଖାଇ ଚରମ
ଆଦରଣ ଇନ୍ଦୁଲେଖା ସେବେ ମନୋରମ ॥ ୧୮ ॥

ଅଚ୍ୟୁତର ରତି ଚିହ୍ନ ରୂପ ଆଦରଶେ
ଅଲୌକ ଉପମା ଗିର କୃତ ଆଦରଶେ ॥ ୧୯ ॥

ଅମୃତ ନ କହ ନେତ୍ର ଚିହ୍ନ ସ୍ୱେଦ୍ଧ ଗାଗ
ଆମ୍ରରେ ବିରାଗ ପ୍ରିୟ ରାମାରେ ସରାଗ ॥ ୨୦ ॥

ଆମଯୁ ତା ନେତ୍ର କଷାୟନେ ହରି ରସେ
ଆଧି ମାଉ ବ୍ୟାଧି ମମ ବଢ଼ାଅ ସରସେ ॥ ୨୧ ॥

ଅଞ୍ଜନରେ ରଦନ ବସନ ତନୁ ସାମ୍ୟ
ଅରୁଣ ରତ୍ନରେ ଇନ୍ଦ୍ରନୀଳ ମୀନା ରମ୍ୟ ॥ ୨୨ ॥

ଅଲକ୍ତ ରଙ୍ଗରେ ବ୍ୟକ୍ତ ହୃଦସ୍ଥଳ ଘାତି
ଉର୍ଜ୍ଜା ଉଦରେ ସ୍ଫୁଟ କୋକନଦ ଭ୍ରାନ୍ତି ।୨୩।।

ଅଙ୍କିତ ଭ୍ରମର ପଦ୍ମ କେ ଶର ନକାସୁ
ଅତି ସୁଷମ କୁଙ୍କୁମ ଯୋଗେ ତଥା କାସୁ ।।୨୪।।

ଅସିତ ନଭେ ଉଦୟ ମିତ୍ର ପରି ବକ୍ଷେ
ଅରୁଣ ସିନ୍ଦୂର ବିନ୍ଦୁ ରଞ୍ଜିଛି ସ୍ଥିତକ୍ଷେ ।।୨୫।।

ଆଖଣ୍ଡଳ ମାଳରେ ସୁନାସା ଦଣ୍ଡ ଗାର
ଅଟେ ରତି ଜସ୍ତ୍ର ଲେଖ ପ୍ରେ ଶୋଭା ଆଗାର ।୨୬।

ଅଙ୍ଗଦ ଚିହ୍ନେ ମର୍କତ ବପୁ ସୂଚକମ
ଅସ୍ତବ୍ୟସ୍ତ ଗୁଚ୍ଛ ଚୂଳ ଗଳିତ କୁସୁମ ।।୨୭।

ଅଚ୍ଛି ତାର ସେ କାମ ଦୁସ୍ତର ତରଙ୍ଗିଣୀ
ଆଶ୍ରେୟ କରନ୍ତା କୋକ ସେ ରସ ରଙ୍ଗିଣୀ ।୨୮।

ଅଧୋମୁଖେ ରହି କୁଚ ଗୁମ୍ଫେ ସେ ମଣ୍ଡିଳା
ଅସ୍ତାଚଳେ ବିଧୁ ପଣେ ପ୍ରେ ଶୋଭା ବହିଲା ।୨୯।

ଅଶ୍ରୁ ନେତ୍ର ପଦ୍ମନନ୍ଦ ଅଚ୍ଛିଦ୍ରେ ବହିଲା
ଅବମା ବନିତା ନଖ ଲେଖାରେ ଶୋହିଲା ।।୩୦।

ଆମ୍ରେଶ୍ୱର ବଶକୁ ମନ୍ତ୍ରଣା କରି ମତି
ଆତରେ ବେଦନ ମନ୍ତ୍ର ବିଧାନ ବିତତି ।।୩୧।। *

ଅବାଣୀ ପ୍ରାବୃଟ ପିକ ପରି ବୃନ୍ଦା ଆଦି
ଅଗାରକୁ ଗଲେ ମାନ ସମ୍ପଦ ସମ୍ପାଦି ।।୩୨।।

ଆନନ୍ଦ ହୃଦରେ ଚନ୍ଦ୍ରାବଳୀ ଆଳିବର୍ଗ
ଅବିରତ ଖେଳ ଜାବଟେ ପରବେଶ ବେଗ ।୩୩।

ଉଷେ କଷାୟିତ ଦଳ ମୁକୁଳ ସାରସ
ଆଜ ବୋଲେ ଉନଦୃଷ୍ଟେଁ ଘୂର୍ଣ୍ଣିତ ସରସ ।।୩୪।

---

* ଅନ୍ତଂ ତ—
ରୁଦତଂ ମୁଦତଂ ମନ୍ତଂ ଯୋଷିତାମୁଶ୍ରଷ୍ଟ୍ୟାନ୍ତ ମାଘେ ।।ପୋଥିପାଠ।।

ଅନଙ୍ଗ କେଳିରେ ଚନ୍ଦ୍ରାବଳୀ ସଙ୍ଗେ ହରି
ଆସକ୍ତ ବଚସ ବିଭ୍ରମରେ ନଣା ହରି ।।୩୫।।

ଆସ୍ତୁଁ ଅନୁଗତ ବୃଷ ଷର ସୁରଭିରେ
ଆମ୍ଭେ ନଦେଖିଲୁ ପ୍ରୀତ ଗୃହ୍ବଁ ଲୋକଷ୍ଠ ରେ ।୩୬।

ଅଙ୍ଗୀକାର ଘନା ସଖୀ ଦେଖାଇ ଉନ୍ନତ
ଅଳକା କପୋଳୁଁ ଜାଣିଥିବ କୃଷ୍ଣ ନଖ ।।୩୭।

ଅଳଙ୍କାର ମନ୍ଦ ଖ୍ୟାତ କରି ସେ ସସ୍ମିତ
ଆଳସ୍ୟକୁ ଗତ ଶୁଣି ରାଧିକା ବିସ୍ମିତ ।।୩୮।।

ଅଦ୍ଭୁତ ଦୂତ ସେ ମାନ ଅଗ୍ନି ପ୍ରଜ୍ୱଳିତ
ଆଳଙ୍କି ବୋଲନ୍ତି ହୃଦ କୃଷ୍ଣର କଳିତ ।।୩୯।।

ଆଜ ବାରେ କେହୁ ନ କହିବ ସେ ଚରିତ
ଆନ ଦେଖ ମନ୍ତ୍ରେ ରାମା ବିରସ ମରିତ ।।୪୦।

ଅର୍କ ତିଥି ସ୍ନେ ଶ୍ୟାମସୁନ୍ଦର ଦେବ ଭାଷ
ଅଷ୍ଟ ଚତ୍ୱାରିଂଶ ଶତାଧିକ ପଦେ ଶେଷ ।।୪୧।।

## — ତୃତୀୟ କୁସୁମ —

### ।। ଦ୍ୱିତୀୟ ବସ୍ତ୍ରଗ ବୋଲି ।।

— ଗାଥା —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନବଦ୍ଧ—

ଅଚ୍ୟୁତ ରାଧିକା ବିରହେ ଦୁଃଖୀ
ଆସି ଗୋଷ୍ଠେ ନର୍ମ ସଖାଙ୍କୁ ଦେଖି ।
ଅଧୀରେ ଉତ୍ସୃଷ୍ଟ ପ୍ରସ୍ତାବ କଲ୍ପି
ଆଭୂଷ ନୁହିଁ ବୋଧ କଲେକ ସେହ୍ନି ।୧।।

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଆଖେଳସ୍ଥଳୁ ଆଗତ      ମାତା କ୍ଷୀର ସ୍ରବତ
ଦୁଃଖୀ କୃଷ୍ଣ କ୍ଷୀଣ ରୂପ ଗ୍ରହି
ଅଚ୍ଛିତ ହେଲ ଅଶନ     ନାହିଁ ମୁଖେ ପରସନ
ମାନସରେ ଖିଡ଼େ ହଂସୀ ସହି ।୧।

## — ମାନ ଭଙ୍ଗ ବୋଲି —

(ଗୋବନ୍ଦଚନ୍ଦ୍ର ବୋଲ ବାଣୀରେ)

ଆଣି ଗାବ ସଖା ମେଳେ ପୁନ ଯମୁନା ପ୍ରାନ୍ତରେ
ଅଙ୍ଗ କାମାଗ୍ନିକ ଜାଳେ ଧୀର ବାତ ବହନ୍ତରେ ।୧।

---

୧ । (କ) ଆତଶ

ଅଳଙ୍କାର ମାନ୍ତଶାସ୍ତ୍ର ସଖା ମେଳରେ ବିସ୍ତର
ଅଛୁ ଭେଦ କିମ୍ବା ସାମ ଦାନ ଉପାୟ ଚତ୍ୱାର ॥ ୨ ॥

ଆଳମାନଙ୍କୁ କରଣ ପ୍ରୀତି ସମ୍ପାଦିବା ଭେଦ
ଆଭରଣ ବ୍ୟାଜେ ଦାନ ସାମ ଛଳେ ନତି ପାଦ ॥ ୩ ॥

ଅହେତୁକ ସହେତୁକ ମାନ ଦ୍ୱିବିଧ ବିଧିରେ
ଅହେତୁକ ସ୍ୱୟମେବ ସାମ୍ୟ ଭଜେ ଖ୍ୟାତ ଧୀରେ ॥ ୪ ॥*

ଅଟେ ପ୍ରେ ଈର୍ଷ୍ୟା ମାନ ବୃଦ୍ଧି ଜାଣିମା ବିଷୟ
ଆସି ଦୂତୀକ ପତ୍ରୁ ସେ କହିଲ ଅତିଶୟ ॥ ୫ ॥

ଅଭିମାନେ ରାଧା ଗେହେ ବାଧା ଲଭିଲେ ସରସ
ଅବନେକ ଥିଲେ କାନ୍ତ ମୁଖ ସାରସ ନିରସ ॥ ୬ ॥

ଅନୁଭବ ଦୈବ ନିଦା ଭୂମି ଶୟନ ସ୍ୱେଦନ
ଅଙ୍ଗ ବୈବର୍ଣ୍ଣ ସ୍ତମ୍ଭ ଉଶ୍ୱାସ ନିଶ୍ୱାସ ଜନନ ॥ ୭ ॥

ଅପସ୍ମାର ମୋହ ବ୍ୟାଧି ଗ୍ଲାନି ତାପ ନିର୍ବେଦତା
ଅଧି ଦ୍ୟୁତି ଶ୍ରମ ବିଷାଦ ଉନ୍ମାଦ ଜଡ଼ ଚିନ୍ତା ॥ ୮ ॥

ଆଖ୍ୟା ବିପ୍ରଲମ୍ଭ ଶୃଙ୍ଗାର ଯେ ଶୋକ ସମାନ୍ତୁରେ
ଅନ୍ତେ ରତି ପ୍ରାପ୍ତି ପୁନଃ ମନ୍ତି ସମ୍ଭୋଗ ହେତୁରେ ॥ ୯ ॥

ଅସ୍ତୁ ସଜଣିକ ଜଗି କହି ନିଜ ଅଭିମତ
ଅବକାଶ ଦେଖି କରାଅ ମୋ ବିଷୟ ସମ୍ମତ ॥ ୧୦ ॥

ଆଦ୍ୟ ସଖୀ ବୋଲେ କୃତ ମଧ୍ୟ ଅରି ଅମରଷ
ଅଛି ଅନ୍ତଦ୍ୱାରେ ହୃଦେ ନ ସମ୍ଭାଇ ବାଣୀ ଲେଶ ॥ ୧୧ ॥

ଅକ୍ଷି ନ ଦେଖଇ ଯେତେ ମାଳ ବର୍ଣ୍ଣରେ ସୁଷମ
ଅଜ ତାମ୍ବୁଳରୁ ଝିଦାର ତେଜିଲ୍ ଜାଣି ଶ୍ୟାମ ॥ ୧୨ ॥

---

ହତ୍ତ° ତ —

* ପତ୍ୟୁରନ୍ୟ ପ୍ରିୟା ସଙ୍ଗେ ଦୃଷ୍ଟେଽଥାନୁମିତେ ଶ୍ରୁତେ ।
ଈର୍ଷ୍ୟାମାନୋ ଭବେତ୍ସ୍ତ୍ରୀଣାଂ ତତ୍ର ତ୍ୱନୁମିତି ସ୍ତ୍ରିଧେତି ସାହିତ୍ୟ ରତ୍ନାକରେ ॥
॥ ପୋଥିପାଠ ॥

ଆଳି ବିଶାଖା କହେ କସ୍ତୂରୀ ଦେଖିଲେ ବିମୁଖ
ଅବଲୋକ ନୀଳାମ୍ବର ଚିହ୍ନା ବୋଲେ ଅଧୋମୁଖ ।୧୩।।

ଅତି ଦୂର ଶ୍ୟାମ ଭ୍ରମର କହେ ଚମ୍ପକ ଲତା
ଆଳି ଇନ୍ଦୁଲେଖା ବୋଲେ ନିଜ ରୂପ ମଞ୍ଜୁଲତା ।। ୧୪ ।

ଆଦରଣେ ନ ଦେଖଇ ତବ ରୂପ ଜାତ ମନେ
ଆପେ ତୁଙ୍ଗବିଦ୍ୟା ବୋଲେ ପରିବାଦିନୀ ବାଦନେ ।୧୫।

ଆଳାପରେ କୃଷ୍ଣ ଘନ କାନ୍ତି କରନ୍ତେ ରୂପକ
ଆଣି ପାଣି କଣ୍ଠେ ଦେଇ ଚାପ ନିକଟରେ ବ୍ୟାପକ ।୧୬।।

ଆଜ ରଙ୍ଗଦେବୀ ବୋଲେ ତବ ନାମ ଧରୁ
ଏତ ବିମୁଖ ଜାଣି ଆସିଲୁ ପ୍ରେମ ଅପରାଧରୁ ।।୧୭।।

ଅମ୍ବୁ ଜମ୍ବୁନଦ ଝରିରେ କାଳିନ୍ଦୀ ନୀର ସେବ
ଆଚମନ ଗୁଡ଼ବ ମନ ସେ କହିଲେ ସୁ ଦେବୀ ।। ୧୮ ।।

ଆଶା ଭଙ୍ଗ କରି ଅଭିସାରି ରତି ଲାଳସୀର
ଆସ ରତି ଚିହ୍ନ ଧରି ହେ ରସିକ ସୁନାସିର ।। ୧୯ ।।

ଅଟେ ପ୍ରାଣ ସମା ସଙ୍ଗୀ ରାମା ସେକ ପାରେ ସହି
ଅନ୍ଧକାରେ କୃଷ୍ଣ ବୋଲେ ସବନ୍ଧଣେ ସେହି ସହି ।୨୦ ।

ଅମ୍ଭୋଜନୀ ଭ୍ରମେ ଅଳି କୋକନଦେ ନନ୍ଦ ରତି
ଅପରାଧ କ୍ଷମା କରଅ ନୋହିଲେ ନବ ରତି ।। ୨୧ ।

ଅଷ୍ଟ ସଖୀ ବୋଲେ ଅଦୃଷ୍ଟ କରିଚା ଦଇବ
ଆମ୍ଭେ ଉଦ୍ୟମ କାରଣି କର୍ମେ ଥିବ ଯା ହୋଇବ ।୨୨।
ଅନ୍ତ ଶେଷରେ ସକଳେ ଠାକୁରାଣୀ ପାଦୁକରେ
ଅର୍ପିପଦ୍ମ ଅମୂଦ୍ରିତ ଚଣ୍ଡ୍ର ଚାପ ପଞ୍ଚଷରେ ।୨୩ ।
ଅନ୍ତିକରେ ସର୍ବ କାବ୍ୟ ଛନ୍ଦ କଥା ପଦ୍ଧତିରେ
ଅତି ସୁଖ ପରକୀୟା ଭୋଗ ଶୃଙ୍ଗାର ରସରେ ।। ୨୪ ।।
ଅମ୍ଭୋଜନୀ ପରକୀୟା ଲଙ୍ଘୀ ତ ବଧୂକରେ
ଅଧିକରେ ସୁଖ ରସେ ନେହ ମୂଦ୍ରିତକୁ କରେ । ୨୫ ।
ଅବାରିତ ବାତନ୍ତି ରବାକ୍ଷାନଳ ସୁଖ ଶୀତ
ଆଶା ଅବଲମ୍ବ କରିଥିବେ ପୁରୁଷ ପୋହିତ ।। ୨୬ ।।

ଅନଙ୍ଗରେ ଉତ୍କଣ୍ଠା ତା ହୋଇଥିବେ ଦରଶନେ
ଅଭିସାର ଚୁମ୍ବ ଆଲିଙ୍ଗନ ମୁଖ ମରସନେ ॥ ୨୭ ॥

ଅବ ମଦନ ଥାଉଁ କେ କାନ୍ତା ମାନିନୀ କାନ୍ତରେ
ଅନିଳ ଶୀତଳ ମନ୍ଦ ପିକ ଡାକ ପ୍ରେକାନ୍ତରେ ॥ ୨୮ ॥

ଅପହ୍ନୁତ ନିଜ ଦୋଷୀ କରେ ସ୍ୱେ ତନ୍ତ୍ରୁ ନୃପତି
ଅନ୍ୟ ଅର୍ଥେ ଅଭିସାର ଅନ୍ଧ ନିଶିରେ ଦମ୍ପତି ॥ ୨୯ ॥

ଆସି ଭ୍ରମେ ମିଳେ କାମକ୍ରୋଳେ ଆରମ୍ଭିଲେ ରତି
ଆଳାପେ ଜଣା ସାହାସ ରତି ଗୋପନା ଭାରତୀ ॥ ୩୦ ॥

ଆଗତ ମୁଁ ହୋଇଥିଲି ତବ ସାତ ଜାଣି ଯାରେ
ଅନ ନାସା ନ ସ୍ଫୁରଣ ପଦ୍ମ ବଶ ହୋଇ ମାରେ ॥ ୩୧ ॥

ଆସେ ନିଜ ରସ ମୁଖ ମିଶି ପ୍ରବୃତ୍ତ ବଞ୍ଛିଥି
ଆଦ୍ୟ ସଖୀ ବୋଲେ ଯଥା ଚନ୍ଦ୍ରାବଳୀ କୃଷ୍ଣ ଲଭି ॥ ୩୨ ॥

ଅଳଙ୍କାର କାବ୍ୟ ନାଟ୍ୟ ସ୍ତୁତି ସୁଧାକର କର
ଅପହ୍ନୁତ ଶ୍ରୀ ରାଧିକା ମାନ ତ ମିଶ୍ର ପ୍ରକର ॥ ୩୩ ॥

ଆଳି ଭୁଙ୍ଗବନ୍ଦ୍ୟା କନ୍ଦ ତ ଭାବମୟୀର କଥା
ଆଦ୍ୟେ ଶୁଣ ଅଷ୍ଟ ସଙ୍କେତମୟୀର ଯେ ବେବସ୍ଥା ॥ ୩୪ ॥

ଅଗ୍ରଜନ୍ମା କନ୍ୟା ଧନ୍ୟା ଏକ ଅଟେ ପତିବ୍ରତା
ଅସମର୍ଥ ପତି ରୋଗୀ ପଙ୍ଗୁ ସେବନରେ ରତା ॥ ୩୫ ॥

ଅବଲୋକେ ଗ୍ରାମେ ବାର ବିଳାସିନୀ ଶୋଭା ଦିନେ
ଅନଙ୍ଗର ବାଣ ବ୍ରଣେ ଖିନ୍ନ ବଞ୍ଚେ ମନ ଦିନେ ॥ ୩୬ ॥

ଅଙ୍ଗନା ତା ଜାଣି ପତି ବ୍ୟଥା ହରଣେ ତତ୍ପର
ଅଗାରକୁ ପରସ୍କାର କରେ ଉଷାନ୍ତୁ ବେଶ୍ୟାର ॥ ୩୭ ॥

ଅଦଭୁତ ଦେଖି ଦିନେ ଜଟୀ ପଚ୍ଛୁଁ ସେ ହସି
ଆମ୍ଭେଶ୍ୱର ମୋର ତବ ଶୋଭା ଜଳଧିରେ ଭାସି ॥ ୩୮ ॥

ଆବୋହାଇ କୋଳ କର ପାର ବୋଲନ୍ତେ ତରୁଣୀ
ଅନ ଚତି ନଶ ମୁଚ୍ଛି ବେଶ୍ୟା ବୋଲେ ହେଲ ରଣୀ ॥ ୩୯ ॥

ଆସେ ଶିରେ ଧରି ପତି ମୁଦେ ତମ ନଶାବେଳେ
ଅଷ୍ଟ ଶୂଳେ ବସି ଋଷି ପୂର୍ବ ପାପ କର୍ମ ବଳେ ।। ୪୦ ।।

ଅଙ୍ଗେ ବାଜ ବ୍ୟଥା କଢେ ପ୍ରାତେ ଛେଦ ହୃତାଶିର
ଅନ୍ତେ ଚନ୍ଦ୍ର ନାସ୍ତ ବୋଲେ ଅନ୍ତ ନୋହୁ ପ୍ୟେ ନଶିର । ୪୧ ।।

ଅତି ତୃପ୍ତି ମତି ପତି ରମ୍ଭୁ ଦ୍ୱାର ରମଣୀରେ
ଆନ ନୋହୁ ବାଣୀ ଭେଗ ସପ୍ତଗ୍ରହ ଧଂଢଣୀରେ ।। ୪୨ ।।

ଅମରେ ତା ଜାଣି ପତି ସଢ ବସାଇଲେ ନାକ
ଅତି ଦୃଷ୍ଟ କ୍ରୂର ଚକ୍ଷୁବାକ ପାରୁଷ୍ୟ ନାସ୍ତକ ।। ୪୩ ।।

ଅନ୍ତେ ସେ ଦୋଷ ନ ଘେନ ଦେବ ସୁପ୍ରସନ୍ନମୁଖୀ
ଅଙ୍ଗନାଙ୍କ ମଧ୍ୟେ ଧର୍ମ ଧ୍ୱଜନରେ ତାକୁ ଲେଖି ।। ୪୪ ।*

ଅତି ଲଜ୍ଜିତ ଜତ ଚନ୍ଦ୍ରମାମୁଖୀ ଶ୍ରବଣରେ
ଅଭିଳାଷ କୃଷ୍ଣେ କଳହାନ୍ତରିତା ଲକ୍ଷଣରେ । ୪୫ ।।

— ଗୀତ —

(ଶ୍ରୀ ରାଗେଣ ଗୀୟତେ )

ଅବଲମ୍ବେ ଗୋବନ ଶୋଭା ମୁଖାରବିନ୍ଦ
କେହୁ କରାଇବ ଦରଶନ
ଆଗହୁଁ ମୁଁ ହୁଡ଼ିଲି ଚିନ୍ତା ଜଳେ ବୁଡ଼ିଲି
କାନ୍ତରେ ନୋହିଲି ପରସନ । କଣ୍ଠରେ ସଜନ ।୧।।

ଅନ୍ୟଥିଲି କରମେ ଧାତା କର୍ମା ଭରମେ
ନ ହୁଡ଼ ଲେଖିଲା କପୋଳରେ
ଆଲୋକଲି ମନନ କୃଷ୍ଣ ମୁଖ ନଳିନ
ଗଲେ ପାଶୁଁ ଖେଦ ପ୍ରବଳରେ । କଣ୍ଠରେ ସଜନ ।୨।

---

* ଶ୍ଲୋକଃ—

ଅପ୍ରିୟାଣ୍ୟପିଯାଚୋକ୍ତା ଦୃଷ୍ଟା ବା କ୍ରୂର ଚକ୍ଷୁଷା ।
ସୁପ୍ରସନ୍ନମୁଖୀ ଭର୍ତ୍ତା ସା ନାସ୍ତା ଧର୍ମଧ୍ୱଜନା ।।
(ଇତି ଇତିହାସସମୁଚ୍ଚୟେ) ।।ପୋଥିପାଠ।।

## — କଳହାନ୍ତରିତା ବୋଲି —

ଆଳି ଆଳରେ ବୋଲଇ ବାଳି କଲି କି କରମ
ସ୍ୱପ୍ନରେ ଶୟନରେ ଦେଖି ନ ଥିଲେ ଚରମ ॥ ୧ ॥

ଅତି ବନିତ କହନ୍ତେ ପତି ହେଲ ଯେ ଭରମ
ଅନାଦରେ ପୃଷ୍ଠକୁ ଦେଖାଇଦେଲ ଯେ ଶରମ ॥ ୨ ॥

ଆସ୍ୟ ଚନ୍ଦ୍ରକୁ ଚକୋର ପର ହୋଇ ଯେ ଆଶାୟୀ
ଆପ୍ୟାୟିତ କମ୍ପା ନ କଲି ଅଧରୁ ସୁଧା ଦେଇ ॥ ୩ ॥

ଆଲିଙ୍ଗନକୁ ବଢ଼ ଥିଲେ କର ପେଲି ଦେଲି
ଅଣିମାଦ ଭୋଗ ଯୋଗ ଛୁଡ଼ କାମ ଦଶାରେ ବଞ୍ଚିଲି ॥ ୪ ॥

ଅଙ୍କେ ଆସନ କରିବା ସୁଖ କମ୍ପା ମୁଁ ଛାଡ଼ିଲି
ଅବମାରେ ବାସ ଅବଶେଷ ଶୟନେ ଜଡ଼ିଲି ॥ ୫ ॥

ଅଲକ୍ତରେ ବ୍ୟକ୍ତ କରିବ କହିଲେ ରାଗପଦ
ଅଟେ ମନ୍ଦଭାଗ୍ୟ ବାଣୀ ନ କହିଲି ରାଗପଦ ॥ ୬ ॥

ଆବେଷ୍ଟିତ କରିଥାନ୍ତି ପ୍ରିୟ ଗଳକୁ ଭୁଜରେ
ଝଷି ଦେଇ ଦର ବଦଳିତ ନୟନ କଞ୍ଜରେ ॥ ୭ ॥

ଅଳି ଅପାଙ୍ଗ ଚୁମ୍ବାଇ ଥିଲେ ତନୁ ଇନ୍ଦୀବରେ
ଅନୁରୋଧ ଲଭ କାନ୍ତ ବେଶ ସେନେହ ପ୍ରକରେ ॥ ୮ ॥

ଅନୁରାଗୀରେ ବିରାଗୀ ହେବା ଫଳଲାଭ ମତେ
ଅର୍କବୀମ ରଶ୍ମି ମଳୟଜ ସ୍ଫୁଲିଙ୍ଗ କେମନ୍ତେ ॥ ୯ ॥

ଅନୁଭବ ହେଲା ପ୍ରିୟ ଦ୍ୱେଷୀ ବୋଲି ବନପ୍ରିୟ
ଅଳି ଆଦ ଧୀର ସମୀରଣ ହୋଇଲେ ଅପ୍ରିୟ ॥ ୧୦ ॥

ଆଣିଦେବ କେଶର ସରସ ନଖ ଦେଲି ଛାଡ଼ି
ଅଟେ ଲେଖା ଯେଣୁ କାନ୍ତାରେ କାନ୍ତରେ ପ୍ରିୟ ପଢ଼ି ॥ ୧୧ ॥

ଆପେ ବାସରେ ବାସରେ ବାସରେ ଚୋକ୍ଷ ଭୂଷଣେ
ଅଶୀର ଅମ୍ବର ଅବରନ୍ତ ପୁଷ୍ପ ବରଷଣେ ॥ ୧୨ ॥

ଆଳି ବୃନ୍ଦ ରସେ ହରଷେ ହରଷେ ଭମନରେ
ଆସେ ବିହରି ହରି ହରି ଅମ୍ବର ଭଜନରେ ॥ ୧୩ ॥

— ଗାହା —

(ମଙ୍ଗଳ ଧନାଶ୍ରୀ ରାଗେଣ ଗୀୟତେ)

ଅନୁବନ୍ଧ—

ଅର୍କସ୍ଥଳ ରାଧା ଚର୍ଚ୍ଚରି ଖେଳରେ କୃଷ୍ଣଙ୍କୁ ଦେଖି ମାନସ୍ମ
ଅବଜ୍ଞା ଲେଖିବା ଦେଖି କୃଷ୍ଣ ଗୃଢ଼ୁ କଲେ ସେ ଅଧୋଆନନ ।୧।

—ଗୀତ—

(ଚଛନ୍ଦ ମଞ୍ଜରୀ ରାଗେଣ ଗୀୟତେ)

ଅମରଷ ଅମରଷ କଲମୋହ୍ଣଂ ଚେଳ
ଅଚିରରେ ଅଚିରରେ ବନ୍ଧି ପାଶ ଭୁଜ ଗୋ ॥ ୧ ॥

ଆଶୀବିଷ ଅସି ବିସ୍ମୟେ ଫୁଲ୍ଲଶର
ଅନ୍ତକର ଅନ୍ତଃକରଣରେ ପଶେ ମୋର ଗୋ ॥ ୨ ॥

ଆନନରୁ ଆନ ନ ଲୁଚଇ ଦନ୍ତ ସୁଧା
ଆସନରେ ଆସ ନରେଶ ଯାହାର ବାଧା ଗୋ ॥ ୩ ॥

ଅନାରମ୍ଭ ଅନାରମ୍ଭ ଉଲ୍ଲଙ୍ଘନ ବେଶ
ଆସପଦ ଆସପଦ ମନ୍ତ୍ର ମୋ ଶିକ୍ଷଷ ଗୋ ॥ ୪ ॥

ଅମ୍ବୁରୁହ ଅମ୍ବୁରୁହ ରଣ ଅଶ୍ରୁ ମୁଖି
ଆସେଚନ ଆସେଚନକାଙ୍କ୍ଷୀ କୁଚେ ଦୁଃଖୀ ଗୋ ॥ ୫ ॥

ଆଜନମ ଆଜନମ ଯେନ ସୁଖୀ ହୁଅ
ଅପସର ଅପସର କୁଚେ ଆଉଜାଅ ଗୋ ॥ ୬ ॥

---

୧ । (କ) କଳମୋଧ୍ୱନି

ଅନୁସର ଅନୁସରତରେ ଗଲି ଭାସି
ଆକରଷ ଆକର[୨] ସମସ୍ତ ସୁଖ ରାଶି ଗୋ ॥ ୭ ॥

ଆଦରଣ ଆଦର ସଜନି ଦେଖ ଚନେବ
ଅନ୍ତରଙ୍ଗ ଅନ୍ତରଙ୍ଗ ଭେଦଅଛୁ ଗାବ ଗୋ ॥ ୮ ॥

ଆନକର ଆନ କରଜରେ ଲେଖୁଁ ମନ୍ତ୍ର
ଅବଗ୍ରହ ଅବଗ୍ରହ ରଙ୍ଗେ ଅଙ୍ଗେ ଲିଖ ଗୋ ॥ ୯ ॥

ଅପସର ଅପସର ସୁତନୁ ଆଣ୍ଡିରେ
ଅନିମିଷ ଅନିମିଷ ନେତା କରି ରହେ ଗୋ ॥ ୧୦ ॥

ଅଧରଷ ଅଧ ରସବନ୍ତ ଦନ୍ତ ବୃଥା
ଅଗାରଭୁ ଅଗାର ଭୂଷଣି ଟେକ ମଥା ଗୋ ॥ ୧୧ ॥

## — ମାନ ଗୃହ୍ନ ବୋଲି —

ଅପରାଧୀ ହେଲି ଯେବେ କର ଚନ୍ଦ୍ରହାସ ଘାତ
ଅତ ରସ କୂପଶୋପରେ ପକାଅ ଗୋ ସଂଘାତ ॥ ୧ ॥

ଅଟେ ସୁକ୍ତ ନେତ୍ର ଛବ ହର କୁଚ ଅଛୁ ଲୁଚ
ଅଳୋଚତ ଚନ୍ଦ୍ରଜତ ମୁଖ ଲୁଚ୍ଛଉ କ ପାଞ୍ଚ ॥ ୨ ॥

ଅମୃଦୁ ବା ମୃଦୁ ତବ ବାଣୀ ମୋ ସୁଖ ବର୍ଦ୍ଧନ
ଆପ ବର୍ଦ୍ଧି ବେନ ଗୁଷେ ରଷ ପଞ୍ଚ ମୂଦ ଧନ ॥ ୩ ॥

ଅଙ୍କସ୍ଥାନ ବଧୂମୁଖ ଅଶ୍ରୁ ଅଞ୍ଜନ ମ୍ଳାନରେ
ଅନୁକମ୍ପା ବଧୂରେ ତା ସାମ୍ୟ ବସ୍ତୁ ଆନନରେ ॥ ୪ ॥

ଆଣି ରତ ଶ୍ରମ ସ୍ୱେଦ ନୀର ଭରି କୁଚକୁମ୍ଭ
ଅନ୍ତେ ମଦନ ଅନଳ ଜଳେ ସେଚନ ଆରମ୍ଭ ॥ ୫ ॥

ଅମନ୍ତ୍ରନେ ଅଛୁ ଚଢ଼ା ଦେଖ ହୋଇ ହରଷଣ
ଅଙ୍ଘ୍ରି ସ୍ଥଳ ସରସିଜ ଗଣ କର ଗୋ ଭୂଷଣ ॥ ୬ ॥

---

୨ । (କ) ଆକରଷ

ଆଗେ ପାଦକୁ ବଢ଼ାନ୍ତେ କର ଘୋଡ଼ାଇ ଅଞ୍ଚଳେ[1]
ଆଳି ବୋଲନ୍ତି ଦେଖ କୃଷ୍ଣଙ୍କୁ ନୟନ ଚଞ୍ଚଳେ ॥ ୭ ॥

ବିବ୍ବୋକ—

ଅନାଦର କରୁ ଇମ୍ନୋନ୍ତୁ ବନସ୍ତ୍ରୀ ବନମାଳୀ
ଆଣି ବାମ ଲୋଚନା ପଦକୁ ସାଧିଁ କର ବାଳି ॥ ୮ ॥

ଔଦାର୍ଯ୍ୟ—

ଅଳଂକାର ଔଦାର୍ଯ୍ୟକୁ ସମା କରଇ ପ୍ରକାଶ
ଅନ୍ତତମ କାମ ଦୂର ହାସ ବଧୂ ସଂକାଶ ॥ ୯ ॥
ଆଳି ବୋଲନ୍ତି କୃଷ୍ଣଙ୍କୁ ଆଜ ସୁଖ ମନସାରେ
ଅଭିସାର ସାରସାକ୍ଷୀ ହେବ ଯେ ତ ନିଶାରେ ॥ ୧୦ ॥
ଅବଧି ଶୁଣି ଅବଧିରତ ଚନ୍ଦ୍ରମୁଖ ଗୃହଁ
ଆଳୟକୁ ଗଲେ ରାଧା କୃଷ୍ଣ ସଖା ମେଳେ ରହି ॥ ୧୧ ॥
ଆସେ ପ୍ରଦୋଷେ ସୁରଭି ବ୍ରଜେ ସୁରନଦୀ[2] ଧାର
ଅନ୍ତାଳରେ କୃଷ୍ଣ ବକ୍ଷେଦାଗ ଲିବଇ[3] ରାଧାର ॥ ୧୨ ॥

ମୋଟ୍ଟାୟିତ[4] —

ଆଳି ସଂକେତ ପ୍ରସଙ୍ଗ କହୁଁ ରତେ ମୋଟ୍ଟାଇତ
ଅଙ୍ଗ ଜୃମ୍ଭା କର୍ଣ୍ଣକଣ୍ଡୂ ବପୁ ପୁଲକେ ପୂରିତ ॥ ୧୩ ॥
ଅଣୋଦ ବଧି ଅନ୍ତେ କୃଷ୍ଣ ଗତ ଅନୁସାରେ
ଅମ୍ଭୋଜକ୍ଷି ଆଳି ସଙ୍ଗେ ବନ ନିକୁଞ୍ଜ କାସାରେ ॥ ୧୪ ॥

---

୧। (କ) ଅଞ୍ଜଳେ

୨। (କ) ସୁରଭି ସୁର ନଦୀ

୩। ଲିବଇ = ଲିଭଇ

୪। ମୋଟ୍ଟାଇତ (ପୋଥିପାଠ)

## — ଗୀତ —

(ଗଉଡ଼ ରାଗେଣ ଗୀୟତେ )

ଅବଦେଖ ରାଧେ ହରି ନିକୁଞ୍ଜ ପଲଙ୍କେ
ଅସିତ ମେଘେ ବିଜୁଳି ରାଜିତ ଅଙ୍କେ ॥ ଘୋଷା ॥

ଅମାର ଉରଜ କମଳ ଭୁଜ କାମ କେଳି ମଇଦାନେ
ଅନଙ୍ଗର ଦାଉ କରଜର ଘାଉ ସୁମୁକୁଳିତାବସ ମୁନେ ।୧।

ଆପନା ଚରନ ବୈରି କଣଲସ୍ତ ପୁଞ୍ଜ
ଅଘାତ ଦନ୍ତରେ କରି ହରଷ ଭୁଞ୍ଜ ॥ ୨ ॥

## — ସ୍ୱାଧୀନ ଭର୍ତ୍ତୃକା ବୋଲି —

ଶ୍ଳୋକଃ—

ଆଶ୍ଳେଷିତ ମୁନଣନ୍ତି ସୁମାଦଦାନୈ-
ପ୍ରେମୋତ୍ତରପ୍ରଣତକୋମଳମୂଚ୍ଧବାଗ୍‌ଭିଃ ।
ଯା ସର୍ବଦୈବ ସୁଖ ସଂଜନୟେତ୍ ପ୍ରିୟସ୍ୟ
ସ୍ୱାଧୀନଭର୍ତ୍ତୃକ ପଦେ ପ୍ରକଟୀକୃତା ସା ॥

(ଇତି ଭରତାଚାର୍ଯ୍ୟେ)

ଆପେ ସ୍ୱାଧୀନ ଭର୍ତ୍ତୃକା ପ୍ରିୟ ଅନୁକୂଳ
ଅଙ୍କେ କୃଷ୍ଣର ବସାଇ ରମା କହେ ସଖୀକୁଳ ॥ ୧ ॥

ଅମୃତାଂଶୁ ଯେସନ୍ତ ବନ୍ଧୁ କୁମୁଦିନୀର ମୋଦିନୀ
ଅଟେ କୁମୁଦିନୀର କେବଳ ବନ୍ଧୁ ସୁଖଦାୟୀ ॥ ୨ ॥

ଅନ୍ୟର ସେ ଯେତେ କହି କୃଷ୍ଣ ବୋଲେ ତେଜ ଦୋଷ
ଅହିତମେ କାମତମେ ଭ୍ରମ ହେବାର ବଶେଷେ ॥ ୩ ॥

ଅନ୍ତ ଅତୁର ଚତୁର ରତି ଆରମ୍ଭରେ ଭଡ଼
ଅମ୍ବୁଜ ମୁଖ ଶିଳୀ ମୁଖପରି ଚୁମ୍ବେ ଜଡ଼ ॥ ୪ ॥

---

୧ । (କ) ଅଭସାନେ

ଅମରଷ ଶାନ୍ତକ କାନ୍ତରେ କରେ ପଣ୍ଣଭବ
ଆସ୍ୱେଦଣ ଉତ୍ଥାନରେ କଟିଯାଚେ ସୁଖ ଭବ ॥ ୫ ॥

ଆନମିତ କଚ କରେ ରଦ ନଖେ ତନୁ ଭନ୍ନ
ଅଦ୍ରି କୁଚ ନଖ ହୃଦେ ଭୁଜ ବନ୍ଧନେ ଅଭିନ୍ନ ।୬।

ଅଟେ କାମ ବାମଗତି ପରାଭବେ ହରଷିତ
ଅଙ୍ଗ ଅବଶ ନ ଚଳେ ଜଂଘ ସ୍ତବକତ ଯୋହିତ ॥ ୭ ॥

ଅବକାର ସ୍ତୁରୁଷ ରସ କ ସିଦ୍ଧ ସାହାସରେ
ଆମ୍ରେଶ୍ୱର ପୁନ ମାତେ କାମ ସମର ରସରେ ॥ ୮ ॥

ଆଚରଣ କୃତ ପ୍ରିୟା ପରାଭବରୁ ବଶେଷ
ଆଣ୍ଟେ ସ୍ତନ ମର୍ଦ୍ଦନ ରଦନ ଘାତ ଧୃତ କେଶ ॥ ୯ ॥

## — କୁଟ୍ଟମିତ ଅଲଂକାର —

ଶ୍ଳୋକଃ—

କେଶସ୍ତନାଦ୍ୟଗ୍ରହଣେ ରତିହର୍ଷସଂଭ୍ରମୋପେତମ୍[1]
କୁଟ୍ଟମିତେତି ବଜ୍ଞେୟଂ ସୁଖମପ୍ୟ ଦୁଃଖୋ ପଚାରେଣ[2] ।୧।

ଅଳ ହୋନ୍ତେ ରତି ବାମ ପିନ୍ଧେ ରମଣୀ ରତନ
ଅସ୍ତବ୍ୟସ୍ତ କେଶପାଶ ବେଶ ଭଙ୍ଗ ଅଯତନ ॥ ୧୦ ॥

ଅଙ୍କେ ବସି ପ୍ରିୟ ବକ୍ଷକୁ ଆଉଜ ସେ ଗେଲାଇ
ଆଜ ବେଶକର ବୋଲେ ମୁଖ ଚନ୍ଦ୍ରମା ହଲାଇ । ୧୧ ।

ଅଚ୍ୟୁତ ଯେ ରଚେ ଜୁଡ଼ା ପୁଷ୍ପ କରଣ ଗର୍ଭକ
ଅଞ୍ଜନକୁ ରଞ୍ଜି ସୁନୟନ·ହରଣ ଅର୍ଭକ ॥ ୧୨ ॥

ଅନଙ୍ଗର କୁଞ୍ଜ ଲଞ୍ଜି କଳା ଯାତି ନସଦ୍ଧକ୍ଷଣି
ଆପେ ଶସ୍ତ୍ରକାର ବଢ଼ି ଯଥା ଆୟୁଧ ନିର୍ମାଣି ॥ ୧୩ ॥

---

୧। ସଂଭ୍ରମୋତ୍ପନ୍ନମ୍ (ପୋଥିପାଠ)
୨। ଦୁଃଖୋପଚାରେଣ (ପୋଥିପାଠ)

ଆଦରଣ ଖଣ୍ଡ ଗଣ୍ଡ ତଟ କ ମର୍କତ ମୀନା
ଅଧିକରେ କରେ ସୀମନ୍ତମା ସୀମନ୍ତୀ ଶୋଭନା । ୧୪ ।

ଆପେ ମକରନ୍ଦ କର କର କୁମ୍ଭ[୧] ଉରଜରେ
ଆପୀଡ଼ିତ କର କେତେବେଳେ ଲେଖି କରଜରେ ।୧୫।

ଅଳ୍ପ ହସି ଚମକାଇ ଅଙ୍ଗ ଅନଙ୍ଗ ରଙ୍ଗିଣୀ
ଆକଳ୍ପରେ ଚୋରା ଦେଖି ଚ ମ୍ପ ତଦନୁ ରାଗିଣୀ । ୧୬ ॥

ଅତ ଚନ୍ଦ୍ରୋଜ୍ଜ୍ୱଳେ କରେ କର ଧରଣ ଭ୍ରମଣ
ଆଣି ପୁଷ୍ପ ଉରସ୍ଥରେ ବେଶ ରମଣୀ ରମଣ ॥ ୧୭ ॥

ଅଛୁ ଅଳଙ୍କାରେ କେଳ ବୁଧ ବୁଝ ପ୍ରେ ସମସ୍ତେ
ଅକ୍ଷି ପରାଗେ ପୂରତ ଦେଖ ବୋଲେ ରସମସ୍ତେ ॥୧୮॥

ଅଭଜାଇ ବକ୍ଷେ ଦେଖେ ପ୍ରିୟ ପ୍ରିୟାର ଲୋଚନ
ଅଙ୍ଘ୍ରି କଣ୍ଟକ ବହ୍ନିଲ ରହ କହ ପ୍ରେ ବଚନ । ୧୯ ।

ଆଣି କଣ୍ଟକ ନିସ୍ତରକ କଣ୍ଟକଶୋଭି ପଦ
ଆସି କୁଞ୍ଜମଧ୍ୟେ ନିଦ୍ରା ପୁନ ସୁଖ ଆସପଦ ॥ ୨୦ ॥

ଅନଙ୍ଗର କେଳ ବନେ ହେମବଲ୍ଲୀ ପୁଷ୍ପବନ୍ତ
ଆସି କୁଞ୍ଜର ବାହାରେ ସେ କୁଞ୍ଜର ମତ୍ତ ଗତ । ୨୧ ॥

ଅପହତ ନିଦ୍ରାପ୍ରିୟ ପ୍ରିୟା ନ ଦେଖି ବସ୍ତୁସ୍ତ
ଆଳସ୍ୟକୁ ଗଞ୍ଜେ ନ କହ କ କେମନ୍ତ ଆଶୟ । ୨୨ ॥

ଆତୁରରେ ଉଠି ଭେଟି ମଳ ନୟନ ନଳନ[୨]
ଅତ ଗଉର ଧରଣୀ ଚନ୍ଦ୍ର କରଣ ମଳନ ॥ ୨୩ ॥

ଆଶ୍ଳେଷକୁ କର ଟେକ କହ ପ୍ରିୟେ ପ୍ରେ କ ଗତ
ଅଳ୍ପ ହସି ଫୁଲ୍ଲ ଚିଙ୍କୁ ବନ୍ଦ ବଧ ଅକାରନ୍ତ । ୨୪ ।

ଅମ୍ଭୋଜନମ୍ମ ପ୍ରେମ୍ବପର ତୋଷେ ସେ କୃଷ୍ଣ ଭ୍ରମରେ
ଅସ୍ତୁନେସ ବଧି ବୋଧେ ରାମା ଲେଖା କରମରେ ।୨୫।

---

୧ । (କ) କର କୁମ୍ଭ
୨ । (କ) ମଳ ନଳନ

ଅଗାରକୁ ଗଲେ ବେନି ସଖିହୃଷ୍ଟ ମାନସରେ
ଅନ୍ତେଠରୁଁ କାନ୍ତାକାନ୍ତ ନିଶି ଦିବସ ନ ସରେ ॥ ୨୬ ॥

ଅଟବୀରେ ବଞ୍ଚେ ହରି ରମା ରମ୍ୟ ପଟ ଧରି
ଆଳସ୍ୟରେ ରହି ତଥା ବଞ୍ଚେ ମନ୍ଦାର ଅଧର ॥ ୨୭ ॥

ଅତି ପ୍ରାତୁଁ ଉଠି ଶୁଦ୍ଧସ୍ନାନ ରଚି ଉତ୍ସାହରେ
ଅକ୍ଷି ଆଗତ ପଥରେ ଦେଇ ଗୋବିନ୍ଦ ବିହରେ ॥ ୨୮ ॥

ଆଶା ଚକୋରର ଦିଶାପୂର ଚନ୍ଦ୍ର ଦରଶନେ
ଆସେ ଯେ କାଳେ ଶ୍ରୀମଣି ତଥା ହାସ ପରସନେ ॥ ୨୯ ॥

ଅଛି ଘନ ପ୍ରଲମ୍ବ କୁନ୍ତଳ ଯୋଡ଼ାଇ ଚରମ
ଅଗ୍ରଭାଗେ ଗଣ୍ଠି ନିତମ୍ବକୁ ଜିଣି ମନୋରମ ॥ ୩୦ ॥

ଅଟେ ମାର ମାରକତ ଗଣ୍ଠି କୃଷ୍ଣ ନେତ୍ର ଲଭେ
ଅମୋଘ ଯେ ଘନରସ ବୃଷ୍ଟି ସରସ ସୁଲଭେ ॥ ୩୧ ॥

ଅଧିକରେ ଧଙ୍ଗ ହୋଇବାରୁ ସେ ବରବର୍ଣ୍ଣିନ
ତୁଙ୍ଗ ରଧାଣ ହେମକୁ ନିନ୍ଦେ ଯେ ବରବର୍ଣ୍ଣିନ ॥ ୩୨ ॥

ଅରି ପଦ୍ମରାଗର କାମର ବନ୍ଧୁ ସିନ୍ଦୁରର
ଅଭିନବାରୁ ତା ବାସ ବ୍ୟକ୍ତ ରାଗ ନାଗରର ॥ ୩୩ ॥

ଅସି ଅଞ୍ଜନେ ଶୋଭି ଚକ୍ଷୁଣେ କୃପା କଟିନେକ
ଆଜ ଦେଇନାହିଁ ଭୃକୁ ଗୃପେ ଲଞ୍ଜି ସିଞ୍ଜିନିକ ॥ ୩୪ ॥

ଅଳଙ୍କାର ବହୁଭି ଗୋବିନ୍ଦ ଦେଖି କହେ ମୁଦେ
ଅଛି ପୁଷ୍ପାୟୁଧ ତବ ପୁଷ୍ପାୟୁଧ ଭେଦ ହୃଦେ ॥ ୩୫ ॥

ଆଲିଙ୍ଗନେ ଜଡ଼ ସମ୍ଭ୍ରମେ କିଶୋର କିଶୋରୀ
ଆସ୍ୟେ ଚୁମ୍ବ ଦେଇ ମାର୍ଗୁ ବୋଲେ ଦେଲିନ ପାଶୋର ॥ ୩୬ ॥

ଅଭିଳାଷ ଯେବେ ଆସ୍ୱାଦନ୍ତି ଦେବ ମତେ ଶିକ୍ଷା
ଅମୃତର ସ୍ୱାଦୁ ଜଣୁଥିଲି କହି ପକ୍ଷ ଭାଷା ॥ ୩୭ ॥

ଅଷ୍ଟାବିଂଶ ଶତପଦେ ବେଦସଂଖ୍ୟା ବୋଲି ଶେଷ
ଅଟେ ଶ୍ରୀ ଶ୍ୟାମସୁନ୍ଦର ଦେବ ବର୍ଣ୍ଣନା ବିଶେଷ ॥ ୩୮ ॥

## — ଚତୁର୍ଥ କୁସୁମ —

### ।। ପ୍ରଥମ ଛାନ୍ଦ ।।

# କାମପୂଜା

( ରାଗ – ବସନ୍ତ )

ଅସ୍ୟ ଲକ୍ଷଣଂ ଶ୍ଳୋକଃ—

ଶିଖଣ୍ଡିବର୍ହୋଚ୍ଚୟବଦ୍ଧ ଚୂଡ଼ଃ ପୁଷ୍ଟ ନ (ପିକ) ଚୂତ ଲତାଙ୍କୁରେଣ
ଭ୍ରମନ୍ ମୁଦାବାସମନଙ୍ଗମୂର୍ତ୍ତିମତୋମତଙ୍ଗସ୍ୟ ବସନ୍ତ ରାଗଃ ।।୧।।

— ଗୀତ —

ଅନଙ୍ଗ ତ୍ରୟୋଦଶୀର ପୂର୍ବ ଦିବସରେ
ଅଠବା ଦେବା ଜଣାନ୍ତି[୧] ଅତି ହରଷରେ ଯେ ।
ଅଧିବାସ କୁମ୍ଭ ଆଜ ହୋଇବ ସ୍ଥାପନ
ଆଦ୍ୟେ କାମ ପୂଜା ପ୍ରାନ୍ତେ ଅଛ ବା ତପନ ଯେ ।। ୧ ।।

ଆନନ ପ୍ରସନ୍ନ ଶୁଣି ପ୍ରସଙ୍ଗନୁ ଜେମା
ଅକଳଙ୍କ ଶରଦେ କ ଚନ୍ଦ୍ରମା ସୁଷମା ଯେ ।
ଅଛି କଳ୍ପତରୁ ମୂଳେ ହେମ ବେଦୀ ସମ
ଅଧିକ ମଣି କୁଟ୍ଟିମ ଯୋଗେ ମନୋରମ ଯେ ।। ୨ ।।

ଆବାହନ ହେମ ଘଟେ କୃତ ନାନ୍ଦୀମୁଖୀ
ଆନକାଦି ବାଦ୍ୟ ହୁଳହୁଳି ଦେଇ ସଖୀ ଯେ ।

---

୧ । (କ) ଅଠବା ଜଣାନ୍ତି

ଆରବିନ୍ଦୁ ପ୍ରାନ୍ତୁ ହୋଇ ବଶେଷ ସୁବେଶ
ଆଳିଚୟ ମେଳେ ବୃନ୍ଦାବନେ ପରବେଶ ଯେ ॥୩॥

ଅଷ୍ଟସଖୀ ଯେ ରୂପ ମଞ୍ଜରୀ ଆଦି ଗଣ
ଅଛନ୍ତି ନିଜ ସେବନେ ସେ ବନେ ଶରଣ ଯେ ।
ଅର୍ଚ୍ଚିନ ମଦନ ବୀଜମନ୍ତ୍ରେ ନାନ୍ଦୀମୁଖୀ
ଅଗ୍ରଜନ୍ମା କନ୍ୟା ବନ୍ଦାପନା କରି ସୁଖୀ ଯେ ।୪।

ଅନଙ୍ଗ ଗାୟତ୍ରୀ କ ଉଚ୍ଚାରି ରସେଶ୍ୱରୀ
ଆପଣେ କୁସୁମାଞ୍ଜଳି ସ୍ୱୟଂ ଦାନ କରି ଯେ ।
ଆଦ୍ୟରେ କାମଦେବାସ୍ତ୍ର ବସ୍ତୁ ହେ ସଂସ୍ଥିତ
ଅନ୍ତେ ପୁଷ୍ପ ବାଣାୟୁଧୀ ମନ୍ତ୍ରକ ବଦନ୍ତି ଯେ ॥୫॥

ଅନ୍ତେ ଚନ୍ଦ୍ରାନଙ୍ଗ ପ୍ରତ୍ୟେକଦ୍ୟାଙ୍କୁ ଉଚ୍ଚାରି
ଆଣିଦେଲେ ପରସାଦ ଭୂଦେବୀ କୁମାରୀ ଯେ ।
ଆଳି ପେଷି ବନମାଳୀ ଆଣି ପ୍ରେ ସମସ୍ତେ
ଅଙ୍କରେ ଶ୍ରୀ ରାଧା ଦେବୀ ସୁବେଶେ ବିଜୟେ ଯେ ॥୬॥

ଅସମାନ ସୁଷମା ଲେଶକୁ କୋଟି ରତି
ଅତି ଶୋଭା ମନମଥ ମନ୍ମଥ ମୂରତି ଯେ ।
ଅନ୍ତ୍ର ନାଗର କୁସୁମ ଧନୁ ବୃନ୍ଦା ଦତ୍ତ
ଆଳି ପୃଷ୍ଠେ ବସି ରସେ ଅଭିଷେକ କୃତ ଯେ ॥୭॥

ଆତପତ୍ର ନାଗେଶ୍ୱର ଶାପୂନ ପିକରେ
ଅଭିଷେକ ନାନ୍ଦୀମୁଖୀ ହେମ ଘଟେ କରେ ଯେ ।
ଅରଣ୍ୟେ ଦ୍ୱାଦଶ ଦେବୀ ଯୂଥେଶ୍ୱରୀମାନେ
ଆରତି କ ଆଲୋକ ଉତ୍ସବ ବାଦ୍ୟମାନେ ଯେ ॥୮॥

ଅବିରତ ପୁଷ୍ପ ବୃଷ୍ଟି ବନ ପ୍ରସନ୍ନରେ
ଅଭିଷେକ କାମ ରତି ଜଣି ଶୋଭନରେ ଯେ ।
ଆଜ୍ଞା ପାଇ ବୃନ୍ଦାର ସେ କାଳେ ପଢ଼େ ଶୁକ
ଅନଙ୍ଗ ନୃପ ଜଣିଲେ ହରିତ ଅଂଶୁକ ଯେ ॥୯॥

---

୧। (ଗ) ଗାଇଛ

ଅଙ୍କୁତ ଭୂଭୃତ ଜରଜରେ ଦେବେ କର
ଅବଳା ହୃଦ୍ଗତ ବାସେ ହୋଇବେ ଶଂକର ଯେ ।
ଅନୋଚିତ ନୋହେ କହେ ଶାରିକା ଖରଷ
ଅଧିକ ସୁବର୍ଣ୍ଣରୁ ନରେଶ ନେବ ରତ୍ନ ଯେ ॥ ୧୦ ॥

ଆନନ୍ଦେ ବଧିତ କର ରମଣୀ ରମଣ
ଆମୋଦକୁ କୁସୁମ ବନ କରନ୍ତି ଭ୍ରମଣ ଯେ ।
ଅନା ଅନା ମୀନ ନୟନା ଯେ ନାଗେଶ୍ୱର
ଅମ୍ବୁଭୂକ କୁନ୍ତଳରେ ବଣିବ ସୁନ୍ଦର ଗୋ ॥ ୧୧ ॥

ଅତିମୁକ୍ତ ହସେ ଶିରରୁହ ବନ୍ଧ ଚିହ୍ନିଁ
ଅଗର୍ବ[୧] ହେବ ବନ୍ଧନ ମାଳେ କଲେ ସତ୍ୱ ଗୋ ।
ଅମ୍ଳାନ ଭୁଜ ଶୋଭନ ବର କନ୍ୟାର
ଅଙ୍କେ ପାଣି ଗ୍ରହଣ ବର କନ୍ୟାର ଗୋ ॥ ୧୨ ॥

ଅନଳ ବଦେଶୀ ଯେ ଶ୍ରୀଖଣ୍ଡାଚଳୁ ଆସି
ଅଶୋକ ରମ୍ୟ ସୁଷମା ଦେଖି ଋତୁ ଭାତି ଗୋ ।
ଅଟେ ପୁଷ୍ପବନ୍ତ ରଙ୍ଗ ଚନ୍ଦ୍ର ଅଚ୍ଛି ବନ୍ଧ
ଅନୋଚିତ ଶିର ଗୃହ କରେ ନାହିଁ ନାହିଁ ଗୋ ॥ ୧୩ ॥

ଅନୁରାଗୀ ସ୍ୱପୁଂଦୁଷ୍ଟ ଚୁରିକ ଯେତାରେ
ଅରୁଣ କର ପଲ୍ଲବ ଗୃହ ଦେଖ ତାରେ ଗୋ ।
ଅଟେ କୋବିଦାର ତାର ପିଣ୍ଡ ପାଟ ରଙ୍ଗ
ଅନଳ ଆଲିଙ୍ଗନରେ କମ୍ପାଉଛି ଅଙ୍ଗ ଗୋ ॥ ୧୪ ॥

ଆଶ୍ଳେଷ ସପ୍ତଲାକଳକାଯେ ଦ୍ରୁମେ ଦେଖ
ଅତି ସୁରସିକା ରତେ ରତେ ନଖ ଲେଖ ଗୋ ।
ଆବେଦେ ପୁରୁଷ ପରେ ମନ୍ଦିଜା ବ୍ରତତି
ଅନ୍ଦୋଳନ ବାତେ ଦେଖ ରତେ ଉପରତି ଗୋ ॥ ୧୫ ॥

---

୧ । (କ) ଅନାସ

ଅନଳକାନ୍ତ ଚମ୍ପକ କାନ୍ତା ବାସ ହରି
ଆରମ୍ଭି ଲଟ ଉଲଟ ରଣ୍ଡ ମାନେ ଧରି ଗୋ
ଅଟେ ମଧ୍ୟାହ୍ନ ଜାଣଇଁ ନ ଜାଣଇଁ ବୋଲି
ଅଳପ ହାସରେ ଶିର ସ୍ବନ କଟେ ବାଳି ଗୋ ॥ ୧୬ ॥

ଆସେ ମଧୁଶଯ୍ୟାରୁ ସୁନାସା ରଟେ ହାରି
ଅନଶେ ମାଧ୍ବ ମୁକୁଳ ଫିଟଇ ସେଦ୍ୱାର ଗୋ ।
ଅନିଳରେ ଠଳି ଠଳି ଗମନ ଆଚରି
ଆବେଷ୍ଟିତ ପରିହାସ ଆଳି ସହଚରି ଗୋ ॥ ୧୭ ॥

ଅନାଚ୍ୟୁତ ବାରାଙ୍ଗନା କୋଳରେ ବସାଇ
ଅରଣ୍ୟପ୍ରେମୁ ବଟକୁ ଆନନ୍ଦେ ରସାଇ ଗୋ ।
ଆସବ ମଧୁରେ ମତ୍ତ କଲି ତା ଚଖାଇ
ଆଲିଙ୍ଗିତ ହୋଇ କଳ ରାଗକୁ ଶିଖାଇ ଗୋ ॥ ୧୮ ॥

ଅନା ହେମ ଗଉରୀ କେତକୀ ପତିବ୍ରତା
ଅନଳ ସେ ଅଙ୍ଗ ସୁରଭିରେ ଅଭିରତା ଗୋ ।
ଅବକାଶ ନାହିଁ ଯାର ସୁମନ ଲଟର
ଆସିଲେ କରଇ ପକ୍ଷ ସବ୍ବତେ ବଦାର ଗୋ ॥ ୧୯ ॥

ଅବନୀ ସଜନୀ ସେ ମାନିନୀ କୁଞ୍ଜଲତା
ଅନୁରାଗୀ ଦେଖି ସ୍ଥଳ କଞ୍ଜ ମଞ୍ଜୁଳତା ଗୋ ।
ଅର୍ଦ୍ଧ ପ୍ରଣବକ୍ଷାରକେମଲ (?) ବ୍ୟାକୁଳତା
ଆକସୀ କେ ଗର୍ଭବତୀ ଯୁବତୀ ଭୂଳତା ଗୋ ॥ ୨୦ ॥

ଅମ୍ବ ଭୃଣ୍ଡିକ ବସନ୍ତ ପିକ ନାଗେଶ୍ୱର
ଆସବରେ ଛନ୍ନ ମନ ନାଗରୀ ନାଗର ଯେ ।
ଆଳସ୍ୟ ବଳରେ ରଣ୍ଡ ନ ପାରି ନର୍ତ୍ତିତ
ଅରଣ୍ୟେ ମନ୍ଦ ପବନେ ଲୀଳା ଖେଳେ ରତ ଯେ ॥ ୨୧ ॥

ଆସେ ବୈଶାଖ ଦମ୍ପତି ପ୍ରେମ ନବନୀତ
ଅତନୁ ରସ ମନ୍ଥନେ କଲେ ସଜନୀତ ଯେ ।
ଅଳପ ସ୍ତରଣ କଲି ଗ୍ରୀଷ୍ମ ବସନ୍ତରେ
ଆଶ୍ଳେଷ ଯେମନ୍ତେ ମାନ ନବୀନା ସ୍ୱାନ୍ତରେ ଯେ ॥ ୨୨ ॥

ଆଡଡ଼ ଖଣ୍ଡରେ ଗୋ ଦୋହନ ଥାଉଁ କରି
ଅର୍ଜୁନ ପକ୍ଷ ମାଧବ ବଦ୍ଧତ ଦ୍ୱାଦଶୀ ଯେ ।
ଅଗ୍ରଜ ସଙ୍ଗ ଗୋବନ୍ଦ ହୋଇ ହରଷିତ
ଆଭୁଲିତ ଦେଖିବାରେ ଯକ୍ଷିତ' ଯେ,କ୍ଷିତ ଯେ । ୨୩ ।

ଅଶୋକ ବନ ଶୀତଳ ଚରନ୍ତି ସୁରଭି
ଅଚ୍ଛନ୍ତି ସ୍ୱ ସେବା ସେବ ସଖା ସୁଖ ଲଭି ଯେ ।
ଅଗ୍ରେ କାସ୍ୟ ହାସରେ ସୁଭଦ୍ରସେନ ସେବେ
ଅଚ୍ଛି ପିଂହା ଧରି ଦେବ ପ୍ରସ୍ଥ ସେବା ଭାବେ ଯେ ।୨୪।

ଆରମ୍ଭେ ସୁବାହୁ ବାହୁ ଯୁଦ୍ଧ କୃଷ୍ଣ ସଙ୍ଗେ
ଆଦରଣ ବାସକ ସୁଦାମ ସେବେ ରଙ୍ଗେ ଯେ ।
ଅଚ୍ଛନ୍ତି ଚଟକର୍ମରେ ବୃଷଭ ସୁଦାମ
ଅନ୍ତଭୂକ ପିଚ୍ଛ ଗୁଚ୍ଛେ ବନ୍ଧୁଅପ ରମ୍ୟ ଯେ ।। ୨୫ ।।

ଅର୍ଜୁନ ସ୍ୱର୍ଣ୍ଣ ଝରରେ ସେବେ ବାସ ମାର
ଅଚ୍ଛି ମେଘ ମହାବଳ ମଞ୍ଜୁଳ ଚାମର ଯେ ।
ଅନୁଗତ କରେ ସ୍ତୋକ କୃଷ୍ଣ ସେ ଉଜ୍ଜ୍ୱଳ
ଅଠଇ ତାମ୍ବୁଳ ସେବା ବନ୍ୟ ପୁଷ୍ପମାଳ ଯେ ।। ୨୬ ।।

ଅଚ୍ଛି ବଂଶୀ ବେତ ଧରି ସେବାରେ ସୁବଳ
ଅତି ହାସ ରସେ ବଟୁ କଙ୍କଣି କେବଳ ଯେ ।
ଆନନ୍ଦିତ ବନଗାବେ ବଂଶୀ କଳ ଶୁଣି
ଅର୍କଜା ବନ୍ଦେ ପଦ୍ମର ବନ୍ଧନ ଉଜାଣି ଯେ ।। ୨୭ ।।

ଅଟେ କାଳୀୟ ହ୍ରଦର ଉତ୍ତରେ ସେ ବନ
ଅଭକ ଗାବ ତୃଷିତେ କଲେ ଜଳ ପାନ ଯେ ।
ଅନ୍ନ ଲୋଡ଼ା କଲେ କ୍ଷୁଧା ବାଧନ୍ତେ ପ୍ରବଳେ
ଅସିଛନ୍ତି କରି ଥାଉ ପାଶୋର ସକଳେ ଯେ ।। ୨୮ ।।

---

୧ । (କ) ସାକ୍ଷିତ

ଆସେ ପ୍ରବାସୀ ପାଶୋର କଂଶାସ୍ତ ବସନ
ଅଧ୍ୱରେ ଅଧୀର ଯଥା ମାରନ୍ତେ ମଦନ ଯେ ।
ଅନୁତାପ ଜାତ ତଥା ବାଳକ ନବଦେ
ଆମ୍ର ତାଳ ଖର୍ଜ୍ଜୁର କାନନ ସ୍ୱେଚ୍ଛ ନୋହେ ଯେ ॥ ୨୯ ॥

ଅଶନ କର ପ୍ରସନ୍ନ ହୁଅନ୍ତା ଜୀବନ
ଆନ ପ୍ରତିକାର ନାହିଁ ହେ ଭୂତ ଭାବନ ଯେ ।
ଅର୍ଜିଜା ନାଶିଲ ତୃଷା ବହ୍ନିଲ ଉଜାଣି
ଉଦଭୂତେ ଅନ୍ନ ତଥା ଆସୁ କ୍ଷୁଧା ଜାଣି ଯେ ॥ ୩୦ ॥

ଅରୁଣ ଅଧରେ କୃଷ୍ଣ ଜାତ ମନ୍ଦହାସ
ଅର୍ଭକେ ଗଗ ମନ୍ମଥା ଯଶ କ ପ୍ରକାଶ ଯେ ।
ଆଜ୍ଞା ଦେଲେ ଗଚ୍ଛ ବେଗ ଯାଗଶାଳା ପାଖ
ଅଗ୍ରଜନ୍ମା ସ୍ୱର୍ଗକାମେ ଆରମ୍ଭନ୍ତି ମଖ ଯେ ॥ ୩୧ ॥

ଅତିଥି ଆଗତେ ଅନ୍ନ ପ୍ରଦାନ ମେ ବିଧି
ଅବଶ୍ୟ ଅମ୍ଭ ନାମରେ କହ ହେବ ସିଦ୍ଧି ଯେ ।
ଆଶ୍ରିର କୃମାରେ ଶୁଣି ସେ ସ୍ଥାନେ ଗମନ
ଅରଣ୍ୟର ମନୋରମ କଲେ ଦରଶନ ଯେ ॥ ୩୨ ॥

ଶ୍ଳେଷ—

ଆକାଙ୍କ୍ଷା ନାକଗଣରେ ଦ୍ୱିଜ କୋଳାହଳ
ଅଶନ କରେ ବରହ୍ମି ସର୍ପୀକି କେବଳ ଯେ ।
ଆମୋଦ ସୁମନ କୁଳ ବ୍ୟକ୍ତ ସ୍ୱେକ ସ୍ୱେକ
ଆସ୍ତିତ ସମିଧ କୁଶ ସଫଳ ଅନେକ ଯେ ॥ ୩୩ ॥

ଅଧୋକ୍ଷଜ ସଙ୍ଗ ସୁଖ ବିନାଶ ବିକୁଳ
ଆଗତ ଅଭୀଷ୍ଟ ଖ୍ୟାତ କଲେ ଗୋପ ବାଳ ଯେ ।
ଅମ୍ବୁଦ ସୁନ୍ଦର ଧାର ଆନନ୍ଦ ଦ ସ୍ୱିନ
ଆଖ୍ୟାତ ଶୁଣି ସ୍ୱେ ଦ୍ୱିଜ ପିକର ସମାନ ଯେ ॥ ୩୪ ॥

ଆସି ନବଣେ ଜଣାଇଁ ଚେଷ୍ଟା ବିପ୍ରଙ୍କର
ଅଶୋକ ବନ ତରଣ ହୋଇଲ ଅକାର ଯେ ।

ଅମରଷ ଶୁଣି ରାମ ଅରୁଣ ଲୋଚନ
ଆଶ୍ୱାସି ଭାଷିଲେ ହରି ମଧୁର ବଚନ ଯେ ॥ ୩୫ ॥

ଆରୋହଣ ସ୍ୱର୍ଗ କାମନାରେ ଲୋକ ମତ୍ତ
ଅଜ୍ଞ କ କର୍ମକାଣ୍ଡରେ ଜ୍ଞାନଂ କାଣ୍ଡ ସତ୍ତ ଯେ ।
ଆମ୍ଭଙ୍କୁ ଜାଣନ୍ତି ଭଲେ ପଣ୍ଡିତ ଯୋଷିତ
ଅନ୍ନ ଦେବେ ଅବଲମ୍ବେ ହୋଇ ହରଷିତ ଯେ ॥ ୩୬ ॥

ଆଜ୍ଞା ମାନ ଗଲେ ପତ୍ନୀଶାଳାକୁ କୁମାରେ
ଆଲୋକଲେ ଅନାଦୃତ ବେଶ ସୁଷମାରେ ଯେ ।
ଅଦ୍ୱିସ୍ଥପୁ ବେଣୁ କଞ୍ଜ ମଞ୍ଜୁଳର ଶିଖା
ଆଧ୍ୟାନ କୀର୍ତ୍ତନ ହରି ଗୁଣ କୀର୍ତ୍ତି କରି ଯେ ॥ ୩୭ ॥

ଅତୁଳ ଆନନ୍ଦ ଶୁଣି ଗୋବିନ୍ଦ ସନ୍ଦେଶ
ଅନ୍ନସ୍ଥାଳ ଧରିଣ ଆସନ୍ତେ ବନଦେଶ ଯେ ।
ଅବଗା ଅମର ଅମରଷରେ ନଷେଧି
ଅମ୍ବୁଧିଗାମୀ ଆପଗା ସିକତା କ ବାନ୍ଧି ଯେ ॥ ୩୮ ॥

ଅନରୁଦ୍ଧେ ଆସୁଁ ଯୈକ ବପ୍ର ଦୁଷ୍ଟ ମଣ୍ଡ
ଆଗାରରେ ଧରି ଭରି ମୁଦାଳ ଯୁବତୀ ଯେ ।
ଆକୁଳେ ପୀତ ଦୁକୂଳେ ମାନସୀ କେ ଭେଟି
ଅନ୍ନ ଦେଇ ଅର୍ଚ୍ଚିନ ସେ କରି ପାଦେ ଲୋଟି ଯେ ॥ ୩୯ ॥

ଆନ୍ଧ୍ର ଶିଳେ ଶିରୀ ମାରି ହେଲ ହତପ୍ରାଣ
ଅଚ୍ୟୁତ ପଦାରବିନ୍ଦେ ପ୍ରବେଶ ସେକ୍ଷଣେ ଯେ ।
ଅନ୍ୟା ବିପ୍ରକନ୍ୟା ନଦୀ ବେଗରେ ଗମନ
ଆଲୋକ କରୁଣାସିନ୍ଧୁ ଭାବେ ମଗ୍ନ ମନ ଯେ ॥ ୪୦ ॥

ଇଷି ପକ୍ଷେ ଲାଖି ଚୋଷ ଲାବଣ୍ୟ ଅମୃତ
ଆନନ୍ଦ ବୃନ୍ଦରେ ମନ ଦୂର ପତ୍ତ ସୂତ ଯେ ।
ଅରଣ୍ୟର ପକ୍ଷି ମୃଗ ବଂଶୀ କଲେ ବଶ
ଆଦରେ ବୋଲନ୍ତି ଦେଖି ଆମ୍ଭ ଆସ ଆସ ଯେ ॥ ୪୧ ॥

---

୧ । (କ) କର୍ମଜ୍ଞାନ

ଅନ୍ନ ଦେଇ ତୋଷିଲ କ ବର୍ଣ୍ଣିବ କରନ୍ତ
ଆପେ ଦୁଃଖୀ ପରୋପକାରରେ ସାଧୁ ସନ୍ତ ଗୋ ।
ଅଲଂଘ୍ୟ ପନ୍ତ ଅଦେଶ ନ ମାନ ଅଗତ
ଆସି ହେଲ ପୂର୍ଣ୍ଣାହୁତ ସମସ୍ତ ପ୍ରାପତ ଗୋ ॥ ୪୨ ॥

ଅବମା ଦେବେ ତୁମ୍ଭଙ୍କୁ ଯେନ ସ୍ୱର୍ଗଗାମୀ
ଅବଳମ୍ବେ ଯାଇ ତୋଷ କର ନିଜ ସ୍ୱାମୀ ଗୋ ।
ଅଙ୍ଗନା ବୋଲନ୍ତି ଅଛୁଁ ସବ ଆଶା ତେଜି
ଅନ୍ତକେ ନ ରଖି ଦଅ ସୁଖ ପୁଞ୍ଜ ଖଞ୍ଜି ହେ ॥ ୪୩ ॥

ଅଚ୍ୟୁତ ବୋଲନ୍ତି ଭବକୁ ମୁଁ ନୋହେ ଦୂର
ଅନ୍ତରେ ଚିନ୍ତିଲେ ଅଛୁ ଅନ୍ତକେ ତୁମ୍ଭର ଗୋ ।
ଅବଶିଷ୍ଟ ନାହିଁ ଭାବେ ବଶ କଲ ମତେ
ଆନନ୍ଦେ ଗମିଲେ କ୍ଷିପ୍ର ବିପ୍ରକନ୍ୟା ଯେତେ ଯେ ॥ ୪୪ ॥

ଅଗ୍ରଜନ୍ମା ଦେଖି କଳହାନ୍ତରିତା ପରି
ଆମ୍ଭେ ନ ଚିହ୍ନିଲୁଁ ଯଜ୍ଞଭୋକ୍ତା ଦେବ ହରି ଯେ ।
ଅଳ୍ପ ଫଳକୁ ମହନ୍ତ ଶ୍ରମେ କରୁଁ ଯାଗ
ଅନାୟାସେ ଅଷ୍ଟଭୂତି ଲଭ କଲୁଁ ତ୍ୟାଗ ଯେ ॥ ୪୫ ॥

ଅତଥି ପୃଥଗ ଜନ ଅନାଦର ଦୋଷ
ଅଭାଗ୍ୟ ଆମ୍ଭର କଷ୍ଟ ହୋଇଲେ ନିରାଶ ଯେ ।
ଅସମ ନାସ୍ତି ଜ୍ଞାନକୁ ଶ୍ରୁତି ଜ୍ଞାତା ଦ୍ୱିଜ
ଅଦ୍ଭୁତ ସମସ୍ୟା ପୂରଣ ହେଲା ଆଜ ଯେ ॥ ୪୬ ॥

ଅଶାସ୍ତ୍ର କୃଷ୍ଣ ଦର୍ଶନ ଜାତ ହୋଇ ମ୍ଳାନ
ଅର୍ଭକ ବୈଧବ୍ୟ ଯଥା କୁଳାଙ୍ଗନା ସ୍ତନ ଯେ ।
ଅଚ୍ୟୁତ ଭୋଜନେ ରସି କଲେ ବାଳବୋଧ
ଅଛି ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟ ଚତୁର୍ବିଧ ଯେ ॥ ୪୭ ॥

ଅଦ ଶେଷ ବ୍ରଜେ ଆସେ ସଖା ଗାଭ ସଙ୍ଗ
ଆଖ୍ୟାତ କଲେ ବାଳକେ ଭୋଜନ ପ୍ରସଙ୍ଗ ଯେ ।
ଆଶ୍ୱାସି ଚକୋର ନେତ୍ର ସୁଖକାରୀ ସାଧୁ
ଆଶ୍ରୟ ଶ୍ୟାମସୁନ୍ଦର ଦେବ ରସେ ବଧୂ ଯେ ॥ ୪୮ ॥

— ଚତୁର୍ଥ କୁସୁମ —

।। ଦ୍ୱିତୀୟ ଛାନ୍ଦ ।।

# ଗ୍ରୀଷ୍ମ ଋତୁ

( ରାଗ — ଧନାଶ୍ରୀ )

(କୋଟାଇତା (?) ଗୁଣ୍ଡିଚ୍ଚ ବସନ୍ତ ବାଣୀରେ)

ଅରଣ୍ୟ ରମଣୀକି ମାଗି ମେଲଣି ବସନ୍ତ ଗଲା ବିଦେଶ
ଅରଣ୍ୟ ପ୍ରିୟ ବଚନ ଗଦଗଦ ସ୍ୱର ଭଙ୍ଗରେ ପ୍ରକାଶ ସେ
ଆଧି, ଅପହୃତ ସୁମନ ସମୂହ ସେ
ଅନାଦର ପତ୍ରାବଳି ବିଧି ସେ ।। ୧ ।

ଅନୁରାଗ ଛଳ ଶାଳ୍ମଳି ମୁକୁଳ ମକରନ୍ଦ ଅଶ୍ରୁ ବୃନ୍ଦ
ଅନବରତରେ ମଦନ ଦବରେ ଦହନ କରଇ ଦେହ ସେ
ଅତି, ଆସେ ପ୍ରଖର ବାତ ବିତତି ସେ
ଅଟେ ଶ୍ୱାସ ବିରହ ତପତି ସେ । ୨ ।

ଶ୍ଳେଷ—
ଅଧିକ ରଜନୀକର ଉପଗ୍ରହ ଶୁଷ୍କ ପଲ୍ଲବ ଶୟନ
ଆପଗା ନବମ ଦଶାରେ ରାଜଲେ କେବଳ ଶେଷ ଜୀବନ ସେ
ଅ.ପି, ଅଚ୍ଛି ପୂର୍ବ ପଙ୍କ ତା ପ୍ରକାଶି ସେ
ଅଭକ୍ଷଣ ଅନିମିଷ ରାଶି ସେ ।। ୩ ।।

ଆଖଣ୍ଡଳ ହେଲା ମଧୁପ ଚୁମ୍ବିଲା ଇନ୍ଦ୍ରାଣୀ କୁସୁମବଶ
ପ୍ରଚଣ୍ଡ କାଳରେ ଅବନୀ ବନିତା ନବ ରଜବତୀ ଖ୍ୟାତ ସେ
ଆଚେ, ଅନିଳ ରଜ ଅମ୍ବର ସ୍ଥାପେ ସେ
ଅଷି ମୁଦ୍ରିତ ଅବଧି ଚାପେ ସେ ।୪।

ଅଶ୍ୱତ୍ଥ ଦେଖଦେଶ ଅଶ୍ୱଭୁକ ପିଛ ଗୁଇ ତଳେ ଅଦ୍ଧ
ଅଦ୍ଭୁତ ଘନବନ୍ଧ ପୀଡ଼ାଦ୍ଧ ନରେ ଦେଇ ଦଣ୍ଡବୁଦ୍ଧି ବନ୍ଧ ସେ
ଅର୍କ, ଆସି ଭୁଳା ଗଣିରେ ବ୍ୟାପକ ସେ
ଅଦଭୁତ ହୋଇଲା ଆଲୋକ ସେ ॥ ୫ ॥

ଅଧିକାର ହେଲେ ଚପଳ ଜନଙ୍କ ମାତ ଉଚ୍ଚ ପଦ ଲଭେ
ଆଶୁଗ ଖଣ୍ଡଭୂତ ହୋଇଛି ଷ୍ଟ, ପଦ ନେଇ ନାକେ ଶୋଭ ସେ
ଅନ୍ତ, ମଧ୍ୟେ ପ୍ରପାଦନ ରସ ଶାନ୍ତ ସେ
ଅଚ୍ଛୁ ବନ୍ଧୁ ଗଣିକା ସମ୍ପତ୍ତି ସେ ॥ ୬ ॥

ଅସତ୍ୟ ବିଷୟ ବ୍ୟାପାରକୁ ସତ୍ୟ ଅଜ୍ଞାନୀ ମଣିଲା ପ୍ରାୟେ
ଅନ୍ୱେଷଣା କରେ ବଣେ ରେ ମୃଗ ମୃଗତୃଷ୍ଣା ଜଳମୟେ ସେ
ଅର୍କ, ଅବିବେକ ନରେଶ ପ୍ରାପ୍ୟକ ସେ
ଅନ୍ତ କରପୀଡ଼ା ପ୍ରଦାୟକ ସେ ॥ ୭ ॥

ଏ ବସର ନାହିଁ ବାର ଗ୍ରାମ ମାବ ଘର ରେ ତାଳ ବୃନ୍ତକୁ
ଅଙ୍ଘ୍ରି ଉପାନହ ସାତକଲେ ନରେ ସରଣି ଦୁଷ୍ଟ ତାପକୁ ସେ
ଆନେ, ଅନ୍ତ ଦହିଲା ଅଙ୍ଗ ବଧନେ ସେ
ଅତାଡ଼ନ କଲେ ଯଜ୍ଞମାନେ ସେ ॥ ୮ ॥

ଆଜରେ ସ୍ମର ହର ଜଣି ବସନ୍ତେ ଛଡ଼ାଇ ବୃଷଭାରୂଢ
ଅଙ୍କୁଶିତ ବଟୁ ପରଶୁ ପ୍ରେ ପରଶୁର ପାଣି ଯୋଗେ ଦାଢ଼ ସେ
ଅଦ୍ୟ, ଅଟ୍ଟେ ଡମରୁ ଟଙ୍କାର ବାଦ୍ୟ ସେ
ଅଙ୍ଗପାଂଶୁ ଭୂଷଣରେ ବନ୍ଦ୍ୟ ସେ ॥ ୯ ॥

ଅବସ୍ଥିତ ସଖୀସ୍ଥାନେ ସ୍ଥାନବନ୍ତ ଚନ୍ଦ୍ରପଷ ରଜନୀରେ
ଅଭିସାର ସାର ସାରସ ନୟନା ମେଳ ହୋଇ ସଜନୀଙ୍କେ ସେ
ଆସି, ଅଧୋକ୍ଷଜରେ କେଳ ଲାଳସୀ ସେ
ଅର୍କ ତନୟା ତଟରେ ବିଳସି ସେ ॥ ୧୦ ॥

ଅଙ୍ଗେ ଧରି ପ୍ରେମ ମଲ୍ଲିକା କୁସୁମେ କବରୀ କଲେ ଶ୍ରୀହରି
ଅରଣ୍ୟଦେବୀ କଳ ତାଳ ବୃନ୍ତରେ ନାସାଗ୍ରମ ସ୍ୱେଦ ହରି ସେ
ଆଣି, ଆପେ ଚନ୍ଦନ ମୁରଲୀ ପାଣି ସେ
ଅଚ୍ଛୁ ମିଶି ଘନସାର ପୂର୍ଣ୍ଣି ସେ ॥ ୧୧ ॥

ଅମ୍ବର ଦୂର କରି ବର ଉରଜେ କଲେ କାଞ୍ଚନ ଆବୃତ
ଅଙ୍ଗୀ ପରି ପୁନ କାଞ୍ଚନ ଅଙ୍ଗରେ କୃଷ୍ଣ କୃଷ୍ଣ ବପୁ ଧୃତ ସେ
ଅତି, ଆନନ୍ଦରେ ବେନି ବିଲୋକନ୍ତି ସେ
ଆଣି ଉପମା ଲକ୍ଷ କରନ୍ତି ସେ ।। ୧୨ ।।

ଅଟେ ବରବର୍ଣ୍ଣୀ ବକ୍ଷୋଜ ମଞ୍ଜୁଳ ଟଙ୍କଣ ଗିର ପ୍ରାପ୍ୟେକ
ଅମରଙ୍କ ଅଦ୍ରି କୁଜ୍ଝଟି ଆଚ୍ଛାଦ ଦନ୍ତୀ ଦନ୍ତ ସଂପୁଟକ ସେ
ଆଣି, ଅଙ୍ଗ କୃଷ୍ଣର ଲକ୍ଷେ ରମଣୀ ସେ
ଅଙ୍କଜାରେ ସୁର ତରଙ୍ଗିଣୀ ସେ ।। ୧୩ ।।

ଅଧିନ ମନ୍ତ୍ରିଣୀ ନାବ ବୁଡ଼ା ଜାଣି ନର୍ମାଳି ହେବ ବଦାର
ଅଚ୍ୟୁତ ରାଧା ଭୁଜ ଧରି ଉଠିଲେ ତରଣୀରେ ଅଧାଧାର ସେ
ଆସି, ଅଣ୍ଟୁ ସୂତା କେ ଳେ ତାତ ବସି ସେ
ଅଦଭୁତ ସମସ୍ୟା ପ୍ରେ ଢଶି ସେ ।। ୧୪ ।।

ଅରୁଣତର ହ୍ୱଙ୍କୁଳ ତହସାର ଲେଖନ ବନ୍ଧ ପିନ୍ଧିଲା
ଆମଧ ହେମ ମଣ୍ଡପ ରତ୍ନେ ତୋଷ ତୋରଣ ମାରକତ ମାଳା ସେ
ଆସି, ଅମ୍ବୁରୁହ ହେମ ପୀଠେ ବସି ସେ
ଅଙ୍ଗ ଝଳ ସରୁ ବାସେ ଢଶି ସେ । ୧୫ ।

ଆପେ ତରୁଣ ମଣ୍ଡଳ ମଧ୍ୟବର୍ତ୍ତୀ ଶିଖି ସଙ୍ଗ କ ରଜତ
ଅଂଶୁ ଆଲୋ ଢଉଡ଼ ହୁଲା ମେଳା କନ୍ୟାରାଶିରେ ନସବତ ସେ
ଆସି, ଅପସର ସର ବୃନ୍ଦକେଶୀ ସେ
ଅଗ୍ରେ ଲାସ୍ୟ ବଳାସେ ଉଲ୍ଲାସି ସେ ।। ୧୬ ।।

ଆନକ ଘନ ବଲ୍ଲକୀ ରାଗ ଗାନ ପୁଷ୍କରେ ଚଳିତ ଧୀରେ
ଅଗାଧ ପ୍ରଭୁ କୂଳକୁ ପ୍ରବର୍ତ୍ତାଇ ତଟପ୍ରେ ଅବ ବଧିରେ ସେ
ଆଳ, ଆଳାପରେ ଶ୍ଳେଷ ଛଳ ମିଳ ସେ
ଅବଧାନ ରାଧା ବନମାଳୀ ସେ ।। ୧୭ ।।

ଅଙ୍କେ ସୁତା ଶ୍ୟାମ ବପୁ ପ୍ରେ ଶୃଙ୍ଗାର ମୂର୍ତ୍ତିବନ୍ତ ମଞ୍ଜୁଳତା
ଅଧିକ ଘନ ରସରେ ବିଳାସିନୀ ରସିକା ଦେଖି ତନୁତା ପ୍ରେ
ଆଣି, ଆଦ୍ୟେ ରସିଲ ନାଗରମଣି ପ୍ରେ
ଅଟେ ତା ବକ୍ଷେଦେ ବରବର୍ଣ୍ଣୀ ପ୍ରେ ।। ୧୮ ।।

ଅବମା ବନ୍ଧତା ବେଣୀ ପିହାଣିଆ ଅମ୍ବୁଜ ଝୁମ୍ପା ଉପ୍ପଳ
ଆନର୍ତ୍ତିତ ହୋଏ ତରଙ୍ଗ ରଙ୍ଗରେ ପ୍ରତ୍ୟୁଷାପ୍ୟିତ ମଞ୍ଜୁଳ ଗୋ
ଆନ, ଆଳ ବୋଲେ କୋପୀନ ମଦନ ଗୋ
ଅନାହ୍ୱିବାଣ ଅଙ୍କେ ଭେଦନ ଗୋ ॥ ୧୯ ॥

ଅମୃତମୟୁଙ୍କୁଁ ସୁଧା ହଧିତ ପ୍ରେ ମୀନ ରାଶିରେ ମଣ୍ଡନ
ଅଙ୍କିତ କମଳେ ହୋଇ କରୁଅଛୁ କୁମୁଦ ମୁଦ ବର୍ଦ୍ଧନ ଗୋ
ଆନ, ଆଳ ବୋଲେ ପୁଣ୍ଡ୍ରପାକ ସ୍ଥାନ ଗୋ
ଅଦଭୁତ କମଳ ବେଷ୍ଟନ ଗୋ ॥ ୨୦ ॥

ଅଧିକ କର ପ୍ରତାପ ନାଶ କରେ ରୁଦ୍ଧ ତିଳକ ସମର
ଆଗତ ଗତ ଶିଳୀମୁଖ ମୁଖର କବନ୍ଧରେ ଭୟଙ୍କର ପ୍ରେ
ଆଜ, ଆବେଷ୍ଟିତ ଯେ ବନୌକା ବ୍ରଜ ପ୍ରେ
ଅନା ରଥାଙ୍ଗ ହେଉଛୁ ଭଜ ପ୍ରେ ॥ ୨୧ ॥

ଅବରୋଧ୍ୟ ତଳ ସଚନ୍ଦନ ବାଙ୍କ ପିଠକା ଗୋପିକା ଖେଳ
ଅଙ୍ଗ ଛଟକରେ ବରଷା କ କରେ ଝଟ ବିଦ୍ୟୁ ଆବଳ ସେ
ଆଣି, ଆପେ ମାଧବ ମାରନ୍ତି ପୁଣି ସେ
ଅଦ୍ରି ଉରଜ ପ୍ରବାହ ଜାଣି ସେ ॥ ୨୨ ॥

ଆଲୋକ ବୃନ୍ଦାବନ ଦ୍ରୁ ଶୋଭନ ଚନ୍ଦ୍ରଶିଳ କବା ଦ୍ରବେ
ଆନନ ବିମଳ କମଳ ଗର୍ଭରୁ ମକରନ୍ଦ ଧାର ସ୍ରବେ ସେ
ଅତ, ଅମ୍ବୁ ଯୁଦ୍ଧ ଅଚ୍ୟୁତ ହାରନ୍ତି ସେ
ଆସି ପ୍ରବଳ ଅବଳାପନ୍ତି ସେ ॥ ୨୩ ॥

ଆରମ୍ଭି ବାଦନ ବଂଶୀ ବଶୀଭୂତେ ହସ୍ତରୁ ପାତ ପିଠକା,
ଆମନ୍ତ୍ରଣ ହେଲେ ଅର୍କଜା ଉଦରେ ଦରେ କ ସର୍ବ ଗୋପିକା ସେ
ଆସି, ଅମ୍ବୁଦରେ କ ବିଦ୍ୟୁତ ମିଶି ସେ
ଆପଗା କ ପୀତାମ୍ବରେ ରସି ସେ ॥ ୨୪ ॥

ଏତେ ପ୍ରେ ଶମ୍ବର ଟମ୍ବର ପରର ଘର ବୁଡ଼ିଲା କେ ଛଳେ
ଅଧିକ ଶୋଭା ଆରମ୍ଭା ରମ୍ଭା ଜଂଘ କୁଚ ଭୂମି ଅନା ବୋଲେ ସେ
ଆଖ୍ୟ, ଅବଲୋକ ସାରସ ବିରସ ସେ
ଅନାମୁଦ୍ରିତ କରନ୍ତୁ ବୃଶ୍ୟ ସେ ॥ ୨୫ ॥

ଅତଳ ଭାସିଲ୍ଲ ପରି କାହ୍ନାଙ୍କୁ ଚଉପାଶ ପ୍ରକଟନ ଦିଶେ
ଅସିତ ଅମ୍ଳାନ ଚମ୍ପକମାଳା କି ଭୁଜ ସାଟ ବେଢମିଷେ ସେ
ଅଙ୍ଗ, ଅଧୋକ୍ଷଜ ଭ୍ରମେ ଧରେ ଭଙ୍ଗ ସେ
ଅତ୍ରୁ ଚନ୍ଦ୍ରେ କେ ବାସ ପିଙ୍ଗେ ସେ ।। ୨୬ ।।

ଅନିମିଷ ପାଦ ଚୁମ୍ବିବାରୁଁ ଖାନ୍ତୁ ମଣି ହୋଇ ଅତି ଖାନ୍ତୁ
ଅଚ୍ୟୁତ ଅଙ୍ଗେ ଜଡ଼ ଭିଡ଼ ନ ଛୁଟଡ଼ ରାଜପଙ୍କେ ହେମ ଗ୍ରନ୍ଥ ସେ
ଅଟେ, ଅଳଙ୍କାର ଟଙ୍କିତ ପ୍ରକଟେ ପ୍ରେ
ଆସି ପ୍ରବେଶ ହୋଇଲେ ଘଟେ ପ୍ରେ ।। ୨୭ ।।

ଅମୃତ ପୃଷଦନ୍ତତମ ଅଙ୍ଗେ ଘ୍ରାତ ତୁଷାର ତମାଳ ଦଳେ
ଅଙ୍ଗନା କେତେ ମାରବନ୍ଧୁ ଛନ୍ଦବଶ୍ୟେ ସୁବେଶ ହୋଇଲେ କୁଳେ ସେ
ଅସି, ଅଙ୍ଗେ ଚନ୍ଦନ କର୍ପୂର ଘଷି ସେ
ଅଭ୍ରେ ବଧୂ ଦେଖି କୃଷ୍ଣ ଭାଷି ସେ ।। ୨୮ ।।

ଅତନୁ ବସନ୍ତ ସଖା ଅଭାବେ ତ ବ୍ୟାକୁଳରେ ବଚଧାନ
ଆଶ୍ୱାସିତ ବାତ ଚନ୍ଦ୍ର ମାଳ ଜଳ ବୃଷଭଙ୍କୁ ଦେଲ ଯାନ ସେ
ଆସି, ଅର୍ଦ୍ଧବଳ ହେଲ ମିଷ ଶଶୀ ସେ
ଅବା ମାଧବ ତରୁଣ ଦେଖି ସେ ।। ୨୯ ।

ଅବଳା ପର୍ବରେ ଗ୍ରୀଷ୍ମ ଉପର୍ବରେ କେତେ ରୁଚି ଚନ୍ଦ୍ରକର
ଅତନୁ ଅନଳେ ଯଥା କୃଷ୍ଣ ବୋଲେ ତବ ତନୁ ସୁଖାକର ସେ
ଆସି, ଅପହୃତ ହୋଇବାରୁଁ ନଶି ସେ
ଆଳପୁଙ୍କୁ ଗମେ ବୃନ୍ଦକେଶୀ ସେ ।। ୩୦ ।।

ଅଥ ଆଗତରେ ଅର୍କ ପୂଜନରେ ରାଧା କୃଷ୍ଣେ ଦାବ କେଳି
ଆସି ଚନ୍ଦ କୁଞ୍ଜେ ଜଳଯନ୍ତ୍ର ପୁଞ୍ଜେ ସଖୀ ସଙ୍ଗେ ପଶା ଖେଳି
ଅନ୍ତ, ଅବେଷ୍ଟିତେ ଝଟଶ ମହା ଶୋଭ ସେ
ଅକାଳେ କି ବରଷା ଆରମ୍ଭ ସେ ।। ୩୧ ।।

ଆଳି ବେଣ୍ଟି ହୋଡ଼ କରି ପଶା ଖେଳ ଖେଳନ୍ତେ ହାରିଲେ ହରି
ଅଙ୍ଗ ଆଭରଣ ଲଳିତା ହରଣ ଆନ କେ ମୁରଲୀ ହରି ସେ
ଆଳି, ଆତ୍ମ ମନ ପ୍ରେ ନାହେ ବଳ୍କଳ ସେ
ଅଙ୍ଗ ଶୂନ୍ୟ ଶୋଭ ବନମାଳୀ ସେ ।। ୩୨ ।।

ଅନୁକମ୍ପା କରି ବୋଲେ ଶମ୍ପାଗୋସାଇଁ ପ୍ରାଣନାଥ ଶୂନ୍ୟ ଦେହ
ଅମ୍ବର କରି ଆଭରଣ ଖଞ୍ଜି ଗୋ ବିଦେହର ପୌ ବିଦେହ ସେ
ଅଳି,[1] ଅଣି ଖଞ୍ଜିଲେ ଭୂଷଣ ମାଳ ସେ
ଆଜଠାରୁ ଅମ୍ବର କେ ଛଳ ସେ ॥ ୩୩ ॥

ଆଳିମାନେ ଚନ୍ଦ୍ରାବଳୀ ମାନେ ଆସି ଜଟିଳା ସମୀପେ ମିଳି
ଆଜ ବଧୂବର ଦରଶ ଅମ୍ବର ସଙ୍ଗେ ଛଙ୍ଗେ ପଶା ଖେଳି ସେ
ଆଳି, ଆଳାପରେ ଆସେ ବୃଦ୍ଧା ଚଳି ସେ
ଅଗ୍ରେ ଅଛନ୍ତି ଯୁଗଳ ବାଳି ସେ ॥ ୩୪ ॥

ମଧ୍ୟରେ ନାନ୍ଦୀମୁଖୀର ନିଷେଧକୁ ନ ମାନି କରେ ଗମନ
ଆସେ ଜଟିଳା ଶୁକ ଶାରୀ ରହିଲେ ଶୁଣି ଛନ୍ଦ ବୃନ୍ଦା ମନ ସେ
ଆସେ[2] ଅନ୍ତିକରେ ଥାଇ ମନ ତାପେ ସେ
ଅଗ୍ନି ଡାକଲେ ଦାନ କଳାପେ ସେ[3] ॥ ୩୫ ॥

ଆଜ୍ଞା ପାଇ ବନ ହୋଇଲା ଦହନ ବେଢ଼ିଲେ ବୃଦ୍ଧା ବ୍ୟାକୁଳ
ଅଗ୍ନି ନିବାରଣ ସତ୍ୟ ଉଚ୍ଚାରଣ ନାନ୍ଦୀମୁଖୀ ବେନି କୂଳ ସେ
ଅତି, ଅଟେ ତବ ବଧୂ ଯେବେ ସତୀ ସେ
ଆଉଁ ବୃଦ୍ଧା ବୋଲେ ସେହିମତ ସେ ॥ ୩୬ ॥

ଅରଣ୍ୟ ଦେଖି ଚଉବାଟ ଡାକନ୍ତେ ସତ୍ୟ ଜାଣି ଅଗ୍ନି ଲିଭେ
ଆଶ୍ଚର୍ଯ୍ୟ ବୃଦ୍ଧା ଅବାଧା ହେଲା ରାଧା ପ୍ରଶଂସାକୁ କଲା ଜବେ ସେ
ଆସେ, ଆଳୟକୁ ମାନସ ହରଷେ ସେ
ଆଜ ବଞ୍ଚିଲି ବଧୂ ବିଶ୍ୱାସେ ସେ ॥ ୩୭ ॥

ଅଟବୀ ଦେଖି ଉପାୟରେ ବହ୍ନି ଜଳାଇ ବନପ୍ରବର
ଅଷ୍ଟାଦଶ ଚିହ୍ନ ପଦ ଆସପଦ ଶ୍ୟାମସୁନ୍ଦର ଦେବର ସେ
ଅହ, ଅବସାନେ ରାଧା ମିଳେ ଗୃହ ସେ
ଅତି ବୃଦ୍ଧି ବୃଦ୍ଧା ତୋଷ ବ୍ୟୂହ ସେ ॥ ୩୮ ॥

---

୧ । (କ) 'ଆଳି' ପରେ 'ଆଳାପରେ ଆସେ ବୃଦ୍ଧା ଚଳି ସେ' ଅଛି ।
୨ । (କ) ଆସେ
୩ । (କ) ପୋଥିରେ ଏହି ଧାଡ଼ି ନାହିଁ ।

— ପଞ୍ଚମ କୁସୁମ —

# ଆଠ ଚଉପଦୀ ପୁଷ୍ପ ଲେଖନ

ଶ୍ଳୋକଃ—

ପ୍ରଣମ୍ୟ ଚରଣାମେ ଚ ଗୀତକାବେ'ଷ୍ଣୁ ଦର୍ଶିତା
ସ୍ୱୈକୈବ ନାୟିକା ରୂପି ହରିମୂର୍ତ୍ତିରବାସ୍ଥଧା ॥୧॥
ବାସ୍କସଜ୍ଜା ସମୁତ୍କଣ୍ଠା ସ୍ୱାଧୀନଭର୍ତ୍ତୃକା ତଥା
କଳହ,ନ୍ତରିତାଗୃପି ବିପ୍ରଲବ୍ଧାଽଭିସାରିକା
ଖଣ୍ଡିତା ପ୍ରୋଷିତାଶ୍ଚୈବ ନାୟିକା ଶୁଦ୍ଧସମ୍ମତା ॥୨॥

(ଇତି ଭରତାର୍ଯ୍ୟୌ)

( ଏକ )

— ବାସକସଜ୍ଜା —

( ରାଗ — କେଦାରଗୌଡ଼ା )

॥ ତାଳ — ସଦ୍ଧମାନ ॥

ଅଳ କେଶୀ
ଆଳରେ ଭଷି
ଅଧିକ ନଶି ॥ ପଦ ॥

ଅକ୍ଷି ଯଥା ଦୃଷ୍ଟିତ
ଅଛ ଘାପ ତେମନ୍ତ
ଅବଧି ଦୂର ହୋଇ
ଆମ୍ଭେଶ୍ୱରର ବିଳମ୍ବ କମ୍ପାଇ
ଆଶା କର ଚେମଚେ କରତାଇ ।
ଅନ୍ଧାର ବନେ କି ପନ୍ଥ ନ ପାଇ
ଆସୁଥିବେକା ଦୂରେ ଦେଖ ଯାଇ ॥୧॥

ଅନ୍ତେ ମୋର ସୁରସ
ଆସୁ ମରଣ ଲେଶ
ଅଛନ୍ନ ସୁଖ ପାଇ
ଅତି ପଲଟ ଯାନ ଭାଙ୍ଗି ଥୋଇ
ଅମର ପୁଷ୍ପ ପେଟଳା ଚନ୍ଦ୍ର ଦେଇ
ଅନଢଳ ସ୍ରୁକ ଚନ୍ଦନ ଦୁଇ
ଆମୋଦ ବିଶେଷରେ ଚହଟଇ ।୨।

ଆଣି ପୁଷ୍ପ ପାଖୁଡ଼ି
ଅଛି ଶେଯ ସଜାଡ଼ି
ଅଟେର କର୍ପୂର ଧଳୀ
ଆଭରଣ ମନ ମୋହିବା ଭଳି
ଅଙ୍ଗ କରିଅଛି ଅଧିକ ଝଳ
ଉଚରେ କେଶ ପ୍ରଷ୍ଟାକ ସାମଳ
ଅତୁଳ ଚସକୁ କସ୍ତୁରୀ ଦଳ ।୩।

ଅମ୍ବର ସରୁ ପିନ୍ଧି
ଆଣ୍ଟେ ମାଳକ ବାନ୍ଧି
ଆଜ ସେ ବୃଥା ପୁଣି
ଅତି ଖରଶ୍ୱାସେ ରମଣୀମଣି
ଆସେ ଦ୍ୱାରକୁ କିଛି ଧ୍ୱନି ଶୁଣି
ଅଟେ ସେ ବାସକସଜ୍ଜାର ବାଣୀ
ଆଣିଦେବ ଶ୍ୟାମସୁନ୍ଦର ଭଣି ।୪।

( ଦୁଇ )

— ଉତ୍କଣ୍ଠିତା —

( ରାଗ—କାନଡ଼ା ଗୌଡ଼ା )

।। ତାଳ—ତ୍ରିପୁଟା ।।

ଆଳି ମୁଖ ଚନ୍ଦ୍ରଁ ନବ ବାଳା କହେ ପ୍ରେମରେ
ଆଜ ଚେଷ୍ଟିବେ ସେ କାନ୍ତ ପଠୁ ଗୃଠୁ ସ୍ତୋମରେ ।ପଦ।

ଅଳି କମଳମା ପ୍ରୀତି ଭାବ ଜଣା ହେବ ରାତି
ଚନ୍ଦ୍ର ଚୁମ୍ବି ଦେବାବେଳେ ମୁଖ ସୁଧା ଧାମରେ ।୧।

ଅଙ୍କେ କରାଇ ଆସନ ଫେଡ଼ନ୍ତି ବେଳେ ବସନ
ଥିବ କି ମୋ ଦେହେ ଜ୍ଞାନ ବଶ ହୋଇ କାମରେ ।୨।

ଆକରଷଣେ କୁନ୍ତଳ ଫିଟି ଲୋଟିବ ଯେ ମାଳ
ଉରଜ ଶିବ ମଞ୍ଜୁଳ ହେବ ଅର୍ଦ୍ଧ ସୋମରେ ।୩।

ଅଚ୍ଛି ଚୁଳକ ବଧାନ ଚଳିବ ପଞ୍ଚ ମଦନ
ନଖ ଭାଲରେ ଜଘନ ଘାତ ରତି ସମରେ ।୪।

ଅନାବୃତରେ କିଙ୍କିଣୀ ବଜାଇବ ନାଣାମଣି
ନାଚ ବରଚନ୍ଦ୍ରେ ବେଣୀ ଖେଳିବ ଚରମରେ ।୫।

ଆଖ୍ୟାତ ଉତ୍କଣ୍ଠା ଭାବ ଶ୍ରୀ ଶ୍ୟାମସୁନ୍ଦର ଦେବ
କୋଳେ ଅଧରେ ବୁଢିବ ଭୃଙ୍ଗାନ୍ତ ଯା ଅମରେ ।୬।

( ତିନି )

## — ସ୍ୱାଧୀନ ଭର୍ତ୍ତୃକା —

( ରାଗ – ଶଙ୍କରାଭରଣ )

॥ ଏକତାଳି ॥

ଅଙ୍ଗନା ବର
ଅଳପ ହସି
ଅଳିରେ କହଇ କାନ୍ତ ସୁବେଶୀ
ଅନା ଶିଳ୍ପକାରୀଙ୍[1] ଠାରୁ
ଅଟେ କେଶ ବେଶ ଗୃନ୍ଥ
ଉଚ୍ୟୁତ ସାଜ ଅଳକ
ଆପେ ଲେଖିଲେ ତିଳକ ।ପଦ॥

ଉଳଟା ରାଗରେ ପଦ ରଚିତ
ଉନୋଚିତ ଚନ୍ଦ୍ର କଳ କାଶିତ
ଅଧିକ ପ୍ରୀତି ଭରଣି
ଆଷାଢ଼ କଲେ ଯେ ପତି
ଅଟେ ପ୍ରେ ସ୍ଥଳ ସାହସ
ଆମନ୍ତ୍ରଣ ମୋ ଶିରୀଷ । ୧ ।

ଅଧିକରେ ମୁଁ ନୁହଇ ସୁବେଶ
ଅସ୍ଥିର ତଥାପି ବନ୍ଧ[2] ଆବାସ
ଅଙ୍କର ବନାରେ ସେ ଯେଂ
ଆସନ ନ ଦେଲେ ଶେଯେ
ଆପଣା ଗ୍ଲାନି ଶୟନ
ଆଦରେ ନଶୀ ଶୟନ । ୨ ॥

---

୧ । (ଖ) ସିଳ୍ପକାରୀ
୨ । (ଗ) ବନ୍ଧ

ଆନନେ ପଡ଼ିଲେ ପୁଷ୍ପ ପରାଗ
ଅଞ୍ଚଳେ ପୋଛନ୍ତି କେତେ ସରାଗ
ଆତପେ ମୁଖ ନରସ
ଆଲୋକ ଆଣି ସାରସ
ଆପଣା ଶିରେ ଲଗାନ୍ତି
ଅଧୀର ହୋଇ ସେ ଅନ୍ତ ।୩।।

ଏତେ ସ୍ୱାଧୀନଭର୍ତ୍ତା ବାଣୀ ଭବ
ଆଣି କହେ ଶ୍ୟାମସୁନ୍ଦରୁ ଦେବ
ଅଧିକେ ନେହ ସମ୍ପତ୍ତି
ଆଦରେ କଲେ ଯେ ପତି
ଅଛନ୍ତି ଔଷଧି ଯନ୍ତ୍ର
ଆନ ମୋ ନ ଜାଣେ ମନ୍ତ୍ର ।୪।

---

( ଗ୍ଟର )

— କଳହାନ୍ତରିତା —

( ରାଗ—ଦେଶାକ୍ଷ )

।। ତାଳ—ତ୍ରିପୁଟା ।।

ଅକାରଣେ ମୁଢ଼ପଣେ କାନ୍ତେ କମା ରୁଷିଲି ।ପଦ।

ଅୟନେ ଧନେ ଶୟନେ
ଦେଖି ନ ଥିଲେ ନୟନେ
ଉରମ ହୋଇ ଚରମ କରି ଯାହା କହିଲି ।।୧।।

ଅନ୍ତରଙ୍ଗ ଶୋଭା ପୁଞ୍ଜ
ଦର ବିକଶିତ କଞ୍ଜ
ନେହ ସ୍ନେହେ ହୋସ୍ନେ ହେଳ
ଆଲୋକେ ନ ରସିଲି ।। ୨ ।।

ଆପେ ଦଳିଲେ ଅଲକ୍ତ
ଦୃଷ୍ଟୁଶଙ୍କିତ ଅନୁରକ୍ତ
ଅନାଦର କର ବ୍ୟକ୍ତ
ସୁଖ ସୃଷ୍ଟି ନାଶିଲ ॥ ୩ ॥

ଅଶ୍ରୁ ଧାର କଲ ହାର
ଉତ୍ପଳ ମାଳ ନାହାର
ଭୂଜକୁ କର ବାହାର
ପରୁଷରେ ଭାଷିଲ ॥ ୪ ॥

ଅନଙ୍ଗର ଶାନ୍ତି ଯୋଗ
ଭାଲ ଲେଖା ହେଲା ଭୋଗ
କାନ୍ତକୁ ସୁହାଇ ଆପେ
ସତ୍ତ୍ୱ ପ୍ରେବେ ଯୋଡିଲ ॥ ୫ ॥

ଆଣିବେ ତ ହାଙ୍କୁ ଦେବ
କଳହାନ୍ତରିତା ଭାବ
ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲେ ନଷ୍ଟେ ଭାସିଲ ॥ ୬ ॥

---

( ପାଞ୍ଚ )

— ବିପ୍ରଲବ୍ଧା —

( ରାଗ – ପୂରବୀ )

॥ ତାଳ – ଝଡ଼ତାଳ ॥

ଆଜ ନିଶିରେ,
ଆଜ ସମାରେ ରସିକ ରସିରେ ॥ ପଦ ॥

ଅନପର ରତି ମାତ ଇଛେ ନବ ନବ ପ୍ରୀତି
ଅନୁଭବେ ଜାଣିଲ ଚରିତ ଯେ ।। ୧ ।।

ଅଟେ ସ୍ଫଟିକ ଯେମନ୍ତ ଯା ପାଶେ ଥାଇ ତେମନ୍ତ
ଅନୁରାଗରେ ହୋଇଛି ପୂରିତ ଯେ ।। ୨ ।।

ଅବବାହାର ବୟସ ପର ବୃଥା ନହି ଶେଷ
ଆସି ସଂକେତକୁ ଶ୍ରମ ଲାଭ ଗୋ । ୩ ।।

ଅଶ୍ରୁ ମୋତି ଉଜ୍ଜ୍ୱଳରେ ପୂରିତ ଭାଗ୍ୟ ବଳରେ
ଅଛୁଦ୍ଧରେ କୁଚ ହେମ କୁମ୍ଭ ଗୋ । ୪ ।।

ଅଣସର ଶିଖିଧର ପର ତା ଆନନ ମୋର
ଆଳ ନ କର୍ବକ ତା ବକ୍ଷସ୍ଥ ଗୋ ।। ୫ ।।

ଆଳାପ ଶ୍ୟାମସୁନ୍ଦର ଦେବର ବପ୍ରଲବ୍ଧାର
ଆସେ ମ୍ଳାନ ମୁଖକୁ ସେ ଶପ୍ତନ ଗୋ । ୬ ।

---

( ଛଅ )

## — ଅଭିସାରିକା —

( ରାଗ — କେଦାର )

।। ତାଳ — ପଡ଼ିତାଳ ।।

ଅବଲମ୍ବରେ ପ୍ରଲମ୍ବ କେଶୀ ଉଠ କ ନ । ପଦ ।

ଅସିତ ଚେଳ ନଚେଳ ବପୁରେ କସ୍ତୁରୀ ବୋଳ
ମୋତି ଆଭର କର୍ଣ୍ଣେ ଦେ ନା ।୧।

ଅଚ୍ୟୁତର ତନୁ ଛବ ଆଭରଣ ମାଳ ଘାତ
ଆଳିଙ୍ଗନ କର ପ୍ରୀତି ଯେନା ।୨।

ଅତନୁ ତନୁରେ ଶର ପ୍ରହାରକୁ ଅଗ୍ରସରି
ସୁତନୁ ବନୁ କେ ହେବ ସେନା ।୩।।
ଅଭସ୍ଥରେ ଚଳ ଶର ଧନୁ ଧର ଘଞ୍ଚଶର
ସଙ୍ଗେ ଥିବା ଠାରେ ଡରସ୍ନେନା ।୪।
ଅଚ୍ଛ ଶିରେ ଜଳେ ମଣି ଆଲେପ ଥରେ ଜାଣି
ପିବୁ ଡରାଇ କହିଲେ କେ ନା ।୫।।
ଅଭିସାରକାର ଭାବ ଶ୍ରୀ ଶ୍ୟାମସୁନ୍ଦର ଦେବ
ବୋଲେ ସଖୀ ସଙ୍ଗେ ଥିବୁ ପିନା ।୬।।

---

( ସାଢ )

— ଖଣ୍ଡିତା —

( ରାଗ—ମାରୁଆ )

।। ତାଳ — ପଡ଼ତାଳ ।।

ଅଚ୍ୟୁତ ସେ ତବ ମନୋହାରୀ ।।
ଅନୁରାଗ ବଳେ ମନସିଜ ଭୋଳେ
ଯାଂ ସଙ୍ଗେ ଅଛ ରଜନୀ ହରି ।। ପଦ ।।
ଆଖଣ୍ଡଳ ଧନୁ ଶୋଭା ବଢ଼େ ତନୁ
କୁଟିଳ ଗୁଣ ହିଁ ସେହୁପରି
ଅଙ୍ଗ ରୁଚି ମାଳ କୁସୁମ ସମେଳ
ଅଳତା ରଙ୍ଗ ହୃଦରେ ଧରି ।।୧।।
ଅଧର ସୁରଙ୍ଗ ନେତ୍ରାଞ୍ଜନ ସଙ୍ଗ
ଗୁଞ୍ଜା ଛବି କରଁଛୁ ଚୋରି
ଅରୁଣ ଉତ୍ପଳ ମଞ୍ଜୁ କରତଳ
କର୍ବୁରିତ ଧରି କୁଚ ଗିରି ।। ୨ ।।

ଅଳିର ପ୍ରତୀକ କୁସୁମ କଣ୍ଟକ
ଘାତ ପରିଭର ନଖେ ଚିର
ଅଙ୍ଗ ତୋ ଚଜର ଆଣିଛୁ କେୟୂର
ବଳୟୁ ସବୁରେ ସଞ୍ଜା ଶିଷ୍ଟ । ୩ ॥

ଅସତୀ ନୁହଇ ଏକ ତନୁ ଦୁଇ
କନ୍ଦୁଥାଅ ପ୍ରୀତି ଅନୁସରି
ଅଙ୍ଗେ ଚବ କ୍ଷତ ମୁଁ ଯେଣୁ ତାପିତ
ଅନୁଭବେ ଜଣା ହେଲା ହରି । ୪ ।

ଅନୃତ ନ କହ ମୋ ଆଗେ ନ ରହ
ତା ଅନୁରାଗ ନୟନେ ଭରି
ଆଣିଲୁ ଖଣ୍ଡିତା ବାଗ ଚତୁରତା
ଶ୍ରୀ ଶ୍ୟାମସୁନ୍ଦର ଦେବ ସୁଖ ।୫।

---

( ଆଠ )

— ପ୍ରୋଷିତଭର୍ତ୍ତୃକା —

( ରାଗ—ଭୈରବ )

॥ ଏକତାଳି ॥

ଅସର ନଶି,
ଆମ୍ଭେଶ୍ୱର ହେଲେ ତାହି ପରବାସୀ
ଅଙ୍ଗ ଦହେ ଶଶୀ,
ଅନ୍ଧାର ନଶୀ ଗୋ ସଜନୀ ! ପିକ ଘୋଷି ॥ ୧ ॥

ଅଣନ ବ୍ୱ ବଷ,
ଅନଳ ଚନ୍ଦନ ଚନ୍ଦ୍ର ଆଶ୍ରୟୁଣ
ଆସିବେ ଜୀବେଶ । ନାହିଁ ଆଶ ॥ ୨ ॥

ଅଳି ସୁମନସ,
ଉପଦ୍ରବ ହେଲା ଘନ ଥିବା ଦେଶ
ଅନଙ୍ଗର ହାସ । ନୋହେ ଲେଶ ॥ ୩ ॥

ଆନ ନାସ୍ତ ରସ,
ଆଣି ମଣି ମନ୍ତ୍ର କଲା କ ହରଷ
ଅତି ଗୁରୁ ବେଶ । କଲା ବଶ ॥ ୪ ॥

ଆଣେଲା ସନ୍ଦେଶ,
ଆଶୁଗ ପର ଯାଇ କେ ସେହୁ ଦେଶ
ଅମ୍ବର ସଦୃଶ୍ୟ । ମୂର୍ଚ୍ଛେ ଶ୍ୱାସ ॥ ୫ ॥

ଅଧିକ ବରସ,
ଆଳାପ ଶ୍ୟାମସୁନ୍ଦର ଦେବ ଭାଷ
ଅନ୍ତେ ପ୍ରୋଷିତେଶ । ସମାଶ୍ରଣ ॥ ୬ ॥

## — ଷଷ୍ଠ କୁସୁମ —

# ଚଉତିଶା କୁସୁମ ଲେଖ୍ଣ

( ଷଗ — କାଳ )

ଅଟେ କୋବିଦ ସୁର ସର୍ବଦ ସୁହୃଦ ଉପାସିକ
ଆଦର କର ଯେ ଗୁଣାକର କାବ୍ୟରେ ସୁବର୍ଣ୍ଣିକ
ଅଚନ୍ତା ଜାଣ ଖଳ ଦୂଷଣ ଦେବାକୁ ବୈପ୍ୟାସିକ
ଆତରେ ରସି ମୁହଁ ତୁଳସୀ ଶ୍ରୀନର ମାନସିକ ॥ ୧ ॥

ଆଖ୍ୟାତ ପୁଂସ ନାରୀ ବିଶେଷ ଲକ୍ଷଣ ଯଥା ସଙ୍ଖ୍ୟ
ଅଛୁ ସମ୍ଭୋଗ ଶୃଙ୍ଗାର ତୁଙ୍ଗ ପୁନ ବିପ୍ରଲମ୍ଭାଖ୍ୟ
ଅସ୍ଥିତ ପୁଣ ଭାବ ଲକ୍ଷଣ ସମ୍ବତେ କର ମୁଖ୍ୟ
ଅଳଙ୍କାରକୁ କର ସାରକୁ ବୁଝିବ କୃତ ମୂର୍ଖ ॥ ୨ ॥

ନାୟିକା ସ୍ୱକୀୟା— ମଧ୍ୟା । ନାୟକ ଅନୁକୂଳ

ପ୍ରବାସାନ୍ତର ରସ । ସମ୍ଭୋଗ ଶୃଙ୍ଗାର

ହର୍ଷ ସଂସ୍କୃର ଭାବ । ରୂପକ ଅଳଂକାର

### — ଗୀତ —

ଅଛ ଆତୁର କହିଁ ଚତୁର ବିଦେଶ କାନ୍ତ ଭଙ୍ଗ
ଆସେ ବସନ୍ତେ ବନ୍ଧୁ ସନ୍ତତେ କୃତ ଅଚଳ ତୁଙ୍ଗ

ଅମ୍ବୁଦ ଆଗମକୁ ସାରଙ୍ଗ ଯେମନ୍ତ ଅନୁରାଗ
ଅନ୍ତରକତ ଉଜର ସ୍ଥିତ ହେଲା ବଲ୍ଲଭ ବେଗ ॥ ୩ ॥

ଆଳି ବଲ୍ଲୋକ ଡାକେ ବାଳକ ନାଶ ନୟନ ଅନ୍ଧ
ଆସିଲେ କାନ୍ତ ହର ପ୍ରେକାନ୍ତ ମାର ବେଦନା ଓଘ
ଅକ୍ଷି ଚଞ୍ଚଳ ପାତ ଅଞ୍ଚଳ ନିଜଗୃଳ ଅର୍ଘ୍ୟ
ଅଶ୍ରୁ ଆନନ୍ଦ ଚପଳେ ପାଦ ଧୋଇଲା ସ୍ୱେଦ ଉର୍ଦ୍ଧ୍ୟ ॥ ୪ ॥

ଆଲମ୍ବ ବେଣୀ ସ୍ଥାପିତ ଆଣି ଉରଜ କୁମ୍ଭେ ପୁନ
ଆଚ୍ଛାଦ ନବ କର ପଲ୍ଲବ ରୁଚିର ବର୍ଦ୍ଧ୍ୟମାନ
ଅନ୍ନତ ଭାଳ କୁସୁମ ଫୁଲ ସୁହାସରେ ଶୋଭନ
ଅନୁରକ୍ତରେ ପରସ୍ପରରେ ରଚନ ସୁବଚନ ॥ ୫ ॥

ଅଟେ ପ୍ରେ ଭାବ ଚହ୍ନିବ ଜବ ହର୍ଷ ସଂବୃତ ଉଚ୍ଛ
ଅବନା ମଧ୍ୟା ସ୍ୱକୀୟା ସିଦ୍ଧା ଛନ୍ଦୋନୁକୂଳ ପାଞ୍ଚ
ଅଳଙ୍କାର ଯେ ରୂପକ ରାଜ ପ୍ରବାସାନ୍ତର ବାଚ
ଆଖ୍ୟା ସଂଭୋଗ ଶୃଙ୍ଗାର ଯୋଗ କୋବଦ ସୁଖ ସଞ୍ଚ ॥ ୬ ॥

ନାୟିକା — ସ୍ୱକୀୟା ମଧ୍ୟା

ନାୟକ — ଶଠ

ଔତ୍ସୁକ୍ୟ ସଂବୃତ ଭାବ

ଆଳରେ ଭଳ କହେ କେ ବାଳ ବଲ୍ଲଭ ମାତ୍ର ରୁଚ୍ଛ
ଆଗତ ରତି ଚହ୍ନ ମୂରତି ଭାଲେ ଅଳତା ସ୍ୱଚ୍ଛ
ଅବଲୋକନେ କୋପ ଜନନେ ଭାଷିଲା ଗଚ୍ଛ ଗଚ୍ଛ
ଆଜ ଯା ପାଶେ ସୁରତି ପାଶେ ବାନ୍ଧିଲା ଦେଇ ବସ୍ତ୍ର ॥ ୭ ॥

ଅବଲମ୍ବରେ ଗତ ପ୍ରେ ଗିରେ ମୋ ପ୍ରାଣ କର ତ୍ୟାଜ
ଅମ୍ବର ଧର ଦ୍ରୁବଳ ପଶ୍ଚାତାପରେ ଯଥା ଆଜ୍ୟ
ଅବଲୋକନ ନ କର ପୁନ ଗତ ସେ ଦେଇ ରୁଜ
ଆତୁର ଚେତେ ବେଳକୁଁ ଅନ୍ତେ ପୀଡ଼ଇ ମନସିଜ ॥ ୮ ॥

ଅଚିରେ କେହୁ ଆସିବ ସେହୁ ଗନ୍ଧ ତ୍ରୈଲୋକ ମାଝ
ଅଟେ ବାରଣ ମନ ବାରଣ ନୋହେ କଦାପି ବୁଝ

ଅନ୍ତର ବ୍ରୀଡ଼ା ଉତ୍ସାହ ଦ୍ବନ୍ଦ୍ୱ ବୋଲେ ତା ହବେ ରସ
ଅଘାତ ପାଇ ଶସ୍ୟ ଭକ୍ଷଇ ପଶୁ ଯଥା ଅବଶ ॥ ୯ ॥

ଅଣନ ବସ ତାପେ ବଶେଷ ଶ୍ରୀଖଣ୍ଡ ଚର୍ଚ୍ଚିମାନ
ଆଶା ଜୀବନେ ନାହିଁ ଭୁବନେ ଦହଇ ପବମାନ
ପ୍ରଙ୍ଗନା ମଧ୍ୟା ସ୍ୱକୀୟା ସିଦ୍ଧା ନାୟକ ଶଠ ପୁନ
ଅଟେ ଔତ୍ସୁକ୍ୟ ସଂଗୃହ ଠିକ ଗ୍ରାବରେ ବଦ୍ୟମାନ ॥ ୧୦ ॥

ନାୟିକା-ପରକୀୟା ଅଭିସାରିକା
ଶଙ୍କା ସଂଗୃହ ଭାବ
ଆକ୍ଷେପାଲଂକାର

— ଗୀତ —

ଆଗତ କଣା ମୁଦ ମନସା କଣାଙ୍କ ପ୍ରେମୋତ୍କଣ୍ଠ
ଅଙ୍ଗେ କସ୍ତୁରୀ ଲେପି ଚତୁସ୍ତ ପିନ୍ଧି ଅସିତ ପାଟ
ଅଭିସାର ସେ କରଇ ବସେ ନାହିଁ ନୂପୁର ରଟ
ଅଣ୍ଡା ନକରେ ପତନ କରେ ନେତ୍ର ଉପୃକ ପୁଟ ॥ ୧୧ ॥

ଆସଇ ଶିଳ୍ପୀକାଷକ କଲ୍ପି ବୋଲନ୍ତି ଥାଇ ପୃଷ୍ଠ
ଅଙ୍ଗନା ଚନ୍ଦ୍ର ନୋହ ଉପ୍ପାନ୍ତୁ କଗି ଅବ'ର ଶ୍ରେଷ୍ଠ
ଅଭିସାରିକା ଅଟେ ପ୍ରେ ଶଙ୍କା ସଂଗୃହ ଭାବ ପାଠ
ଅବଳା ପରକୀୟାଳଙ୍କାର ଆକ୍ଷେପ ବୁଧ ପଠ ॥ ୧୨ ॥

ନାୟିକା—ସ୍ୱକୀୟା ମଧ୍ୟା ମାନନୀ
ନାୟକ—ଶଠ
ବିପ୍ରଲମ୍ଭ ଶୃଙ୍ଗାର
ଆକ୍ଷେପାଳଂକାର

— ଗୀତ —

ଅମରଭରେ ପ୍ରିୟା ଇଣରେ ଜାତ ଭାଷରେ ଜଡ଼
ଅଶ୍ରୁ ନକରେ ଅଭିଷେକରେ ତୋଷଇ କୁଚ ମୂଢ଼

ଆଳ ବେଷ୍ଟିତ × × × × ସେବନେ ମାନକୋଡ଼
ଅନଙ୍ଗ ଦକ୍ଷ ଥାଉ ବିପକ୍ଷ ବଲ୍ଲଭ ରୁଷ୍ଟ ଗୁଡ଼ ॥ ୧୩ ॥
ଅତ ପିଶୁନ ବାଣୀ ଲସୁନ ଗନ୍ଧ ଚରିତେ ଦୃଢ଼
ଅବଶ୍ୟ ଧରେ ଯେ ଦୁଃଖ ସହିବେ ନାରୀ ହୋଇ ବେଢ଼
ଆଶାନ୍ତ ହୃଦୟର ଦୁର୍ବୁଦ୍ଧ କଲେ ସାପୁଙ୍କ ଦାନ୍ତ
ଅଧିକ ଛପି ତେଜେ ଅଦ୍ୟାପି ଯେ ବ୍ରହ୍ମଧ୍ୟାନ ଶାନ୍ତ ॥ ୧୪ ॥
ଅମ୍ଳ ସ୍ୱଭାବ ଅଟଇ ଆମ୍ବ ଅନ୍ତରେ ସାଜ ଜାଣ
ଆନ କ ଶୁଣା ମୀନ ଲକ୍ଷଣା କଷରେ ସେ ନିପୁଣ
[ଅହି ବେଷ୍ଟନ ହେଲେ ଚନ୍ଦନ ନ ଛାଡ଼େ ଶୀତ ଗୁଣ][୨]
ଅତ କଠିନ କରକା ପୁନ ମଧ୍ୟରେ ଦ୍ରବ ଶୁଣ ॥ ୧୫ ॥
ଆଦର ବନା ପଣ ନବୀନା ଗଲ୍ଲ ତା ପ୍ରେମ ଚ୍ୟୁତ
ଅବଧାରିତ ନ କଲୁ ହିତ ସେ ଫଳ ଅନୁଭୂତ
ଅଟେ ସ୍ୱକୀୟା ମଧ୍ୟା ପ୍ରେ ପ୍ରିୟା ମାନଶୀ ଶଠ କାନ୍ତ
ଆକ୍ଷେପ ଅଳଙ୍କାର ଶୃଙ୍ଗାର ବିପ୍ରଲମ୍ଭରେ କାନ୍ତ ॥ ୧୬ ॥

ନାୟିକା-ଖଣ୍ଡିତା-ମଧ୍ୟା-ଧୀରା-ଅଧୀରା

ଈର୍ଷ୍ୟାମାନ — ସଞ୍ଚାରି ଭାବ

ନାୟକ — ଶଠ

ଅପହ୍ନବାଳଙ୍କାର

— ଗୀତ —

ଅଧର ମୁଖେ ପ୍ରିୟା ସମ୍ମୁଖେ ପ୍ରବେଶ ପ୍ରାଣନାଥ
ଅଙ୍ଗରେ ନଖ ରଦନ ଲେଖ କେଶ ବସନ ଶ୍ଳଥ
ଅସହମାନ ମାନସୀ ମାନ ସଂଭ୍ରତ ହୃଦ ପଥ
ଆଳାପଚପ୍ରୟେ ରତ ଜୟ ଲେଖନ ଯଥା ଅର୍ଥ ॥ ୧୭ ॥

---

୧ । (କ) ଅମ୍ବ
(ଗ) ଅମ୍ବ
୨ । (କ) ପୋଥିରେ ବନ୍ଧନୀ ଅନ୍ତର୍ଗତ ଅଂଶ ନାହିଁ ।

ଅଳକ୍ତ ରାଗ ସେ ପ୍ରିୟାରାଗ ପୂର ଉଚ୍ଛୁଳେ ହୃଦ
ଅନବକାଶ ମୋ ଭାବ ଲେଶ ହେବାକୁ ଆସ୍ପଦ,
ଅଙ୍ଗ ସରସ ନ କର ରସବଶୀର ହେବ ଖେଦ
ଅତି ବିନତି ଶୁଣି ତା ପତି ଧରେ ପଲ୍ଲବ ପାଦ ।। ୧୮ ।।

ଅନ୍ତେ ବିନମ୍ର ହେନ୍ନ ସେ ନମ୍ରନାନ୍ତେ ଚୁମ୍ବିଁଲ ବଧୂ
ଅନ୍ତର ମାନ ହୃଦ ସମ୍ମାନ ଯଥା ଶରଦ ବିଧୁ
ଆସ୍ୱାଦକୁ ସେ ପେଲୁଡ଼େ ରଭସେ ମାନିନୀ ଓଷ୍ଠ ମଧୁ
ଅଜ୍ଞ ନ ଜାଣି ଭୁଲଇ ପ୍ରାଣୀ ପିୟୂଷ ସ୍ୱାଦୁ ସାଧୁ ।। ୧୯ ।।

ଅଳି ସେ ଦନ୍ତ ଚୁମ୍ବିଲା ଗଣ୍ଡ ସୁମଧୁକ ସ୍ତନ
ଅଧର ସୁଧ ପାନରେ ବାଧା ଦଶ ଦେଲ ସୁମନ
ଅଟେ ଖଣ୍ଡିତା ମଧ୍ୟା ବନିତା ଧୀରା ଅଧୀରା ପୁନ
ଅପନ୍ନ ବାଲଙ୍କାର ପେଶଲ ଶଠ ଈରଷ ମାନ ।। ୨୦ ।।

ନାୟିକା—କଳହାନ୍ତରିତା

ନାୟକ — ଶଠ । ବିପ୍ରଲମ୍ଭ ଶୃଙ୍ଗାର

ଦୈନ୍ୟ ସଞ୍ଚାରି ଭାବ । ଜାତି – ଅଳଙ୍କାର

—ଗୀତ—

ଅଙ୍କିତ ରତି ଚିହ୍ନରେ ପତି ଚୁମ୍ବିଁ କର୍ବୁର ରୂପ
ଅଧୋମୁଖରେ ମନ୍ତ୍ରୀ ନଖରେ ଟିକଇ ଲଭି ତାପ
ଅଙ୍ଘ୍ରିକ ବନ୍ଦ କଲ୍ପିଲ ବନ୍ଦୀ ପଟରେ ସୁପ୍ରଲାପ
ଅବଜ୍ଞା କରି ସ୍ତୁତେ ନାରୀ ଛାଡ଼ି ନ ଦେଲ କୋପ ।। ୨୧ ।।
ଉକ୍ତି ପରୁଷ କଲ୍ପିଲ ଭାଷ ଦୁଷ୍ଟାଇ ପାଦ ଗୁଳ୍ଫ
ଆସେ ନବଶେ ଚମ୍ପକ ପାଶେ ଯାଇ କି ସେ ଦ୍ୱିରେଫ

---

୧ । (ଭ) ଘଟରେ

ଅନ୍ତର ପତି ହଜିଁ ଯୁବତୀ ଆକୁଳ ହୃଦ ଗୁମ୍ଫ
ଆପେ ହୁଡ଼ିଲା ନ ଦେଖାଇଲା ହାସ ସାଗର କମ୍ପ ।। ୨୨ ।।

ଅହୋ ଦଇବ ବାଳିଶ ଇବ କି ବୁଦ୍ଧି ନଦେଲା ଭବ
ଅକର୍ତ୍ତୁଁ ଧାରେ ଖେଦ ସାଗରେ ବୁଡ଼ିଲା ସୁଖ ନାବ
ଆଳିରେ ନତ ହୋଏ ଯୁବତୀ ଯେବେ କେ ଅଛି ଦେବ
ଅଳକ ପୁରେ ଯିବାର ଖରେ ଦେହେ ଭିଜିବ ଗାବ ।। ୨୩

ଅନୁତାପିତ ଯେ କଳହାନ୍ତରିତାର ଦୂର ଦମ୍ଭ
ଆମ୍ଭ ଈଶ୍ୱର ଶଠ ବେଭାର ଶୃଙ୍ଗାର ବିପ୍ରଲମ୍ଭ
ଅଧିକ ଧନ୍ୟ କେବଳ ଦୈନ୍ୟ ସଂଚାରି ଭାବ ଶୁଭ
ଅଟେ ପ୍ରଖ୍ୟାତ ବୃତ୍ତି ଯେ ଜାତି ଅଳଙ୍କାରରେ ଶୋଭ ।୨୪।

ନାୟିକା – ମୁଗ୍ଧା ସ୍ୱକୀୟା । ନାୟକ-ଶଠ
ହର୍ଷ-ସଂଚାରି ଭାବ । ସୂକ୍ଷ୍ମାଳଂକାର

—ଗୀତ—

ଆନ ଯୁବତୀ ରମଇଁ ପତି ଯେନଇଁ ମନୋରମ
ଆଳିରେ ବାଳ ରହରେ ଭାଳ ଲଭଇ ବାଧା ଶ୍ରମ
ଅନ୍ତିକେ ପତି ଦେଖି ସଂସ୍ଥିତ ଉରଜେ ମୁଖ ସୋମ
ଆଲେଖ ପାଦ ଅଙ୍ଗୁଳି ଷୋଦ ଲେଖଇ ଜାତ ତମ ।। ୨୫ ।।

ଆଭୂରେ ପତି ବୃନ୍ତ ଭାରତୀ ଭାବଗର୍ଭ ବନୟ
ଅଙ୍ଗନା ରୋମ ହରଷ ହେମ ଘନ । ନଭ କାୟ
ଅନ୍ତେ ଆନନ୍ଦ ଦିଷ୍ଟାୟା ବୃନ୍ଦ ସ୍ମିତ କଳା ଉଦୟ
ଅପାଙ୍ଗେ ଚାହିଁ ସକମ୍ପ ଦେହୀ ମଣ୍ଡଳରେ ଚନ୍ଦ୍ରୟ ।। ୨୬ ।।

ଅଟେ ସ୍ୱକୀୟା ମୁଗ୍ଧା ଯେ ପ୍ରିୟା ଲକ୍ଷଣ କର ସାର
ଆମ୍ଭେଶ୍ୱରର ଶଠ ବେଭାର ଯେ ସୂକ୍ଷ୍ମ ଅଳଙ୍କାର
ଅନ୍ତରେ ଭାବ ଅଟେ ଯେ ଭାବ ହର୍ଷ ସଂଚାରି କାର
ଅତି କୋବିଦ ଯେ ରସବିଦ କଣ୍ଠରେ ହେବ ହାର । ୨୭ ।

ନାୟିକା – ସ୍ୱକୀୟା-ପ୍ରଗଲ୍‌ଭା । ନାୟକ-ଅନୁକୂଳ

ସମ୍ଭୋଗ ଶୃଙ୍ଗାର । ଯୁକ୍ତି ଅଳଂକାର

—ଗୀତ—

ଅଟ୍ଟହାସରେ ପ୍ରିୟା ପାଶରେ କେ ପ୍ରିୟତମା ଲୋକ
ଆଳାପ ରସେ ରତି ରଭସେ ଶୃଙ୍ଗାର କୁତୁହଳ
ଆଲୋକ ଶୁକ ରଜାକୁ ଶୁକ ସେ ବାଣୀ ପାଠ ମୂଳ
ଅଢ ପ୍ରବେଶେ ସନ୍ତତ ଭାଷେ ଗୁରୁଜନ ସଂକୁଳ ।। ୨୮ ।।

ଅତି ଆକୁଳ ବ୍ରୀଡ଼ାରେ କୁଳବଗର ଅନୁଭବ
ଆସ୍ୟରେ ଛଦ୍ମ ନବେଶେ ପଦ୍ମ ରାଗ ଚାଟଙ୍କ ଜବ
ଅଟେ ସ୍ୱକୀୟା ପ୍ରଗଲ୍‌ଭା ପ୍ରିୟା ଅନୁକୂଳ ଯେ ଧବ
ଅଳଙ୍କାର ଯେ ଯୁକ୍ତ ନିଶ୍ଚୟେ ଶୃଙ୍ଗାର ଭୋଗ ଭାବ । ୨୯ ।

ନାୟିକା — ସ୍ୱାଧୀନ ଭର୍ତ୍ତୃକା

ନାୟକ—ଅନୁକୂଳ

ପର୍ଜବାଳଙ୍କାର

— ଗୀତ —

ଅନଙ୍ଗ ବଶେ ପ୍ରଦୋଷ ଶେଷେ ରମଣୀ ଭାବେ ବଶ
ଅତୁରଛନ୍ନ କରଣ ମନ ପୂରେ ମିଳନ୍ତି ଛଣ
ଅଗି କାମର ଶ୍ରେଣୀ ଭ୍ରମର ବେଣୀକି କଳ୍ପ କେଶ
ଅକଟା ଆଦ୍ୟ ପ୍ରେମ ସଂବାଦ ଚପରେ କୃତ ବେଶ ।। ୩୦ ।।

ଅତି ବଶ୍ରମ୍ଭ ବାଣୀ ଆରମ୍ଭ ଅଧରେ ତୋ ପିୟୂଷ
ଅଶନ ବନା ଆନନ ବନା ମଧୁର ଯେତେ ବଷ
ଅପାଙ୍ଗ ଅନୁଗ୍ରହ ତୋ ମନୁ ନ ଚେଜବୁ ବଶେଷ
ଆଶା ଅନେକ ଯଥା ସୂଚକ ତୋପ୍ୟ ଦେଶ ହରଷ ।। ୩୧ ।।

ଅଳି ସଦୃଶ ଚୁମ୍ବେ ବିଶେଷେ ତା ମୁଖ ତାମରସ
ଆଶ୍ଳେଷ ପ୍ରେମେ ରଚେ ସଂଭ୍ରମେ ପୁଲ ସାତ୍ୱିକ ରସ
ଅନେକ ବିଧି ସୁରତ ସିଦ୍ଧି ଯେମନ୍ତେ ଇଚ୍ଛୁ ଦିଶ
ଅସମାନରେ ଆନ ଆନରେ ରସଦା ସେ ସରସ ।। ୩୨ ।।

ଆପଣା ଗୁପ୍ତ ତଳପ ଗୃହ ଆରମ୍ଭେ ବନ୍ଧ ବ୍ୟୂହ
ଆସି ବିଚ୍ଛେଦେ କୁକ୍‌କୁଟ ନାଦେ ସେ ସୁଖ ମହାରୁହ
ଆରମ୍ଭେ ସ୍ମୃତି ମିଶରେ ପ୍ରୀତି ଯେମନ ଉଦଧି ନୁହ
ଅଭୂର ପତି ପାଂଶୁଂ ଯୁବତୀ ଉଠନ୍ତେ ବୋଲେ ରହ ।। ୩୩ ।।

ଅନୁକୂଳ ସେ ପତି ନ ଦିସେ ଆନ ଗାମାଙ୍କେ ବକ୍ଷ
ଅଟେ ସ୍ୱାଧୀନଭର୍ତ୍ତୃକା ମନ ମୋହିନୀ ପରତକ୍ଷ
ଅତି ଚତୁର୍ଥି ବୁଝ ସେ ପର୍ଜ ବାଳଙ୍କାରକୁ ଦକ୍ଷ
ଅନଘ କର ଶ୍ୟାମସୁନ୍ଦର ଦେବଙ୍କୁ ପଦ୍ମ ଅକ୍ଷ ।। ୩୪ ।।

— ସପ୍ତମ କୁସୁମ —

# ଢଗ କୁସୁମ ଲେଖନ

( ଦଣ୍ଡର ବୃତ୍ତେ )

ଆଗତ ପ୍ରାତ
ରଜନୀ ପ୍ରାନ୍ତ
ଅର୍କ ହୋଇଥିଲା ସାଗରେ ଯାତ
ଆଣେ ଉଦ୍ଧର
କରକୁ ଧର
ଅନୁରାଗେ ଅଢ ବମ୍ଭ ଅଧର ।। ୧ ।।

ଶେଷ —
ଅଧିକ କର
ପ୍ରତାପ କର
ଅପ୍ରଖ୍ୟ ଲୁଷ ଲୁଷ ନାସ୍ପକର
ଆମ୍ଭେଟି କଳି-
ଭୃକ କାକ ବୋଲି
ଆନନ୍ଦେ ହସେ ସୁମନ ଆବଳି ।। ୨ ।

ଅମ୍ବୁଜ ନଳ
ଭ୍ରମର ଗୁଳ
ଅଂଶୁ ବଦ୍ଧବସ୍ତୁ ଜାମୁ କା ଫୁଳ
ଅନଙ୍ଗ ଧାଇଁ
ଦେଲା ପୁଂଠାଇ
ଅଧିକେ X ଶକୁ ଧ୍ୱନ ସ୍ଫୁରଇ । ୩ ।

ଅଧ୍ୱେ ପ୍ରବାସୀ
ଚମକ ଉସି
ଅପହୃତ ନିଦ୍ରା ହୋଇଣ ଖଷି
ଅବଳା ସ୍ତନ-
ଯୁଗ ଈଶାନ
ଅଙ୍କେ ଶରଣ ଗଲା ନୋହ୍ୱେ ସାନ ॥ ୩ ॥

ଆଦିତ୍ୟ ହର
ନର ପୂର୍ବେ କର
ଅନ୍ଧ ହିରଣ୍ୟକଶିପୁ ବଦାର୍ଣ
ଆଲୋକ ଖେଦ
ନିଶାଚର ବୃନ୍ଦ
ଅଶେଷେ ବିସ୍ତାରେ କମଳାନନ୍ଦ ॥ ୪ ॥

ଅର୍କ ବାମନ
ବଳି ତାପନ
ଅଙ୍ଘ୍ରି ବିସ୍ତୃତ ପଦ ବ୍ୟାପି ଶୋଭନ
ଆରମ୍ଭେ ସ୍ତୁତ
ଦ୍ୱିଜ ବଚନ୍ତ
ଅଧିକ କୋଳାହଳ ଛଳେ ଭ୍ରାନ୍ତ ॥ ୫ ॥

ଅଟେ ସମ୍ରାଟ
ପ୍ରଭାତ ସ୍ଫୁଟ
ଅତେଜ ପ୍ରଦୀପ ସାମାନ୍ୟ ଘଟ
ଆପଢ଼ ବଦ
ଚନ୍ଦ୍ର ବିଚ୍ଛେଦ
ଆମସ୍ତକୁ ହର ଦେଲା ପ୍ରମାଦ ॥ ୬ ॥

ଆତୁର ମତ
କେ ପ୍ରୋଷିତା ଯତ
ଅବଧି ଗାର ଗଣିଲା ଝୁଟିତ

ଅଛୁ ବଦ୍ଧତ
ଚନ୍ଦ୍ର ବସ୍ଥିତ
ଅଗାର କେଷ୍ଟ ହେବ ପାଙ୍ଗ ଦଉ ।୮।।

ଆନ ରମାର
ପୂର୍ବେଲ୍ଲ ଗାର
ଆନନ୍ଦ ସଂଭ୍ରମେ ବେଶ ଚପୂର
ଆନ କେ ବାଳ
ସଂଶୟ ଭାଳ
ଆଖି ବଳଭୃକେ ଦଅଇ ବଳ ।।୯।।

ଅଟେ ନୂତନ
କେ ରମା ରତନ
ଆମ୍ଭେଶ୍ୱର ନ ଶୁଣିଛୁ ବଚନ
ଆରମ୍ଭେ ଗୃହୁଁ
ବଚନ ପିଠୁଁ
ଅରଣ୍ୟ ପ୍ରିୟର ହରଷ ଭୂଠୁଁ ।। ୧୦ ।।

ଅସଇ ଡ଼ଠେ
କେ ଜବାଓଷ୍ଠୀ
ଅବମାରେ ଯ ହିଁ ପଦ୍ମେ ଲେଟି
ଆଣିଛୁ ଲୁଟି
କଷ ଯ ଦୃଷ୍ଟି
ଅଶେଷେ କୋକନଦ ଶୋଭା ସୃଷ୍ଟି ।।୧୧।।

ଅଳନ୍ଦେ ବସି
କଇଁ ବଦେଶୀ
ଆପଣା ପ୍ରିୟା ଶୋଭା ନେବ ହସି
ଅଗାଧ ଚାପ

---

୧ । (କ) ଚଶା (?)

ସାଗର ଆପ
 ଅନେ ବୁଡ଼ାଇ ଟା ଛବ କଳାପ ॥ ୧୨ ॥

ଅଭେଟ ଦବା
 କେ ସ୍ୱାଧୀନ ଧବା
  ଆକଟ ଗୁରୁଜନ ସଂକୁଳ ବା
   ଅବଧି ସ୍ଥାନ
    ସେ କଷ୍ଟଲ ଧନ
     ଆସିବୁ ଦେଖିବ ଚନ୍ଦ୍ରବଦନ ॥ ୧୩ ॥

ଅସ୍ୟ ଚୁମ୍ବଇ
 କେ ବ୍ୟାକୁଳ ହୋଇ
  ଅନ୍ତକ ଚେକବାର ଇଚ୍ଛା ନୁହଇ
   ଅବ୍ଧିରେ ଦେଡ଼
    ନ ମରେ ବୁଡ଼
     ଅର୍କ ବାଡ଼ବରେ ନ ଯାଇ ଦୋଡ଼ ॥୧୪॥

ଅକୂଳ ମତ
 କେ ଉଦତେ
  ଅଗେ କହେ ସ୍ୱମା ରହ ନବଗିଁ
   ଆଖ୍ୟାତ ସତ
    ଜନେ କମ୍ବଦନ୍ତୀ
     ଆଗତ ଗତରେ ହେଉଛୁ ଖ୍ୟାତ ॥ ୧୫ ॥

ଆଳାପେ ଛଳ
 ଗୋ ଦଶ ମଣ୍ଡଳ
  ଅପହୃତ ହରିଣକୁଁ ମୈଥିଳୀ
   ଅଚଳ୍ପା ଶିର
    ହେକ ପିବାର
     ଆହେଗୀ ସୁଧାକୁମ୍ଭ ପୟୋଧର ॥୧୬॥

ଆଜ କେ ପତି
ଘୁରେ ଯୁବତୀ
ଅନକୂଳ କରି ଯିବା ପାହାନ୍ତି
ଆଦ୍ୟରୁଁ ପ୍ରୀତି
ଯେ ଉପପତି
ଅଶ୍ରୁଧାରେ ସେ ବେନ ଉର ତନ୍ତି ॥୧୭॥

ଅଳପ ରାତି
ଯାଏଁ ଅଗତି
ଅଭେଦରୁଁ ହୃଦ ହୋଏ କରତି
ଆସି ବିପଦ
ପ୍ରୀତି ବିଚ୍ଛେଦ
ଅଧିକ ସେଥୁଁ ନୋହେ ଶିରଚ୍ଛେଦ ॥୧୮॥

ଅଜର ପର-
ସ୍ୱାରଥେ କର
ଆଲୋକ ସେବା ପ୍ରଂସେ ଅନୁସର
ଅଳି ଚମ୍ପକ
ଆଶା ଅନେକ
ଅକରୁଣାରୁଁ ନ ଛୁଏଁ ପ୍ରଣ୍ଟକ ॥ ୧୯ ॥

ଅଙ୍ଗନା କନ୍ତ
ଶୂଳେକ ରନ୍ତୁଁ
ଅଛନ୍ତି ଶଖାମାନେ ଜଗି ରନ୍ତି
ଅବକାଶ କି
ଅଛି ଅଳିକ
ଅଙ୍ଗ ଭିନ୍ନ ହେବ କଲେ ପ୍ରୀତିକ ॥୨୦॥

ଆପଗା ଥର,
କେ ଜଗି ଚତୁର
ଅଙ୍ଗନାରେ କହେ ଦୁଃଖ ବିସ୍ତର

ଆଜ ରଜନୀ
ଗୋ ଜଗି ସଜନୀ
ଅଙ୍କେଠୁଁ ବାଧା ମଦନ ଜନ । ୨୧ ।

ଆନ କେ ସବୁ
ପ୍ରଭରେ ରବୁ
ଅଧାସ୍ତ ରମଣୀ ପୁରତେ କବୁ
ଅନୁଶରଣ
ଗୋ ସ୍ୱେବୁ କାରଣ
ଅଳତା ଲେଖିବ ରଙ୍ଗ ଚରଣ । ୨୨ ॥

ଅବଳା ଶୁଣି
ଅନୁରଗିଣୀ
ଅପାଙ୍ଗେ ବୃନ୍ଦୁଁ ସ୍ମିତ ଜାତ ପୁଣି
ଅଣିମା ଅ.ଦ୍ଧ'
ସୁଖ ସମ୍ବାଦ
ଅବଚନେ ଦେଇଲେ ସମ୍ବାଦ ॥ ୨୩ ॥

ଅନୁସର କେ
କହେ ଆଡଙ୍କେ
ଅନଙ୍ଗେ କହଇ ଦୂତ ଅନ୍ତକେ
ଅଭାର୍ଯ୍ୟ ସବୁ
ସେ କହେ କ ନାବୁଁ
ଅନୁଗ୍ରହ କବା ବନ୍ଧୁର ନୋବୁ । ୨୪ ।

ଅଠେ ବାମିନୀ
କଉଁ କାମିନୀ
ଅବଚନେ ପୁହାଇଲେ ଯାମିନୀ

---

୧ । (ଗ) ସମ୍ବଦ

ଅଧୀର ଈଶ
ବୋଲେ ନାଗେଶ
ଅନୁରାଗିଣୀ ଦେଖ ପୂର୍ବ ଦଶ ।। ୧୫ ।।

ଆନ ଉଚିତ
ରାଗ କଞ୍ଚିତ
ଅବଳା ଉଦୟ ନ କରେ ଚିତ୍ତ
ଅଧିକ ରଟ
ରଚେ କୁକ୍‌କୁଟ
ଅବାଣୀ ବୀଣା ବାଣୀର ପ୍ରକଟ ।୧୬।।

ଅକ୍ଷୀଣ ମାନ
ହେଲା ଅମାନ
ଅଶେଷେ ଦଶା କ୍ଷୀଣ ବିଦ୍ୟମାନ
ଆସ୍ୟ କମଳ
ନୋହେ ବିମଳ
ଅମ୍ବୁଜ ବିକଶିତ ପରିମଳ ।। ୧୭ ।।

ଅଗାରୁଁ ଜାର
କେ ହଉଁ ବାହାର
ଆସି ଧୃତ ରାଜପୁରୁଷ ଦ୍ୱାର
ଅସି ବିକୋଷ
ଦେଖାନ୍ତେ ତ୍ରାସ
ଅନ୍ତେ ସ୍ମରେ ରମାର ଅଭିବେଶ ।୧୮।

ଅଦ୍ୟାପି ସେହି
ସ୍ମରଣା ସହି
ଅମୁକ୍ତ କୁନ୍ତଳ ପୃଷ୍ଠରେ ଶୋହି
ଅନଙ୍ଗ ଇଷ୍ଟି
କୁନ୍ଦନ ଯଷ୍ଟି
ଅସିତ ଭ୍ରମର ଲୋଳ ପ୍ରେ ଦୃଷ୍ଟି ।୧୯।।

ଅଧିକେ ଝଳ
ଚାଟଙ୍କ ଚଳ
ଆଚ୍ଛିତ ଗୁରୁ କବ ହେମ ଦୋଳ
ଆସ୍ୟରେ ସ୍ୱେଦ
ବନ୍ଦ ମହିରନ୍ଦ
ଅଳି ନେଷ ମୋହେ ସେ ଅରବିନ୍ଦ ।।୩୦।।

ଅଦ୍ୟାପି ପୁନ
ସ୍ମରଣା ମନ
ଅଟେ ହେମ ରମ୍ଭା! ଶୋଭା ଜଘନ
ଅତନୁ ବାଟେ
କର୍ମେ ନରଟେ
ଆଚରନ୍ତେ ମତ୍ତେ ପୁରୁଷ ରତେ ।।୩୧।।

ଆସେ କେ ରମା
× × ×
ଅଭଙ୍ଗ ବେଶ ଅକ୍ଷତ ସୁଷମା
ଅଦ୍ଭୁତ ସ୍ୱାମୀ
ବେଢ଼ି ସଜନୀ
ଅଳି ଚୁମ୍ବି ନାହିଁ ଫୁଟ ପଦ୍ମିନୀ ।।୩୨।।

ଆମ୍ରେଶ୍ୱର କ
ଅଟଇ କେକୀ
ଅଥବା ମାନିନୀ ହେଲୁ ବିଲୋକି
ଅବଳା କହି
ପ୍ରେମନ୍ତ ନୋହି
ଅଟନ୍ତି ଚଟକ ଛଟକ ସେହି ।।୩୩।।

ଅଛି ବିଶେଷ
ଉପନା ଦୋଷ
ଆଲୋକ ଭୂଲା କୋମଳା ନିବାସ

ଅତି ଅସ୍ଥିର
 କଳା ସଂଗ୍ରର
  ଅନାଦର ଯେଣୁ କନ୍ୟା ବଗ୍ରର ।। ୩୪ ।।

ଆସେ କେ ମଧୁ-
 ଶତ୍ରୁନୁ ବଧୂ
  ଅସ୍ୱାଦନ୍ତି ପ୍ରିୟ ଅଧର ମଧୁ
   ଅନନ୍ତ ପୂରିତ
    ସେବ୍ୟ ଚରିତ
     ଆମଜ୍ଜନ ହୋଇ ଭାବ ସରିତ ।। ୩୫ ।।

ଆଲୋକେ ଦଶ
 ଦିଶଇ ଈଶ
  ଅକ୍ଷି ତ୍ରିତମା ଦିଶନ୍ତି ବିଶେଷ
   ଆସି ବପୁସୀ
    ବେଢ଼ିଲେ ହସି
     ଅଦ୍ରି କୁଣ୍ଡଳ ପାଣିଂଟେ ଭାସି ।। ୩୬ ।।

ଅମେ କେ ପୁଂସ
 ଶିରେ ବିଶେଷ
  ଉଲକ୍ତ ଦେଖି ପରିହାସି ହାସ
   ଅରୁଣ ଜାଳ
    ସ୍ଥଳ କମଳ
     ଆମନ୍ତ୍ରନ ଗନ୍ଧ ଚୁଲ ମଞ୍ଜୁଳ ।। ୩୭ ।।

ଅଙ୍କିତ ରତି
 ଚିହ୍ନ ମୂରତି
  ଆସନ୍ତି ଯେ ବୃନ୍ଦାବନୁ ଦମ୍ପତି
   ଅଭ୍ର ଶରୀର
    ବିଦ୍ୟୁ ରୁଚିର
     ଆଧାନ ଶ୍ୟାମସୁନ୍ଦର ଦେବର । ୩୮ ।

## — ଅଷ୍ଟମ କୁସୁମ —

# ସାଢ଼ି ମନାସ ଲେଖନ

( ରାଗ – କେଦାର )

ଅଛୁ ଜଗନ୍ନାଥ ପଡ଼
ଅଧିକ ବସନ୍ତ ଧଡ଼ି
ଅଟନୁ ମଞ୍ଜୁଳ ନକ୍ଷତ୍ର ଭୂଷଣ ଯେ,
ଚନ୍ଦ୍ରୋଦୟ ପଡ଼ ସାଢ଼ି ॥ ୦ ॥

ଅମ୍ବର ଯେ ଚାରବଳ
ଅଛି ଦିବ୍ୟ ହଂସାବଳି
ଅଧିକ ସୁନ୍ଦର ସୁନ୍ଦର ମଣି ଯେ,
ହର ଗଜରାରେ ଝଳି । ॥ ୦ ॥

ଅଛି ରମ୍ୟ ଫୁଲ ପଡ଼
ଅମ୍ବର ଯେ କାହ୍ନୁ ଛଡ଼ି
ଅବଳା ମୋହଇ ଭ୍ରମର ମାଳା ଯେ
ସଂଖ୍ୟା ଏକାଦଶ ସାଢ଼ି ॥ ୧ ॥

ଅଛି କଳା ବଡ଼ ଧଡ଼ି
ଅମ୍ବର ନରେନ୍ଦ୍ର ଛଡ଼ି
ଅଛି କଳାମେଘି ମନ୍ଦାର ଧଡ଼ିଂ ଯେ
ଚାରବଳ ଫୁଲ ଛଡ଼ି ॥ ୦ ॥

ଅମୂଲ୍ୟ ବସନ୍ତ ଧଡ଼ି
ଅଛି ଦିବ୍ୟ କାହ୍ନୁ ପଡ଼ି

---

୧ । (ଗ) ଧୋଢ

ଅତୁଲ୍ୟ ଅମୂଲ୍ୟ କଳା ଟୈମିର ଯେ,
ନକ୍ଷତ୍ର ଭୂଷଣ ସାଢ଼ି ॥ ୦ ॥

ଅଛୁ ବିଦ୍ୟାଧର ପଢ଼ି
ଅସମ କ୍ଷୀରୋଦ୍ର ପଢ଼ି
ଅମ୍ବର ରୁଚିର ଭ୍ରମର ମାଳା ଯେ
ଦୋମୁଖୀ ସୁଙ୍ଗୀନ ସାଢ଼ି ॥ ୨ ॥

ଅଛୁ ସାଢ଼ି ସୁନା ଜରି
ଅମୂଲ୍ୟ ରଙ୍ଗ ଟୈମିରି
ଅଛୁ କଳାମେଘି ନକ୍ଷତ୍ର ଭୂଷଣ ଯେ
କ୍ଷୀରୋଦ୍ର ପଢ଼ି ଚୁନେର ॥ ୦ ॥

ଅମୂଲ୍ୟ ଦୋମୁଖୀ ସାଢ଼ି[୧]
ଅଛୁ ବୀରଭଦ୍ର ପଢ଼ି
ଅତୁଳ ଅମ୍ବର ଚନ୍ଦ୍ର ଉଦୟ ଯେ
ଦିବ୍ୟ ରୁପା ଜରି ସାଢ଼ି ॥ ୦ ॥

ଅଛୁ ସାଢ଼ି କାନ୍ତି ପଢ଼ି
ଅଟେ ବିଦ୍ୟାଧରି ପଢ଼ି
ଅଧିକ ରମ୍ୟ ରାମଚନ୍ଦ୍ର ପଢ଼ି ଯେ,
ତ୍ରୟୋଦଶ ସଂଖ୍ୟା ସାଢ଼ି ॥ ୩ ॥

ଅମ୍ବର ଯେ ତାରାବଳି
ଅଛୁ ଦିବ୍ୟ ହଂସାବଳି
ଅଦୂଷଣ ବାସ ନକ୍ଷତ୍ର ଭୂଷଣ ଯେ,
ବ୍ରହ୍ମକାମୀ ପଦ୍ମାବଳି ॥ ୦ ॥

ଅମୂଲ୍ୟ ନରେନ୍ଦ୍ର ପଢ଼ି
ଅଛୁ ରୁପା ଜରି ସାଢ଼ି
ଅଧିକ ରମ୍ୟ ରାମଚନ୍ଦ୍ର ପଢ଼ି ଯେ,
ଉଜ୍ଜ୍ୱଳ କ୍ଷେରୋଦ୍ର ପଢ଼ି ॥ ୦ ॥

---

୧ । (କ) ଏହି ଧାଡ଼ି ନାହିଁ

ଅଛି ଦିବ୍ୟ ମୁକ୍ତା ପଡ଼
ଅମ୍ବର ସୁଭଦ୍ରା ପଡ଼
ଅତୁଳ ରୁଚିର ସୁଚିର ବାଉ ଯେ,
ଯେନ ସୁନା ଜରି ସାଢ଼ି ॥ ୪ ॥

ଅମୂଲ୍ୟ ହରି ଗଉଣ
ଅଂଶୁକ ରଙ୍ଗ ଝିମିର
ଅତୁଳ ମଞ୍ଜୁଳ ନକ୍ଷତ୍ର ଭୂଷଣ ଯେ,
ଦିବ୍ୟ ସାଢ଼ି ରୁପା ଜରି ॥ ୫ ॥

ଅଛି ଦିବ୍ୟ ଫୁଲ ପଡ଼
ଅମୂଲ୍ୟ ସିନ୍ଦୁରିଆ ସାଢ଼ି
ଅମ୍ବର ତାରା ଚନ୍ଦ୍ର ପାଟ ପ୍ରକଟ ଯେ,
ଚିରି ବିଦ୍ୟାଧର ପଡ଼ ॥ ୬ ॥

ଅଛି ପଦ୍ମାବଳି ସାଢ଼ି
ଅତି ରମ୍ୟ ମୁକ୍ତା ପଡ଼
ଅଂଶୁକ ଅତୁଳା କଳା ଝିମିର ଯେ,
ସଂଖ୍ୟା ଯେକାଦଶ ସାଢ଼ି ॥ ୭ ॥

ଅଛି ବୀରଭଦ୍ର ପଡ଼
ଅଟେ ଯେ ସୁଭଦ୍ରା ପଡ଼
ଅଧିକରେ ରମ୍ୟ ନକ୍ଷତ୍ର ଭୂଷଣ ଯେ,
ତାରାଚନ୍ଦ୍ର ପାଟ ସାଢ଼ି ॥ ୮ ॥

ଅତୁଳ ଯେ ମୁକ୍ତା ପଡ଼
ଅଛି ଜଗନ୍ନାଥ ପଡ଼
ଅମ୍ବର ଭ୍ରମର ମାଳା ମନୋହର ଯେ,
ସ୍ଥେଚ କଳା ବଡ଼ ଧଡ଼ି ॥ ୯ ॥

ଅମୂଲ୍ୟ ଦୋମୁଖୀ ସାଢ଼ି
ଅଛି ରାମଚନ୍ଦ୍ର ପଡ଼

ଅସମ ସୁଷମ ଲକ୍ଷ୍ମୀ ବିଳାସୀ ଯେ,
ଯେକାଦଶ ସଂଖ୍ୟା ସାଢ଼ି ।୨ ॥*

— ଗୀତ —

( ରାଗ – ଗଡ଼ମାଳିଆ )

ଆଳସ ହଂସ ଗମନା
ହଂସାବଳି ପାଇଁ ନୂତ୍ନ ବସନା ଯେ,
ଆଜ ଯେନ ପ୍ରୀତି ଯେନା ।
ଅଙ୍ଗନା ଗୋ ॥ ୧ ॥

ଅମ୍ବୁଜ ଫୁଲ ଲୋଚନା,
ଫୁଲ୍ଲପଡ଼ି ପାଇଁ କରୁ ଶୋଚନା ଯେ,
ଆଗୁଁ ହୋଇଛୁ ରଚନା ।
ଅଙ୍ଗନା ଗୋ ॥ ୨ ॥

ଅଳକା ଭ୍ରମର ମାଳା
ଅମ୍ବର ବାଛିଲୁ ଭ୍ରମର ମାଳା ଯେ,
ଅମର ମୋହିବୁ ବାଳା ।
ଅଙ୍ଗନା ଗୋ ॥ ୩ ॥

---

* ସାଢ଼ି—

ହଂସାବଳି ॥୧॥ ଫୁଲପଡ଼ି ॥୨॥ ଭ୍ରମରମାଳା ॥୩॥ ଚନ୍ଦ୍ରୋଦୟ ॥୪॥ ତାରାବଳି ॥୫॥
କାନ୍ତପଡ଼ି ॥୬॥ ନକ୍ଷତ୍ରଭୂଷଣ ॥୭॥ ସୁନ୍ଦରମଣି ॥୮॥ ଜଗନ୍ନାଥ ପଡ଼ି ॥୯॥
ବସନ୍ତ ଧଡ଼ି ॥୧୦॥ ହରଗଉରୀ ॥୧୧॥ ମନ୍ଦାର ଧଡ଼ି ॥୧୨॥ କଳା ବଡ଼ ଧଡ଼ି ॥୧୩॥
କ୍ଷୀରେନ୍ଦ୍ର ପଡ଼ି ॥୧୪॥ ଜଳାମେଘ ॥୧୫॥ ନରେନ୍ଦ୍ର ପଡ଼ି ॥୧୬॥ ବିଦ୍ୟାଧର ପଡ଼ି ॥୧୭॥
କଳାଝିମିର ॥୧୮॥ ଦୋମୁଖୀ ॥୧୯॥ ରଙ୍ଗ ଝିମିର ॥୨୦॥ ସୁନାଜରି ସାଢ଼ି ॥୨୧॥
ରୂପା ଜରି ସାଢ଼ି ॥୨୨॥ ରାମଚନ୍ଦ୍ର ପଡ଼ି ॥୨୩॥ ବୀରଭଦ୍ର ପଡ଼ି ॥୨୪॥ ଚୂନେଶ ॥୨୫॥
ସୁଭଦ୍ରା ପଡ଼ି ॥୨୬॥ ମୁକ୍ତାପଡ଼ି ॥୨୭॥ ପଦ୍ମାବଳି ॥୨୮॥ ବ୍ରହ୍ମକାମି ॥୨୯॥
ସିନ୍ଦୁରିଆ ସାଢ଼ି ॥୩୦॥ ତାରା ଚନ୍ଦ୍ରଧାଡ଼ି ॥୩୧॥ ଲକ୍ଷ୍ମୀବିଳାସୀ ॥୩୨॥

ଆନନ ଚନ୍ଦ୍ର ଉଦୟ
ଅମ୍ବର ପାଞ୍ଚୁ ଚନ୍ଦ୍ର ଉଦୟ ଯେ,
ଆଦ୍ୟନ୍ତୁ ଜଣା ହୃଦୟ ।
ଅଙ୍ଗନା ଗୋ ॥ ୪ ॥

ଅଛୁ ତବ ମନ ବଳ
ଆଣିମି ବସନ ଯେ ଗାଗ୍‌ବଳ ଗୋ
ଅଧିକରେ ଗୋରା ବଳ ।
ଅଙ୍ଗନା ଗୋ ॥ ୫ ॥

ଅଭିଳଷ ଅବଲୋକେ
ଅଛି କାହ୍ନୁ ଚଞ୍ଚେ ପ୍ରଚୁର ଲୋକେ ଗୋ,
ଆଦର କରନ୍ତୁ ଥୋକେ ।
ଅଙ୍ଗନା ଗୋ ॥ ୬ ॥

ଅଙ୍ଗନା ନେତ୍ର ଭୂଷଣ
ଅଣାଇ ଦେବ ନକ୍ଷତ୍ର ଭୂଷଣ ଯେ,
ଅତି ମୂଲ୍ୟ ଅଦୂଷଣ ।
ଅଙ୍ଗନା ଗୋ ॥ ୭ ॥

ଅଟ୍ଟ ରୁ ସୁନ୍ଦର ମଣି
ଅଭିଳାଷ ଯେବେ ସୁନ୍ଦର ମଣି ଗୋ,
ଅଛୁ ରଖି ହୃଦ ମଣି ।
ଅଙ୍ଗନା ଗୋ ॥ ୮ ॥

ଅନ୍ତୁ ଜଗତ ମୋହନ
ଅନ୍ତେ ଜଗନ୍ନାଥ ପଡ଼ିକ ସେନ ଯେ,
ଅଭିନ୍ନା ନୃତ୍ୟ ମାନିନୀ ।
ଅଙ୍ଗନା ଗୋ ॥ ୯ ॥

ଅତି ବସନ୍ତ ବରନା
ଅନ୍ତରେ ବସନ୍ତ ଧଡ଼ି ବରନା ଯେ,

ଅଭିନ୍ନ ଅଙ୍ଗକୁ ସିନା ।
ଅଙ୍ଗନା ଗୋ ।। ୧୦ ।।

ଅନଦତ ସୁଗଉରବ
ଅଛୁ ଲୁଚି ହରି ଅନଙ୍ଗ ଗଉରବ ଯେ,
ଆକାଙ୍କ୍ଷା ହରି-ଗଉରବ ।
ଅଙ୍ଗନା ଗୋ ।। ୧୧ ।।

ଅଧର ମନ୍ଦ'ର ଭ୍ରାନ୍ତି
ଆଦର କରନ୍ତୁ ମନ୍ଦାରଯୌତି ଯେ,
ଅଙ୍ଗକୁ ଅରୁଣ ଜ୍ୟୋତି ।
ଅଙ୍ଗନା ଗୋ ।। ୧୨ ।।

ଅତନୁ କଳା ପଣ୍ଡିତା
ଆଜ କଳା ବଢ଼ ଥଡ଼ିକ ଚିନ୍ତା ଯେ,
ଅଧିକେ ବପୁ ଶୋଭିତା ।
ଅଙ୍ଗନା ଗୋ ।। ୧୩ ।।

ଅଛିର ସୁଖ ସଂପତ୍ତି
ଅଛୁ ସେ ଷେରେନ୍ଦ୍ର ପନ୍ତ୍ରକ ଚିନ୍ତ୍ର ଗୋ',
ଅମୃତ ଦଧୀଚି କାନ୍ତି ।
ଅଙ୍ଗନା ଗୋ ।। ୧୪ ।।

ଅବଳା ମୋ କଳାବନ୍ତ
ଅଛୁ କଳାମେଘି ଆଦର ମତ୍ତ ଗୋ,
ଅନା ତୋ ଅଙ୍ଗରେ ଭ୍ରାନ୍ତି ।
ଅଙ୍ଗନା ଗୋ ।। ୧୫ ।।

ଅଠୁ ଭୁ ନରେନ୍ଦ୍ର ଜେମା
ଅଧିକେ ନରେନ୍ଦ୍ର ଷଢ଼ରେ ପ୍ରେମା ଯେ,
ଅଟ୍ଟବ ଲାବଣ୍ୟ ଧାମା ।
ଅଙ୍ଗନା ଗେ ।। ୧୬ ।।

ଅନଙ୍ଗ ବିଦ୍ୟା ଧନ୍ତୁ
ଅନ୍ତେ ବିଦ୍ୟାଧର ପଢ଼ି ବିସୃନ୍ତୁ ସେ,
ଆଳସ୍ୟରେ ଦେଖ ବୃନ୍ତୁ ।
ଅଙ୍ଗନା ଗୋ ॥ ୧୭ ॥

ଅକ୍ଷିକ କାମ ତମିଶ
ଅଙ୍ଗ ଚଉଡ଼କୁ କଲା ହିମିତ୍ର ସେ,
ଅପ୍ରାଣ କରି କାମିଣ ।
ଅଙ୍ଗନା ଗୋ ॥ ୧୮ ॥

ଅକଳଙ୍କ ବିଧୁ-ମୁଖୀ
ଅମୂଲ୍ୟ ମଞ୍ଜୁଳ ସାଢ଼ି ଦୋମୁଖୀ ସେ,
ଅକ୍ଷିଦେବ ହୁଅ ସୁଖୀ ।
ଅଙ୍ଗନା ଗୋ ॥ ୧୯ ॥

ଅଂଶୁକ ରଙ୍ଗ ହିମିଣ
ଆଣି ଯଥା ମହାବସ୍ତ୍ର ନାଗର ଗୋ,
ଆଜ ପିନ୍ଧ ସେହିପର ।
ଅଙ୍ଗନା ଗୋ ॥ ୨୦ ॥

ଅଭେଦ ସୁନାବପୁରେ
ଅଛି ସୁନା ଜରି ଶାଢ଼ୀ ତୋ ପୁରେ ଗୋ,
ଅମୂଲ୍ୟ ନବ ଛବିରେ ।
ଅଙ୍ଗନା ଗୋ ॥ ୨୧ ॥

ଅଟ୍ଟ ଭୂ ସ୍ୱରୂପା ବର
ଅଣାଇମି ରୂପା ଜରି ଅମ୍ବର ଗୋ,
ଅଙ୍ଗକୁ କ ଆଡ଼ମ୍ବର ।
ଅଙ୍ଗନା ଗୋ ॥ ୨୨ ॥

ଅତି ରମ୍ୟ ଚନ୍ଦ୍ରହାସି
ଅଛୁ ରାମଚନ୍ଦ୍ର ଦେଉ ମନାସି ସେ,
ଅଚିରେ ଦେନ ସୁକେଶୀ ।
ଅଙ୍ଗନା ଗୋ ॥ ୨୩ ॥

ଅନଙ୍ଗ ଶାର ପଣତ
ଅଣି ଶାରଭଦ୍ର ପଢ଼ ପଣନ୍ଧ ଯେ,
ଆଜ ଉଡ଼ାଇ ଜଣ ତ ।
ଅଙ୍ଗନା ଗୋ ।। ୨୪ ।।

ଅଙ୍ଗ ଚାରୁ ଚନ୍ଦ ଧାଡ଼ି
ଆଲୋଚନା କରୁ ଚୁନେର ଖାଡ଼ି ଯେ,
ଅଛୁ ଦେଖ ଫେଡ଼ି ଫେଡ଼ି ।
ଅଙ୍ଗନା ଗୋ ।। ୨୫ ।।

ଅଧିକ ସୁଭଦ୍ରେ ଜଡ଼ି
ଅଭ୍ରମତ ଯେବେ ସୁଭଦ୍ରା ପଢ଼ି ଗୋ,
ଅଣାଇବ କାଲ ଲୋଡ଼ି ।
ଅଙ୍ଗନା ଗୋ । ୨୬ ।।

ଅମୂଲ୍ୟ ମୁକ୍ତା ଦଶନ
ଇଚ୍ଛା ହେବ ମୁକ୍ତା ଫଢ଼ି ବସନ ଗୋ,
ଅଣିଦେବ ଦରଶନ ।
ଅଙ୍ଗନା ଗୋ ।। ୨୭ ।।

ଅଙ୍ଗେ ଛବ ପଦ୍ମାବଳୀ
ଅଖାସ୍ତ୍ର ପିନ୍ଧବୁ ସୁପଦ୍ମାବଳି ଗୋ,
ଅଳି ନେଷ ସୁଖଶାଳି ।
ଅଙ୍ଗନା ଗୋ ।। ୨୮ ।।

ଅଙ୍ଗୁ ବ୍ରହ୍ମାନନ୍ଦ ଦାନ
ଅଙ୍ଗେ ବ୍ରହ୍ମ କାମି କାମି କାମିନୀ ଗୋ,
ଅଜ ପିନ୍ଧିବୁ ଯାମିନୀ ।
ଅଙ୍ଗନା ରେ ।। ୨୯ ।।

ଅଙ୍ଗଇ ସିନ୍ଦୂର ଗୁଳି
ଅନଙ୍ଗ ସିନ୍ଦୂରେ ନ ବସ ଫେଲ ଗୋ,

ଅଶିମି ସିନ୍ଧୁ ଅ କାଳ ।
ଅଙ୍ଗନା ଆରେ ॥ ୩୦ ॥
ଅନଙ୍ଗ ଗେହ କପାଟ
ଆଷ୍ଟ ନବ ଜଗ୍ଗ ବେତାଳ ଘାଟ ଗୋ
ଅଛୁ ତାରଚନ୍ଦ୍ର ପାଟ ।
ଅଙ୍ଗନା ଆରେ ॥ ୩୧ ॥

ଅମ୍ବର ଲକ୍ଷ୍ମୀ ବଳାସୀ
ଆଜ ପିନ୍ଧା ଆଦ୍ର ବେଣୀ ସତ୍ତୃଣୀ ଗୋ,
ଅଛି ମନ ଅଭିଳାଷୀ ।
ଅଙ୍ଗନା ରେ ॥ ୩୨ ॥

ଅଧୋକ୍ଷଜ ରାଧା ଭାବ
ଅଣି ବର୍ଣ୍ଣେ ଶ୍ୟାମସୁନ୍ଦର ଦେବ ଯେ,
ଆନନ୍ଦ ବୁଧରେ ଦେବ ।
କୋବଦେ ହେ ॥ ୩୩ ॥

ଅଦ୍ୟେ ରମା ଗଙ୍ଗା ସ୍ତୁତି
ଅଷ୍ଟଯୋଇ ଋତୁ ବସନ୍ତ ଗାଉ ଯେ,
ଅଦ୍ଭୁର ଖେଳନ ପ୍ରୀତି ।
କୋବଦେ ହେ ॥ ୩୪ ॥

ଆଦ୍ୟ ବୋଲ ରାଧା ମାନ
ଅଭିସାର ଶଙ୍ଖଚୂଡ଼ ନଧନ ଯେ,
ଅଛୁ ମାନଭଙ୍ଗ ପୁନ ।
କୋବଦେ ହେ ॥ ୩୫ ॥

ଆଦ୍ୟ ଛାନ୍ଦେ ବନେ ମେଳା
ଅନ୍ୟ ଭୁଞ୍ଜେ ଚାରି ବସ୍ତ୍ର ଅବଳା ଯେ,
ଆର ଛାନ୍ଦେ ଗ୍ରୀଷ୍ମ ଲୀଳା ।
କୋବଦେ ହେ ॥ ୩୬ ॥

ଅଷ୍ଟ ଚଉପଦ ପୁନ
ଅଛି ଚଉତିଶା ସହିତେ ଯେନ ଯେ,
ଅଳଙ୍କାର ଖଣ୍ଡ ମାନ ।
କୋବଦେ ହେ ॥ ୩୭ ॥

ଅଛି ଛଗରେ ବିଂଶତି
ଅଟ ମୁଖେ ପୁଂସ ନାଗରୀ ରସ ଯେ,
ଅଷ୍ଟମେ ସାନ୍ଦ୍ର ମନାସ ।
କୋବଦେ ହେ ॥ ୩୮ ॥

ଇତିଶ୍ରୀ ଅନୁରାଗ କଳ୍ପଲତା ସପ୍ତମ ସ୍ତବକ ଅଷ୍ଟମ କୁସୁମ ସଂପୂର୍ଣ୍ଣ ॥

# ଅଷ୍ଟମ ସ୍ତବକ

## — ପ୍ରଥମ କୁସୁମ —

## ସ୍ମୃତି ବିଶେଷ ଲେଖନ

।। ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ ।।

( ରାଗ – ରାମକରୀ )

ଅସ୍ୟା ଧ୍ୟାନମ୍[1]—

ସ୍ୱର୍ଣ୍ଣପ୍ରଭା ଭାସୁରଭୂଷଣା ଚ
ମାଲଂ ନଟନ୍ତୀଂ ବପୁଷା ବହନ୍ତୀ ।
କାନ୍ତେ ପ୍ରଦୋଷାନ୍ତମଧିଶ୍ରିତେଽପି
ମାନୋନ୍ନତା ରାମକରୀ ପ୍ରଦିଷ୍ଟା ।। ୧ ।।

ଶ୍ଳେଷ—

ଅଖିଳ ଲୋକ ବନ୍ଦନୀୟ ଶୁଚିମୟ ସୁକାୟ
ଅବଦାତ ଆଚ୍ଛାଦନରେ ସଦା ଯେ ରମଣୀୟ ।। ୧ ।।

ଅତିରକ୍ତ ବ୍ୟକ୍ତ ଉତ୍ତମ ରମ୍ୟ ରାଗ ଅଧର
ଅତି ଗୁଣାକର ପ୍ରବାଳ କର ରୁଚିରତର ।। ୨ ।।

ଆଶ୍ରୟ ଶ୍ରେୟପ୍ରଦ ବିନାଶ ଜନ୍ମଜାଡ୍ୟ ବିଶେଷେ
ଆରମ୍ଭିଲି ସ୍ମୃତି ବିନତି ବିଷ୍ଣୁ ଶାରଦା ଶ୍ଳେଷେ ।। ୩ ।।

ଅବଳା ବୃନ୍ଦ ସୁକୋମଳା ପରି ଦେବ ମଧୁର
ଅତି ରସବନ୍ତ ସୁବନ୍ତ ସୁକୁମାର ମନ୍ଥର ।। ୪ ।।

---

୧ । (କ. ଗ) ଲକ୍ଷଣଂ

ଅନ୍ୟତ କାନ୍ତ ଅଳଙ୍କାର ଚଉଖ କରୁ ନବାସ
ଆଦର ସୁଧୀର ରସିକେ ହେବେ ଅଧିକେ ବଶ । ୫ ।।*

ଅଣୁ ଗୁଣକରେ ମହତ ଅଟେ ଯେ ସାଧୁ ମାନ୍ତ
ଆଦ୍ଭୁତ୍ୟ ଉଦୟ ଯେ ନତ୍ୟ ଦନ ବୃଦ୍ଧିରେ ପ୍ରୀତ । ୬ ।।

ଝଙ୍କ ଖଳ କୂଳ କେବଳ ଦୋଷାକର ବର୍ଦ୍ଧତ
ଅଧିକରେ ବନା ଦୋଷରେ ନୋହେ ସେ ପ୍ରମୋଦତ ।। ୭ ।

ଅନନ୍ତରେ ଅଟେ ଅନନ୍ତ ସାଧୁଙ୍କର ମହିମା
ଅନୁଦନ ଅନୁସରନ୍ତ ବସ୍ତୁ ଆଶ୍ରୟ ସୀମା । ୮ ।।★

ଅଭିଳାଷ ଯେତ୍ନ ଆପୁଷ ଥିବାଯାଏ ଭାଗ୍ୟରେ
ଅଭିଷେକ ସାଧୁ ଚରଣ ଧୂଳ ଉତ୍ତମାଙ୍ଗରେ ।। ୯ ।।×

—ଗୀତ—

ଆର୍ଯରେ (?) ଯେ ଗିର ଚଭୁର୍ଥ ପୃଥୁ ଚକ୍ରବର୍ତ୍ତୀର
ଆଶୁ ଅଘ ହରେ ସାଧବ ପାଦରେଣୁ ନକର । ୧୦ ।।

---

ଶ୍ଲୋକଃ—

* ମଧୁରଂ ରସବଦ୍ ବାଚ ବସ୍ତୁନ୍ୟପି ରସସ୍ଥିତଂ ।
ଅନସ୍ତୁ ଗ୍ରଷରଂ ପ୍ରାପ୍ୟ ଧୌକୁମାର୍ଯମିହେଷ୍ୟତେ ।। ୧ ।।
(ଇତ କାବ୍ୟାଦର୍ଶେ) ।। ପୋଥିପାଠ ।।

★ ବଷ୍ଣୁପଦାଶ୍ରୟସ୍ୟ ମହିମା ବାଙ୍ମନସାଗୋଚରଃ ।। (ପୋଥିପାଠ)

× ତେଷାମଧ୍ୟଂ ପାଦସରୋଜରେଣୁ ମାର୍ଯ୍ୟାବଦ୍ୱେତ୍ୟାଧିକଶ୍ୱୈମାୟୁଃ ।।୦।।
ନତ୍ୟଂ ଯଦା ବଭ୍ରତ ଆଶୁପାପଂ ନସ୍ୟାସ୍ତ୍ୟମୁ ସର୍ବଗୁଣା ଭଜନ୍ତ ।।୧।।
(ଇତ ଭାଗବତେ) ।। ପୋଥିପାଠ ।।

ଆଦରେ ଭଜନ୍ତି ସମସ୍ତ ଗୁଣ ନିଚୟ ସନ୍ତିଂ
ଅପୂର୍ବ ଥିବାରେ ମୁକ୍ତି ପରେ ଥିବ ମୁଁ ବନ୍ଧୁ ।୧୧।।

ଅମର ଲଟିମା ପାବ ପୂତ କରେ ଜଗତ
ଅଙ୍ଗ ସଙ୍ଗୁ ହୋଇଯେ ସାଟ୍ର ନିଜ କଲୁଷ ହତ ।।୧୨।।*

ଶ୍ରୁତି ନବମରେ ପ୍ରମାଣ ଭଗୀରଥ ବଚନ
ଆସିବା ଅର୍ଥରେ ମର୍ତ୍ତ୍ୟରେ ଲୋଭ ଲାଭ ବର୍ଦ୍ଧନ ।।୧୩।।

ଅଘଭିଦ ହରି ସାଧୁଙ୍କ ହୃଦେ ସ୍ଥିତ ନିରତ
ଅଙ୍ଗ ସଙ୍ଗୁ ହେବ ଭୁମ୍ବର ନଷ୍ଟେ ପାତକ ହତ ।।୧୪।।

ଅନେକ ରତ୍ନଙ୍କ ଶ୍ରୀପତି ବାକ୍ୟ ଅଟନ୍ତି ଦଶମେ
ଆପମୟ ତୀର୍ଥ ମୃତ୍ତିକା ଶିଳା ଦେବ ସୁଷମେ ।।୧୫।।×

ଅଛନ୍ତି ଯେ ଦୀର୍ଘ କାଳରେ ତପ କରନ୍ତି ଗାଢ
ଅବଲୋକନରେ ସାଧୁ ମାତ୍ର କରେ ପବିତ୍ର ।।୧୬।।

— ଗୀତ —

ଅଟ୍ଟି ଏକାଦଶେ ଉଦ୍ଧବ ପ୍ରତି କୃଷ୍ଣ ବଚନ
ଅନ୍ନ ସେ କେବଳ ସକଳ ପ୍ରାଣୀଙ୍କର ଜୀବନ ।।୧୭।।+

---

ଶ୍ଳୋକଃ—

* ସଂସାରନ୍ୟାସିନଃ ଶାନ୍ତା ବ୍ରହ୍ମିଷ୍ଠା ଲୋକପାବନା ।
ହରନ୍ତ୍ୟଘଂ ତେଽଙ୍ଗସଙ୍ଗାତ୍ ତେଷ୍ୱାସ୍ତେ ହ୍ୟଘଭିଦ୍ଧରିଃ ।।୧।। (ପୋଥିପାଠ)

× ନହ୍ୟମ୍ମୟାନି ତୀର୍ଥାନି ନ ଦେବା ମୃଚ୍ଛିଳାମୟାଃ
ତେ ପୁନନ୍ତ୍ୟୁରୁକାଲେନ ଦର୍ଶନାଦେବ ସାଧବଃ ।।୦।। (ପୋଥିପାଠ)

\+ ଅନ୍ନଂ ହି ପ୍ରାଣିନାଂ ପ୍ରାଣ ଆର୍ତ୍ତାନାଂ ଶରଣଂ ତ୍ୱହଂ ।
ଧର୍ମୋବିତ୍ତଂ ନୃଣାଂ ପ୍ରେତ୍ୟ (?) ସନ୍ତୋ ର୍ବାଗ୍‌ବିଭ୍ୟତୋରଣମ୍ ।।୧।। (ପୋଥିପାଠ)

ଆଜି ଭକ୍ତଶାସ୍ତ୍ର ଲୋକର ଶରଣ ମୁଁ ଯେମନ
ଅଧିକରେ ପରଲୋକରେ ଧର୍ମ କେବଳ ବନ୍ତ ॥ ୧୮ ॥

ଆପତନ ଜନ ବଶରେ ହଉଛନ୍ତି ଯେତକ
ଅରଣ ସାଧୁଙ୍କ ଚରଣ ନାହିଁ ଆନ ରକ୍ଷକ ॥ ୧୯ ॥

ଆପୃତ ଜଗତ ଆସ୍ତୃତ କରେ ଯେ ହୃଷୀକେଶ
ଅହେତୁକ ଭକ୍ତି ବ୍ୟକ୍ତିରେ ଭକ୍ତେ କରନ୍ତି ବଶ ॥ ୨୦ ॥

ଅବରତ ମୋର ବନ୍ଦନ ସେହୁ ଭକ୍ତ ଭକ୍ତଙ୍କୁ
ଅତି ଭକ୍ତ ପ୍ରିୟ ଅଟନ୍ତି ଯେ (ଶ୍ରୀ)ହରି ତାହାଙ୍କୁ ॥ ୨୧ ॥

ଅଧିକ ପୁଣ୍ୟରୁ ବର୍ଣ୍ଣିଲ ବ୍ରଜକେଳି ବଖାନ
ଆପେ ଭକ୍ତ ସହ ଭୁଞ୍ଜିକି ଭଜେ ନନ୍ଦ ନନ୍ଦନ ॥ ୨୨ ॥

ଆଦୃତ ବଂଶରେ ଯେ ବ୍ରଜ ଉପାସିକ କୋବଦ
ଆନ ହେଲେ ରସେ ରସିବେ ରସିକ ରସବଦ ॥ ୨୩ ॥

ଅଳଙ୍କାରରେ ଚମତ୍କାର ଚୟ କବଚ୍ଛ ଦେଖି
ଆଲୋଚନା ପୂର୍ବକ ଭାର୍ଣ୍ଣିର ଶ୍ରମ ହୋଇବେ ସୁଖୀ ॥ ୨୪ ॥

ଅମ୍ବୁଦ ଗର୍ଜନ ସଜ୍ଜନ ଶିଖୀ କରେ ନର୍ତ୍ତନ
ଅଜ୍ଞ ଖଳ ପକ୍ଷୀ ସଂକୁଳରେ ଯେ କୋହେ ପତନ ॥ ୨୫ ॥

ଅଦବ୍ୟ ଦ୍ରବ୍ୟରେ ସମ୍ଭବ ବନାଶିବ କଳୁଷ
ଅବଜ୍ଞା ନ କର ଯେ ପ୍ରଜ୍ଞାବନ୍ତ ଶୁଣ ବଦୂଷ ॥ ୨୬ ॥

ଅବନୀ ଗୀର୍ବାଣ ଘଟ କବା ସ୍ତ୍ରୁ ପଠ କୃମ୍ଭ
ଅଘ ହରଣକୁ ସମର୍ଥ ସୁର ସରତ ଅମ୍ବୁ ॥ ୨୭ ॥

ଅଭିଳାଷ ଯେବେ ଗୋବନ୍ଦ ପଦ ଅରବନ୍ଦରେ
ଆଲୋଚନା କର ପୁସ୍ତକ ବଞ୍ଚ ଯତ୍ନେ ଆଦରେ ॥ ୨୮ ॥

ଅଳଂକାର କାବ୍ୟ ନାଟକେ ଯେବେ ରସିବ ମନ
ଆଦର ଚେଟବେଡ ପୂର୍ବେ ଗ୍ରନ୍ଥ କର ସୁବୁଦ୍ଧି ଜନ ॥ ୨୯ ॥

ଅଧ୍ୟାପକ ସୁଧା ତତ୍ତ୍ୱକୁ ଜାତ ଇଚ୍ଛା ଯଦ୍ୟପି
ଆଲୋଚନା କର ଆଦରେ ଗ୍ରନ୍ଥ ବୁଧେ ତଥାପି ॥ ୩୦ ॥

ଆଦ୍ୟ ବକ୍ରେଶ୍ୱର ପଣ୍ଡିତ ଗୋସ୍ୱାମୀରେ ବନ୍ଦନ
ଆକୃଷ୍ଟ ହରପାଦ ସ୍ଥଳେ ଲେଖା ଗୋପୀ ଚନ୍ଦନ ॥ ୩୧ ।

ଅମ୍ବରୁଦ୍ଧ ପାଦ ଆଶ୍ରୟ ଆତ୍ମ ଉପାସନା ସେ
ଅନୁରାଗ ପ୍ରେମ ଭକ୍ତିଦ ଦୁର୍ବାସନା ବିନାଶେ ॥ ୩୨ ॥

ଅନୁଜ୍ଞା ପ୍ରାର୍ଥନା ସୂତ୍ରେ ବନ୍ଦ ଶ୍ରୀ ଗୋବନ୍ଦରେ
ଅଧି ମହତ ରାସ ଶେଷ ଗ୍ରନ୍ଥ ପ୍ରେ ଶରଦରେ ॥ ୩୩ ॥

ରୂପକ—

ଅଶେଷ ବନ୍ଦନ ସ୍ୟନ୍ଦନ ଗୃନ୍ଥ ବ୍ରଜ ଅଚଳ
ଅଭିକୁଣ୍ଡ ଗୃହ ଅର୍କଜା ଶ୍ୟାମ ରଜ୍ଜୁ ମଞ୍ଜୁଳ ॥ ୩୪ ॥

ଅଟେ ଗଣ୍ଡ ଶୈଳେ ସେ ଯାନ ମୁଖ ନାଭି ଆକର
ଆସ୍ତି ଉଚ୍ଛଶିଳା ବରୁଥ ବଲ୍ଲୀ ଆଚ୍ଛନ୍ନ କର ॥ ୩୫ ॥

ଅପସ୍କର ଗୃହୁ କୁବର ମହାରୁଦ୍ର ମହତ
ଅଶ୍ୱ ଛବ ଚିର ପ୍ରତ୍ୟାଳ ନଧ ନିତମ୍ବ ଯୁତ ॥ ୩୬ ॥

ଆମନ୍ତ୍ରନ ବାସ ସୁମନ ଅଶ୍ଚ ଚିତ୍ର ଧାତୁରେ
ଅଟେ ସାନୁ କୁମ୍ଭ ସଚିତା ଚନ୍ଦ୍ରକର କେତୁରେ । ୩୭ ॥

ଆଖିର ମଣ୍ଡଳ ଆଶ୍ରୟ ଭସ୍ମ ହରକୁ ରଥୀ
ଆରୋହ୍ୱ ଆନନ୍ଦ ସେ ନନ୍ଦ ସୁତ ବର୍ତ୍ତ ସାରଥୀ ॥ ୩୮ ॥

ଆଦ୍ୟ ଯମକ—

ଅବନ୍ଧୁରେ ଅବନ୍ଧୁରେ କେ ଚରେ ନାଭି କୁରଙ୍ଗ
ଅବିରତ ଅବିରତଙ୍କେ କେହୁ ନ ତେଜେ ସଙ୍ଗ । ୩୯ ॥

ଅତି ମୁକ୍ତ ଅତିମୁକ୍ତରେ ଆଚ୍ଛାଦନ ମଣ୍ଡପ
ଅଗୁରୁ ଅଗୁରୁ ଶିଖରେ ପକ୍ଷୀ ଗୃହ କଳାପ ॥ ୪୦ ॥

ପ୍ରାନ୍ତ ଯମକ—

ଅନୁସରି ରହେ ସର୍ବଦା ଯତ୍ନେ ମଧୁ ପବନ
ଆସଇ କୁସୁମ ବାସକୁ ଭ୍ରମି ମଧୁପ ବନ ॥ ୪୧ ॥

ଉଦ୍ବେଷ୍ଟିତ ଶୀଳେ ଯେମନ୍ତ ବିପିନ କୁରଙ୍ଗରେ
ଅବରୋଧ୍ବ ଆସେ ଶଙ୍ଖ କ ବିପିନ କୁରଙ୍ଗରେ ॥ ୪୨ ॥

ମଧ୍ୟ ଯମକ—

ଆଳସ୍ୟ କୌଶିକ କୌଶିକ ଚଞ୍ଚୁ ଘୋଟରେ କରେ
ଅଭ୍ରେ ବିଦ୍ୟୁତ ବିଦ୍ୟୁତ କୃତ ମାଳପ୍ରେକ ଠାରେ ॥ ୪୩ ॥

ଶ୍ଳେଷ—

ଆଶ୍ଳେଷ ସୁରଭି ସୁରଭି ବୃଷଙ୍କରେ ସନ୍ତତ
ଅଭିନ୍ନ ବଞ୍ଜୁଳ ବଞ୍ଜୁଳ ଶାଖା ପଦେ ଶୋଭିତ ॥ ୪୪ ॥

ଆଦ୍ୟ ପ୍ରାନ୍ତ ଯମକ—

ଅମ୍ବୁଭ୍ରକ କେତୁ କ ହର ବସେ ସୁତ ରୁପରେ
ଅମ୍ବୁଭ୍ରକ କେତୁ ସଂସ୍ଥିତ ଅଗ୍ରେ ସୃତ ରୁପରେ ॥ ୪୫ ॥

ଆସ୍ବତରେ ଶୃଙ୍ଗେ ଦଶନ୍ତ ଶୋଭା ବରାହ ବରେ
ଆସ୍ବତରେ ଶୃଙ୍ଗେ ରସନ୍ତ ମେଷ ବରାହ ବରେ ॥ ୪୬ ॥

ମହା ଯମକ—

ଅର୍କେ ମଣ୍ଡଳା ସମୀରଣ ସୁଶୀଳରେ ବହର
ଅକ ମଣ୍ଡଳା ସମୀରଣ ସୁଶୀଳରେ ବହର ॥ ୪୭ ॥

ଅଭ୍ରରେ ଯୋଗ ପୁଷ୍ପବନ୍ତ ରୁଚି ସ୍ୟନ୍ଦନ ଚଢେ
ଅଭ୍ରରେ ଯୋଗ ପୁଷ୍ପବନ୍ତ ରୁଚି ସ୍ୟନ୍ଦନ ଚଢେ ॥ ୪୮ ॥

ଅର୍କ କମଳରେ ଖେଳରେ ଦିନେ ମଧୁସୂଦନ
ଆଜି ଆରମ୍ଭନ୍ତି ବୃଷଭ ସନ୍ଧ୍ୟା ଗାବ ଦୋହନ ॥ ୪୯ ॥

ଅରିଷ୍ଟ ଅସୁର ଗରିଷ୍ଠ କଂସ ଆଦେଶେ ବ୍ରଜେ
ଅଭ୍ରବପୁ ଶୁଭ୍ର ବୃଷଭ ରୂପ ଧରି ବିରାଜେ ॥ ୫୦ ॥

ଅଭ୍ରଖଣ୍ଡ ଚଳେ ଅନଳେ ତଥା କମ୍ପେ କକୁଦ
ଅବିକଳ ଘୋଷ ଘୋଷରେ କ୍ଷୁରଘାତ ଉପୁଦ ॥ ୫୧ ॥

ଅପାର କ ପାନ୍ତ ଉପାର ସ୍ତୋକ ସ୍ତୋକ ସୂଦରେ
ଅଶନି ବିଷାଣ ପାଷାଣ ଘାତ ମଧ୍ୟ ଗୋଷ୍ଠରେ ॥ ୫୨ ॥

ଅଖିର ସୁଖ ସୁରଭିର ଅବଲୋକନେ ହରି
ଅପୂନ ତେଜ ପଙ୍କାପୂନ ଅଗ୍ରସର ଶ୍ରୀହରି ॥ ୫୩ ॥

ଅନଳ ପ୍ରବଳେ ଅନଳ ଘନ କି ଉତପ୍ତ
ଅଚ୍ୟୁତ ଧରନ୍ତେ ସେ ଚ୍ୟୁତବଳ ଘୁଞ୍ଚେ ବଦ୍ଧୁତ ॥ ୫୪ ॥

ଅଲୋମରେ ଯୁଦ୍ଧ ବିଲୋମ ବୃଷ ବପୁର ଶକ୍ତି
ଆକାଶର ବାଣୀ ପ୍ରକାଶ ବଧ ଦୈତ୍ୟ ପାତକୀ ॥ ୫୫ ॥

ଅମରବେଷ ରତ ସମର ଶୃଙ୍ଗ ଧରି ପତନ
ଆସ୍ୟରେ ରୁଧିର ଶ୍ୱାସରେ ଦୃଢ ସେ ବିଚେତନ ॥ ୫୬ ॥

ଅମରେ ହୃଷ୍ଟ ସଂଭ୍ରମରେ ପୁଷ୍ପବୃଷ୍ଟି ବିରତ
ଆରମ୍ଭ କଲେ ବିସଂରମ୍ଭ ବୃଷ ବନ୍ଦରେ ସ୍ତୁତି ॥ ୫୭ ॥

ବୃଷ ବନ୍ଧ —

ଅଜ ନନ୍ଦନ ନନ୍ଦନ ବନ ଜନ ମନ ଶରଣ
ଆଶୁ ଅସୁର ହର କର ଘୋର ଦର ହରଣ ॥ ୫୮ ॥

ଆନନ୍ଦ ବ୍ରଜରେ ସେ ନନ୍ଦ ବ୍ରତୀ ଯେକାଦଶୀରେ
ଅଶନ ବିନାରେ ପ୍ରସନ୍ନ ଜାଗର ନିଶିରେ ॥ ୫୯ ॥

ଅଳ୍ପ ଦ୍ୱାଦଶୀ କଳପନାରେ ଗୃହନ୍ତୁଂ ଗତ
ଆଚରନ୍ତେ ସ୍ନାନ ସେ ତରି ଜଳପତିର ଦୂତ ॥ ୬୦ ॥

ଆସନ୍ନେ ବସାଇ ପ୍ରସନ୍ନେ ପୂଜା କରେ ବରୁଣ
ଆକୁଳ ଶ୍ରବଣେ ସ୍ୱ କୁଳ ବନ୍ଧୁ ଆଭୀରଗଣ ॥ ୬୧ ॥

ଅର୍କଜା ପ୍ରାନ୍ତରେ ଶୋକ ଜାତରେ ଯଶୋଦା ଆଦି
ଆପରେ ସେପରି ତାପରେ କୃଷ୍ଣ ମଜ୍ଜନ ନଥା ॥ ୬୨ ॥

ଅର୍ଚ୍ଚନ କରି ସେ ଲୋଚନ ବୋଲେ ଦେଖ ପଦ୍ମଜ
ଆଣିଛୁ ନନ୍ଦଙ୍କୁ ଜାଣିଛୁ ଦେବ ଅନଘ ପାଦ ॥ ୬୩ ॥

ଦଶାକ୍ଷର —

ଅଭ୍ର ବପୁ ବନ୍ଦେ ନମାମି ହେ ମନୋହର ଅଙ୍ଗ
ଆଭୀର ରମଣୀ ସୁଖଦ ସ୍ଥାନ ସୁକ୍ରୀଡ଼ା ରଙ୍ଗ ॥ ୬୪ ॥

ଚ୍ୟୁତାକ୍ଷର—

ଅଧ ପାଦ ଉର୍ଦ୍ଧ୍ୱ ମସ୍ତକ ବିଶ୍ୱରୂପ ପ୍ରବର
ଆଦିତ୍ୟ ଚନ୍ଦ୍ରମା ଯୁଗଳ ନେତ୍ର ଚରାଚର ଚର ॥ ୬୫ ॥

ଦତ୍ତଚ୍ୟୁତାକ୍ଷର—

ଅଜ୍ଞ ସଂଭବ ସ୍ଥିତି ପ୍ରେକ ଦେବବର ଈଶ୍ୱର
ଅଜ ଯେ ବଧିରେ ଗୌଶ୍ୱଣ ନାମ ଲୋକେ ପ୍ରଚୁର ॥ ୬୬ ॥

ସର୍ବତୋଭଦ୍ର ବନ୍ଧ—

ଅମରମା ମାରମ ଅଦରବରର ବରଦ
ଅସର ସସର ସଅଦର ବର ଢବ ରଦ ॥ ୬୭ ॥

ଆନନ୍ଦ ସକଳେ ସେ ନନ୍ଦ ଘୋଷ ପ୍ରବେଶ ଜବ
ଅରଣ ସେ କୃଷ୍ଣ ଚରଣ ଶ୍ୟାମସୁନ୍ଦର ଦେବ ॥ ୬୮ ॥

ଇତିଶ୍ରୀ ଅନୁରାଗ କଳ୍ପଲତା ଅଷ୍ଟମ ସ୍ତବକ ପ୍ରଥମ ସୂକ୍ତ କୁସୁମ ସମାପ୍ତ ॥

## — ଦ୍ୱିତୀୟ କୁସୁମ —

# ଆଠ ପୋଇ-ବର୍ଷାଋତୁ

( ଏକ )

ରୂପକ—

ଆସି ନଭେ ଘନାଘନ ଛବି ବିଦ୍ୟମାନ ଭସ୍ମଦ ବୃଂହିତ ସେ ସ୍ତନିତ
ଅଦ୍ରି ଅଶନି ଦନ୍ତରେ ଭେଦି କୁପିତରେ ପ୍ରବାହ ସନ୍ଦୋହ ସଜନ୍ମିତ ॥ ୧ ॥

ଉଡିଟେଯ୍ୟ ମଦଧାରା ବରଷାରେ ଧରା·ପୃଷ୍ଠେ କରି ବିନାଶିଲା ତାପ
ଅଷ୍ଟ ଯେ ଯେନ ପୁଷ୍କର ନାମ ଆକାଶର ତା କର ଅଗ୍ରରେ ଯେଣୁ ବ୍ୟାପ ॥ ୨ ॥

ଅଟେ ଘନ ଉପପତି ବଶ୍ୟ ରମା ପ୍ରୀତି ପାଣିରେ ଧୋଡ଼ାଇ କୃତ ଗିରି
ଅଙ୍ଗୁ ବିରହ ଦହନ ଦାବକୁ ଶମନ କଲା ଘନ ରସ ଦାନ କରି ॥ ୩ ॥

ଅନ୍ତରଷ୍ଟ ଯେ ଚପଳ ବସେ ଉଜବଣ୍ଡ ମହିକ କରାଇ ଶୁଦ୍ଧ ସ୍ନାନ
ଅଣି କପଟ କରକା ମଲ୍ଲିକା ମାଳିକା ବଢ଼ିଲା ଉପଦା ଦେଖି ପୁନ ॥ ୪ ॥

ଅନୁରାଗିଣୀ ସାତ୍ତ୍ୱିକ ଭୃଣରେ ପୁଲକ ପିନ୍ଧି ଇନ୍ଦ୍ରଗୋପ ପାଟ ପ୍ରଭା
ଆଲମ୍ବିତ ମେଘମାଳ ବଳାକା ଛଳ ମହ୍ମା ବରଣରେ ଘନ ଶୋଭା ॥ ୫ ॥

ଶ୍ଲେଷ—

ଅତି ସ୍ଥୂରେ ମେଘନାଦ ଆପେ ରଚି ବାଦ ଧାରା ଯୋଗେ ତୁଷ ପନ୍ତ ଲୀନ
ଆଶୁ ଆସି ରାମଚନ୍ଦ୍ର ସଲକ୍ଷ୍ମଣ ସାନ୍ଦ୍ର ଆଶୁଗ ବୃଷ୍ଟିରେ ଦ୍ରବହୀନ ॥ ୬ ॥

ଅନ୍ଧକାର ମାୟା ଘୋର ଦେଖାଇ ପ୍ରଚୁର ହୃଷ୍ଟ ନିଶାଚର ସମୁଦାୟ
ଉଡିଟେଯ୍ୟ କବନ୍ଧର ସଂଗ୍ରହ ପ୍ରଗ୍ରହ ଡାକିମ୍ବ ଜାମ୍ବବ କର୍ମେ କାୟ ॥ ୭ ॥

ଅର୍ତ୍ତିସ୍ୱର ଯେ ଦ୍ରୁବଗ ବାହ୍ନମର ବେଗ ଉଦୟ ତହିଁ ଅଧିକ ଶର
ଆପେ ସୀତା ମନ୍ତ୍ରପାତ କହେ ଶ୍ଲେଷ ଯୁତ ଶ୍ରୀ ଶ୍ୟାମସୁନ୍ଦର ଦେବ ଧୀର ॥ ୮ ॥

—ଗୀତ—

( ଆଷାଢ଼ଶୁକ୍ଳ ବାଣୀରେ )

ଆପଗା ଜରଜ ସ୍ତବକୁ ତେଜ
ଅଦ୍ଭୁତ ଘନରସ ବୃଦ୍ଧି ଭଜ
ଆନନ୍ଦ ବିକୂଳ ମଣ୍ଡି ଘାଟରେ
ଆସ୍ୟ ମେରୁ ସୂତ ଫେନ ଛୁରଣେ
ଆସେ ଅଭିସାରେ,
ଅଭିଳାଷ ସିନ୍ଧୁ ସଙ୍ଗମ କର ॥ ୧ ॥
ଅଟର କୂଳବର୍ତ୍ତୀ ଅଭିସାର
ଅଛୁ ସ୍ୱନ' ଛଳେ ଖଞ୍ଜି ମଞ୍ଜୀର
ଆଲୋକ କର ତରଣୀ ଉଡ଼ୁପ
ଅନ୍ତରେ ଶଙ୍କା ନ କର ଅଳପ
ଅମାବାସ୍ୟା ଭ୍ରମ,
ଆଲୋଚନାରୁ ଉଭୟ ସଙ୍ଗମ ॥ ୨ ॥

---

( ଦୁଇ )

ଶ୍ଳୋକ —

ଅସି କାମନନ୍ଦା ହସ୍ତ କଲ୍ପ ସେଣୁ ରଭ ମିଥୁନ ବୋଲନ୍ତ ପ୍ରେଣୁ ବୃନ୍ଦ
ଆପେ ଅତନ କାଳିକା ତେଜ ମନୁ ଶଙ୍କା ଇଚ୍ଛି ବଶୁଜସ୍ପ କାମୀ ବଧ ॥ ୧ ॥
ଅଶୁବନ୍ତ ଦବଗ୍ରାନ କୁରଙ୍ଗ ଲାଞ୍ଛନ ଶୋଣ ପଦ୍ମଖଣ୍ଡ ଭାବ ଗ୍ରାସ
ଅଦ୍ୟ ବ୍ରମା ପତିବ୍ରତା ନନ୍ଦତ ସବତା ଦେଖି କଳ୍ପ ଅଗ୍ନି ପରବେଶ ॥ ୨ ॥
ଅଗ୍ନି ଅଣନର ବ୍ୟକ୍ତ କାନ୍ତାଳ ପୀଡିତ ଉଡ଼ୁ କେଖ ଦ୍ୟୋତ ବର୍ଦ୍ଧି କଣ
ଉଦ୍ଧ ତମସ ବଶୁରେ ବ୍ୟାପେ ଅବସରେ ନଭ ଆଶା ଅଶ୍ରୁ ବର୍ଷଣ ॥ ୩ ॥

---

ଅଛୁ ବାରୁଣୀ ସେବନ କାଳିକା ଗର୍ଜନ ବକାଳି ପାଣ୍ଡୁର ଦନ୍ତେ ହସେ
ଅଭ୍ରଯାନ ଧନୁ ନୂଳ ଜବା ମାଳୋପୂଳ ମାଳରେ ମଞ୍ଜୁଳ ଉର ଦିଶେ ॥ ୪ ॥

ଅସି ଝମକାଇ ଦ୍ୟୋତ ବିଦ୍ୟୁତ ବଦ୍ଧିତ ହର ହରଷରେ ମନାଦିତ
ଅବଲୋକ ନୀଳକଣ୍ଠ ଆରମ୍ଭିଲେ ନାଟ କାଳିକା ଉଦୟ ପ୍ରମୋଦିତ ॥ ୫ ॥

ଅଦ୍ରି ଧୂମ୍ର ଲୋଚନଜ ହତ ରକ୍ତବୀଜ ସନ୍ତାନ ଇନ୍ଦ୍ରଗୋପ ଦିଶେ
ଅଟେ ପ୍ରେକ୍ଷ ଚନ୍ଦ୍ରରଥ ଇନ୍ଦ୍ରାୟୁଧ ପଥ ପଙ୍କଳରେ ଅର୍ଦ୍ଧମନ୍ଦ କସେ ॥ ୬ ॥

ଆଣି ଘନାଘନ ପରେ କାମକ କୋପରେ ଚାମୁଣ୍ଡଜୟ ଡକ୍କା ଆରୋପିତ
ଅଧେ ଅଦ୍ରି ଉହାଡ଼ରେ ବିଯୋଗୀ ଯେ ଡରେ ଶୁଣି ଅତି ନାଦ ସଚେତ ॥ ୭ ॥

ଅଶ ବିରହୀଙ୍କି ଅଶ ଭ୍ରମାଇଂ କ ଧର ପିଙ୍ଗିଛୁ ପରିଧି ବ୍ୟାଜେ ସୋହେ
ଆଜ୍ଞା ଦର୍ପକର ଡାକ ପ୍ରେ କାଳ କଣ୍ଟକ ଶ୍ରୀ ଶ୍ୟାମସୁନ୍ଦର ଦେବ କହେ ॥ ୮ ॥

— ଗୀତ —

( ଅଷ୍ଟାଦଶଶୁକ୍ ବାଣୀରେ )

ଆଗମ ଗମା ଉପଗତ ରସ
ଅନୁଭୂତ କର ମୁଦ ସରସ
ଅତି ସୁମନ ହାସ ଶେଫାଳିକା
ଆମୋଦ ମାଳତୀ ଜାତି ମଲ୍ଲିକା
ଆତୁର କେତକ,
ଅଶା କଦମ୍ବ କୁଟଜ ଚେତକ ॥ ୧ ॥

ଆସ୍ଥିତ ସୁବାସେ ବାସକ ସଜ୍ଜା
ଆଧ୍ୟାନ ମଧୁପରେ ଦୃଷ୍ଟ ଲଜ୍ଜା
ଅନୋପମ ମକରନ୍ଦ ଆଶାପ୍ତି
ଅଳି ଚଟକ ପର ତୃପ୍ତି ପାଇ
ଅସ୍ୱାଦିତ ମଧୁ,
ଅଜ୍ଞାନ ମତେ ଭ୍ରମି ଯଥା ବଧୂ ॥ ୨ ॥

---

୧ । (କ, ଗ) ଧୂମ୍ର

( ତାନ )

ଅଳି ଚଣ୍ଡିକା ଲୋକନ ବିଭ୍ରମ ଲୋଚନ ଉତ୍ଫୁଲ୍ଲ ମଦ ମରନ୍ଦ ପାତ
ଅତି ସଂଲାପ ଗୁଞ୍ଜନ ଛଳେ ହରି ମନ ପାଶେ ରେ ପଦ୍ମା ସ୍ନେହ ବ୍ରତ ॥ ୧ ॥

ଆସେ ଅତି ଶନ୍ତ ଧୀର ଗତିରେ ସମୀର ବିଶେଷେ ସୁବାସ ଭାର ବହି
ଅଛୁ ଆମ୍ରେଶ୍ୱର ବନା ଯେ ପ୍ରିୟା ନବୀନା ଯୋଗୀ ବିଯୋଗୀ ହୃଦୟ ଦହି ॥ ୨ ॥

ଆଟପ ଅଧୋକ୍ଷଜ ବ୍ରଜ କୁମାର ସମାଜ ଘେନି ଗୋବର୍ଦ୍ଧନ ପୁରେ ରହି
ଅତି ଉଚ୍ଛେ କେକା ରଟି କରିଣ ପ୍ରକଟ ବିରଚେ ନାଟ ବିଭବ ରହି ॥ ୩ ॥

ଅମ୍ବୁ ବାହରେ ଆନକ ନିନଦ ସାମୁକ ଘନ ସଙ୍ଗୀତରେ ଭେକ ସ୍ୱର
ଅନ୍ତେ ବଧୂପୁରେ ପିକ ଶୁଣି ହେଲେ ମୂକ କୃଷ୍ଣ ବପୁ ଦହେ ଅଣସର ॥ ୪ ॥

ଅତ୍ରି ସୁଧା କୁଚ ପରି ମଣିଲେ ଶ୍ରୀହରି ଝରହାର ସଜେ ପଦାବଳି
ଅଟେ ସୁ ତମାଳ ଦଳ ଚେଳ ପ୍ରେ ମଞ୍ଜୁଳ ତା ମାଳ ଯୋଗେ ଫଣେନ୍ଦ୍ର ଚଳି ॥ ୫ ॥

ଆଶ୍ୱ ଅସନ୍ଧରେ ମାବ ଫୁଲ ଶୀଳ ଛବି ନିତମ୍ବରେ ଆଲମ୍ବିତ ବେଣୀ
ଅତି ପ୍ରବାଳ କୁସୁମ ବେଶରେ ସୁଷମ ଧାତୁରଙ୍ଗେ ରଙ୍ଗ ପାଦ ପାଣି ॥ ୬ ॥

ଅଳ୍ପ ନ ରଖି ସନ୍ଦେହ ମଣି ପ୍ରିୟା ଦେହ ଆଶ୍ଳେଷକୁ ଉଦ୍ୟମ କରି ଠେକ
ଅବସ୍ଥିତ ପୀଠମର୍ଦ୍ଦ ବିଦୂଷକ ବିଟ ନର୍ମ ସଖା ହସେ ଅବଲୋକ ॥ ୭ ॥

ଅନ୍ଧ ମଦନ ମଧୁରେ ମଧୁପ ମଟୁରେ ପଦ୍ମା ଲୋଡ଼ଇ ଗିରି ଶିର
ଆନ କୁସୁମେ ନ ରସେ ଛନ୍ଦ ଚଉ ଭାଷେ ଶ୍ରୀ ଶ୍ୟାମସୁନ୍ଦର ଦେବ ଧୀର ॥ ୮ ॥

— ଗୀତ —

( ଆଷାଢ଼ଶୁକ୍ଳ ବାଣୀରେ )

ଅଚ୍ୟୁତ ଶୁଣି ସଖୀରେ ଆଶେଷ
ଅଧିକେ ମରମେ ଭେଦଇ ଶ୍ଳେଷ
ଅଦ୍ଭୁତ ସିଦ୍ଧ ହେଲ ଯୋଗରେ
ଅଚଳ ପ୍ରଜ୍ୱଳା ଇନ୍ଦ୍ର ବେଗରେ
ଆତୁର ବର୍ଦ୍ଧନ,
ଅବେଶ୍ୱ ଗିରି ଶିଖ ବିଲୋକନ ॥ ୧ ॥

ଆଗତ ଗତରେ ତରୁଣୀ ପନ୍ତି
　　　　ଆଗ୍ରହେ ମାନସେ ଆସେ ଶ୍ରୀମନ୍ତ
ଅନଙ୍ଗ ଗର୍ଜନ ପର ତନତ
　　　　ଆକାଶେ ଯେଉଁକାଳେ ବିଦ୍ୟୁତ ଦ୍ୟୋତ
　　ଅସି କବା ଧରେ,
　ଆସି ପୁନ ଗୃହା ପ୍ରବେଶ କରେ ॥ ୨ ॥

---

( ଗୌରି )

ଅତି କର୍ଦ୍ଦମ ବରଷା ମାର ଯୋଗ ରସା ରାଧା-କୃଷ୍ଣ କେଳି ବନେ ନୋହେ
ଆଳି ମେଳେ କାମ ବାଧା ଅଟ୍ଟାଳିକା ରାଧା ଆରୋହି ଜମୁତ ଶୋଭା ଗୃହେ ॥ ୧ ॥

ଅଟେ କୃଷ୍ଣ ଶ୍ୟାମଘନ ତଡ଼ିତ ବସନ ବକାଳି ଉଜ୍ଜ୍ୱଳ ମୋତିମାଳ
ଆଖଣ୍ଡଳ ଧନୁ ଚୂଳ ଘନ ରସ ମେଳ ତନତ ଜନତ[୧] ବଂଶୀ କଳ ॥ ୨ ॥

ଅନ୍ତେ ଚଳଇ ଯେଉଁକାଳେ ସ୍ଥାନ ପୁଣ୍ୟବଳେ ନ ବସଇ କାନ୍ତ କୋଳ ପ୍ରିୟା
ଆସି ହୃଦକୁ ବରଷି ନନଦ ବରଷି ଦନୁର କି ଆକର୍ଷାଇ ହିୟା ॥ ୩ ॥

ଆଳିମାନଙ୍କୁ ଚତୁରେ ଘୋର ବରଷାରେ ବଞ୍ଚନ୍ତି କି ରୂପ କୃଷ୍ଣ ବନେ
ଅଙ୍ଗ ଭୋଗକୁ ନ ଇଚ୍ଛେ ଗନ୍ଧ ଗାବ ପଚ୍ଛେ ନ ରହନ୍ତି ସୁଖେ ସୁଭବନେ ॥ ୪ ॥

ପ୍ରସର କୁନ୍ଦଲତା ବୋଲେ ମଞ୍ଜୁଳତା ଅଟ୍ଟାଳିକା ଠାରୁ ଗୋବର୍ଦ୍ଧନ
ଆପ ପ୍ରଭେଦ ସମୀର ନଚନ୍ତି ମନ୍ଦର ମାରବ୍ୟ ଧ୍ୱ କରେ ବଇଧନ ॥ ୫ ॥

ଅଦ୍ରି ଅତ୍ୟୁଜ୍ୟକୁ କରି ଟେକ କୁଚ ଗିରି ଧରିବାରୁଁ ଦେଖେ ପ୍ରବରତ
ଅଭିନବ ବରଷାରେ ମାର ବରସାରେ ନ ହରେ ବେଦନା ହୋଇ ହତ ॥ ୬ ॥

ଅଳ୍ପ ହସି କୃଶୋଦରୀ ବୋଲନ୍ତି ଗୋ ଦରି ଯାଇ ବ୍ୟଥା ହର ସେ ଦେବର
ଅର୍ଦ୍ଧଚନ୍ଦ୍ର କରି ଦାନ ବଚନ ରଚନ କୁଚ ହାର ହରଷେ ଦେବର ॥ ୭ ॥

---

୧ । (କ) ପୋଥିରେ 'ଜନତ' ନାହିଁ ।

ଅଳ ପଦ୍ମା ବରଦେ କୁନ୍ଦଲତା କହେ ଭ୍ରମଇ ଆନନ୍ଦରେ ବଶ ନୋହେ
ଅଚ୍ଛି ହଂସୀର ମାନସ ଲାଳସା ମାନସ ଶ୍ରୀ ଶ୍ୟାମସୁନ୍ଦର ଦେବ କହେ ॥୮ ।

— ଗୀତ —

( ଆଷାଢଶୁକ୍ଳ ବାଣୀ )

ଆଗତ ପ୍ରେ ସମୟେ ଭଗବନ୍ତୀ
ଆଦରେ ଜଟିଳା ପାଦେ ବନ୍ଦନ୍ତି
ଆଶିଷ୍ୟ ଦେଇ କୁଶଳ ଆଳାପ
ଅନ୍ତ ବୃଦ୍ଧା କହେ ପଯୁ ଅଳପ
ଆଜ୍ୟ ନ ଭେଟଛ,
ଅନ୍ତର ବନୁ ବୃନ୍ଦାବନୁ ଗାଈ ॥ ୧ ॥
ଆଦେଶ ଦେବା ଦେଲେ ଗୋବର୍ଦ୍ଧନ
ଅଦ୍ରିରେ ସିଦ୍ଧ ଶିଳାଙ୍କ ଅର୍ଚ୍ଚନ
ଅଙ୍ଗୀରସ ବାରେ ଆଚରୁ ବଧୂ
ଅବଶ୍ୟ ଧନଧାନ୍ୟ ବୃଦ୍ଧି ସାଧୁ
ଆପେ ନାନ୍ଦୀମୁଖୀ,
ଅବଦ୍ଧେ ଚତୁର୍ମାସେ ପୂଜ ସୁଖୀ ॥ ୨ ॥

---

( ପାଞ୍ଚ )

ଆଳ ଜଣେ ଶୁଣି ହସି କହଇ ସୁକେଶୀ ପାଞ୍ଚ ପୂର୍ଣ୍ଣମାସୀ ଯେ ଜଟିଳା
ଅଦ୍ଭୁତ ସିଦ୍ଧ ଶିବ ଚିତ୍ତରେ ପୂଜବ ପ୍ରତି ଶୁକ୍ରବାରେ ସିଦ୍ଧ ଶିଳା ॥ ୧ ॥
ଅନ୍ତ ହରଷ ସଂଭ୍ରମେ ସତ ବୋଲ ପ୍ରେମେ ପଚାରନ୍ତେ ବୃଦ୍ଧା ପରବେଶ
ଆଜ୍ଞା ପୂର୍ଣ୍ଣମାସୀଙ୍କର ଶୁଣି ସମାଚାର ବାହାରେ ବାମତା ଅନ୍ତେ ତୋଷ ॥ ୨ ॥
ଅନୁରାଧା ନାମ ଋକ୍ଷ ଅବଦାତ ପକ୍ଷ ଅଷାଢ ଦଶମୀ ଶୁକ୍ର ବାରେ
ଆଦ୍ୟ ଅର୍କ ପୂଜ ପର ସନ୍ଧ୍ୟାରେ ମାଧୁରୀ ବେଶ ଦେବ କାମ ଶୁକ୍ର ବାରେ ॥ ୩ ॥

ଅଧ୍ୱେ ବୃନ୍ଦା ଦରଶନ ମୁଖ ପରସନ ସର୍ଜନା ଭୁମ୍ବର କେ,ଲୁଂ ହସି
ଅଗ୍ରେ ଅ.ଜ୍ଞା ପ.ଇ ଚଳେ ପକ୍ୱଣରେ ମିଳେ ଭ୍ରଙ୍ଗି ମଲ୍ଲିକା ଭେଟେ ଆସି ।। ୪ ।।

ଆଳି ବୋଲେ ଭାନୁ ଜେମା ପୂଜବେ ପ୍ରତିମା କରାଅ ଦେବଙ୍କୁ ଦରଶନ
ଅଂଘ୍ରି ବନ୍ଧ ବୋଲେ ନନ୍ଦ ସୁତେ ସେ ଆନନ୍ଦ ଦେଖିବ ହେଲେ ସେ ପରସନ । ୫ ।।

ଅଟେ ବିଶ୍ୱାବସୁ ନାମ ଶବର ଉତ୍ତମ ଗୃପତେ ଦେଖାଇ ପ୍ରେକ ଦ୍ୱିଜେ
ଆପେ ତେଜ ନୀଳାଚଳ ପ୍ରେ ମାଧବ ନୀଳ ସେବନୁ ପ୍ରେ ଠାରେ କଲେ ବିଜେ ।। ୬ ।

ଅନାପ୍ତାସେ ଭେଟ ନୋହେ ଶୁଣି କାନ୍ଦ କହେ ରାଧାକୃଷ୍ଣ ଲୀଳା ପ୍ରେ ବିଧାନେ
ଆଜ୍ଞା ପୂର୍ଣ୍ଣମାସୀଙ୍କର ଅବଜ୍ଞା ନ କର ଶୁଣି ସେ ହରଷ ସାବଧାନେ । ୭ ।।

ଅନ୍ତି ଶେଷେ ବୃନ୍ଦା ତଜଂ ଜାଣି ଭସ୍ମ ଭଜ ଅଗ୍ରେ ଦେଖାଇଲେ ମାର୍ଗ ତୋଷେ
ଅଘ ଅସ୍ଥି ଭେଟି ବାଟେ ସିଦ୍ଧ ଶିଳା ଭେଟେ ଶ୍ରୀ ଶ୍ୟାମସୁନ୍ଦର ଦେବ ଭାଷେ । ୮ ।।

—ଗୀତ—

( ଆଷାଢ଼ଶୁକ୍ଳ ବାଣୀରେ )

ଅଶ୍ୱ ଦର ଗଦା ଚତୁର କର
ଅର୍ଚ୍ଚନ ଈଡ୍ୟ ସେ ଚତୁରଙ୍କର
ଅଶେଷ ନାରାୟଣ ପରସନ
ଅବହେ କୃଷ୍ଣଚନ୍ଦ୍ର ଦରଶନ
ଅଚଳରେ ଉଚି,
ଅନ୍ୱେଷଣା କୃଷ୍ଣ ସ୍ଥାନ ବର୍ମ୍ୟୋଷ୍ଟୀ ।। ୧ ।।

ଅନ୍ତିର ଆନନ୍ଦ ନୋହେ କଳିତ
ଅଙ୍ଘ୍ରି ଧରଇ ହୋଇ ତରଳିତ

---

୧ । (କ) ପୋଥିରେ ନାହିଁ ।

ଅନାୟାସେ ସ୍ୱେଣୁ ବଦନରେ କେମା
ଅଙ୍କ ପାଦର ଧରି ମନୋରମା
ଆସନ୍ନ ଗୋବର୍ଦ୍ଧନ,
ଅବେଷ୍ଟିତ ସଖା ସୁରଭି ବୃନ୍ଦ ॥ ୨ ॥

---

( ଛଅ )

ଅଦ୍ରି ପ୍ରକାଶ ମଙ୍ଗଳ ସେ ମଧୁମଙ୍ଗଳ କୃଷ୍ଣ ଗୃହଁ ବୋଲେ କେମା ବଳେ
ଅଟେ ପ୍ରେ ଉପାୟ ପୂର୍ଣ୍ଣମାସୀଙ୍କର ପୂର୍ଣ୍ଣ ଲୀଳା ହେତୁ ସିଦ୍ଧ ଶିଳା ପ୍ରଜେ ॥ ୧ ॥
ଆନନ୍ଦର ଅଗାଧରେ ବୁଡ଼ି ହରି ଧରେ ବଟୁକର କହେ କୁମାରଙ୍କୁ
ଆଜ ଚଳେ ରଖି ଗାବ ଆମ୍ଭେ ଆଣୁ ଦେବ ପ୍ରସାଦ ଭରିବ ଉଦରକୁ ॥ ୨ ॥
ଅଳ ଧାମେ ପଦ୍ମଗନ୍ଧ ହରି କାମଅନ୍ଧେ ସେଦ୍ୱ ହେଗ ପଥ ଅନୁସରି
ଅବଲମ୍ବ ନର୍ମସଖା ବେଜ ଘନେ ପଖା ସଖା ପଦଚିହ୍ନ ଶୋହେ ଗିରି ॥ ୩ ॥
ଅବଲୋକ ଅବସ୍ଥିତ ତୁଳସୀ ଆଗତ ପ୍ରେକାଳେ କୃଷ୍ଣ ବିଳମ୍ବ ଜାଣି
ଅଦଭୂତ ବୋଲେ ହରି ତୁଳସିତ ଗିରି ଶିଖରେ ବୋଲୁଁ ସେ ବଳେ ଭଣି ॥ ୪ ॥
ଅଳ ଆତୁରକୁ ସ୍ଫୁଟ ପଦ୍ମା ପ୍ରକଟ ଗିରି କଟକରେ ସେନ ଚାସ
ଆସ ହେବ ଦରଶନ ଶୁଣି ପରସନ ମୁଖ ହରି ପୁଲକିତ ଗାସ ॥ ୫ ॥
ଅଧୋକ୍ଷଜ ପାଦଚିହ୍ନ ଶ୍ରୀମତୀ ଦର୍ଶନ କରି ଦେଖେ କୃଷ୍ଣ ଲୀଳା ସ୍ଥାନ
ଆସି ତିର ବାଞ୍ଛିତରେ ନଧି ଦଣ୍ଡକ୍ରରେ ଲଭ ପରି ଗାଢ଼ ଆଲିଙ୍ଗନ ॥ ୬ ॥
ଅଣିମାଦି ସମ୍ପଦରୁ ଅଧିକ ସୁଖ ଗୁରୁ ଚୁମ୍ବ ଦେବା ଭାବ ମନ ଜାଣେ
ଅନ୍ତେ ରାଧା ଲଜ ଲଜ ଓଷ୍ଠ କଢ଼େ ବୋଳ ଚୁମ୍ବ ଇଚ୍ଛା ଗଣ୍ଡ ଦରୁପଣେ ॥ ୭ ॥
ଆଣି ଧାତୁ ଢାଳେ ଚାସ ଉରଜରେ ପଟ ଗିରି ଶୋଭା ଭୁମି ଭୁମି ବୃନ୍ଦେ
ଆଟପ ମାଳ[୧] ମାଳଞ୍ଚରେ ମଣ୍ଡନ୍ତ ପ୍ରୀତିରେ ଶ୍ରୀ ଶ୍ୟାମସୁନ୍ଦର ଦେବ କହେ ॥ ୮ ॥

---

୧ । 'କ' ପୋଥିରେ 'ମାଳ' ପଦ ନାହିଁ ।

—ଗୀତ—

( ଆଷାଢ ଶୁକ୍ଳ ଦ୍ୱାଣୀ )

ଅମୃତ ମନ୍ତ୍ରେ ଭୁବନ ଆଧାରେ
ଅନ୍ଧ ଅଟାଳ ଭବନ ଆସାରେ
ଆବେଶ୍ୱ ନନ୍ଦନ ବନ ଅସାରେ
ଅଧୀରତା ମଧୁବନ ଆଶାରେ
ଅପର ସଂସାରେ,
ଆନ ନାହିଁ ତତ୍ତ୍ୱ ପରଶଂସାରେ ॥ ୧ ॥

ଆଗ୍ରହ କୋଦା କାଳ କଣ୍ଟକରେ
ଆଶ୍ୱାସ କାମ କାଳ କଣ୍ଟକରେ
ଆକୃଷ୍ଟ ପ୍ରେମଶୀଳା କଣ୍ଟକରେ
ଅଶନ ପାତ ଶୀଳା କଣ୍ଟକରେ
ଅଙ୍କ କଟକରେ,
ଆତ୍ମେଶ୍ୱର ଅଙ୍ଗ ପ୍ରକଟ କରେ ॥ ୨ ॥

( ସ୍ୱାତ )

ଅସ୍ଥି ବିଦ୍ୟୁତ ଦ୍ୟୋତରେ ଚୋଳେ ମୂର୍ଦ୍ଧତରେ ଅଙ୍କେ ବସି ପଞ୍ଚ ଅଙ୍ଗେ ଜଡ଼
ଅନ୍ତ ଉଚ୍ଚ କୁଚ ଯୋଡ଼ ହୃଦୟରେ ଜୋଡ଼ ଦଡ଼ାଦଡ଼ ଶୁଣି ଘଡ଼ଘଡ଼ ॥ ୧ ॥
ଅର୍କଶିଳାର ଉଦ୍ଗମ ମନ୍ଦର ସୁଷମ ଶିଳାଖଣ୍ଡ ଭୁଜ ବୃନ୍ଦା ସଞ୍ଜ
ଅନୁଭବ ବିଦ୍ୟୁ ଦନ ନବ ବିଦ୍ୟୁଂ ଘନରସେ ତନ୍ତୁ ଭୋଗେ ସୁଖେ ବଞ୍ଜ ॥ ୨ ॥
ଅଷ୍ଟ ସ୍ଫଟିକ ସୁଶିଳା ଉର୍ଦ୍ଧେ ପ୍ରେମଶିଳା କାନ୍ତ ଉପରେ ଦଶଇ ରତେ
ଅବଲୋକ ଦ୍ୱାବ ଜାତ ହୋଇ ଅନାପୃତ ବଳିଭ ରସାଇ ଉପରତେ ॥ ୩ ॥

୧ । (କ) ବିଦ୍ୟୁବେନ୍ଧ

ଅବକାଶ ନାହିଁ ଲେଶ ଫୁଲ ଶରେ ତ୍ରାସ ଦେବାକୁ କୁସୁମ ରୂପ ପାଣି
ଅଙ୍ଗ ବେଷରେ ଅବଳା ବଳା ବୋଲେ ଫଳା ସେ ମୁକରେ ଡ଼ାକେ ସୁକଙ୍କିଣି ॥ ୪ ॥

ଅନୁରତ ଶେଫାଳିକା ମାଳିକା ବାଳିକା କାଳିକା କବରୀ ବମନ୍ତ୍ରନ
ଅଙ୍କେ ବସାଇ ସୁକେଶୀ ଅଞ୍ଚଳରେ ବସି ଦେଖାନ୍ତି ଗତ ସୁରତ ସ୍ଥାନ ॥ ୫ ॥

ଅନା ତୋ ରୂପ ଧାତୁରେ ଲେଖି ମୁଁ ଆତୁରେ ଅଶ୍ରୁ ମୁଖେ ବର୍ଷେ ପ୍ରେ ବରଷା
ଆଣି ପଦକ ଉରଜେ କରି ବଞ୍ଚେ ମୁଁ ସେ ତବ ପଠ ବୋଲେ ମୀନ ଦୃଶା ॥ ୬ ॥

ଆଜ ମାଳଣ୍ଡ ମାରୁତ ତବ ସଙ୍ଗ ସ୍ମୃତ ନେଇ ପ୍ରିୟ ତଥା ଶିଖୀ ନାଠ
ଅଭ୍ରେ ଦେଖିବ କାଳକା ପ୍ରେ ଜୟ ପତାକା ଉଡ଼ାଇଲା ପ୍ରାପ୍ତେ କାମରାଠ ॥ ୭ ॥

ଆନ ଆନକର ନାଦ ଚମକାଇ ହୃଦ ପ୍ରିୟା ବିନା କ୍ଷଣେ ବଞ୍ଚ ନୋହେ
ଅଚ୍ଛୁ ପାଷାଣରେ ପାଳି ଦେଖେ ଯୋଷା ହରି[1] ଶ୍ରୀ ଶ୍ୟାମସୁନ୍ଦର ଦେବ କହେ । ୮ ।

— ଗୀତ —

( ଆ ଷଡ଼ଶୃଙ୍ଗ ବାଣୀରେ )

ଅଭିଳାଷ ଦେଖି କର ଯୋଷାର
ଆଣି ବସାଇଲେ ପାଳରେ ସାର
ଅଦରି ମୋ ଛରେ ହରିତ ସାର
ଅଣ୍ଟେ ଧରି କୁଚ ଯୁଗଳ ସାର
ଅତନୁ ଅସାର,
ଅପହରିକୁ ଉସାର ନସାର । ୧ ॥

ଆଜ ହୋଡ଼ରେ ମୁଁ ତୋ ଚରିକର
ଅବଶ୍ୟ ହାରିଲେ ତୋ ଘରିକର
ଆସ୍ୟ ହଳଇ ଜିଣି ସୁଧାକର
ଆଧିତ ଝଲକା ବାଳନଭର
ଅତି ପ୍ରୀତିକର,
ଅଛୁ ତ ହାରିଲେ ଗ୍ରହ ନ କର ॥ ୨ ॥

---

୧ । 'ର' ପୋଥିରେ 'ହରି' ନାହିଁ ।

( ୫୦ )

ଅନ୍ତେ ଆରମ୍ଭିଲେ ଖେଳ ପଞ୍ଚାପଞ୍ଚ ଲେଳ କୃଷ୍ଣ ଛଳ କଟେ ଶ୍ରୀମଣ୍ଡରେ
ଆନ ଗତି ଯୁଗ ବନା ଅଷ୍ଟ କ ନବୀନା ଅତିଶସ୍ତ ମାଡ଼ ପଞ୍ଚତିଘେ ॥ ୧ ॥

ଆଟପ ବାମା ହାରି ବ୍ରୀଡ଼ା ଲଭି ହେଲ ଛୁଡ଼ା କୃଷ୍ଣ ଦୋଡ଼ ମାଗେ ବାସ ଧରି
ଆଜ କୁନ୍ଦଲତା ବୋଲେ ମୁଳ ପେ ନ ଦେଲେ ନେମ କଳନ୍ତର ଲେଖି ହରି ॥ ୨ ॥

ଅଭିମତ ମୋର ହେବ ଶୁଣି ପ୍ରିୟ କହ୍ବ ମୂଳ ଆଉ ଫୁଲ ବଶେଷରେ
ଅଙ୍କେ ପ୍ରିୟା ଘେନ ବସି ହାସ ରସେ ରସି ଆଉଜ ପାଷାଣ ଉପସରେ ॥ ୩ ॥

ଅଷ୍ଟସଖୀ ଆଦି ଯେତେ ସେବା ଅନୁମତେ ବିଳାସିନୀ ରସେ ନୃତ୍ୟ ରଙ୍ଗେ
ଅତି ଆନକର ନାଦ ସ୍ଥୁରେ ରଚି ବାଦ ଶିଖୀ ନାଚେ ଘନ ଉତ୍ତୁ ସଙ୍ଗେ ॥ ୪ ॥

ଆଣିଥିଲେ ଯେ ଅଶନ ଘୃତ ପକ୍ୱାନ୍ନ ବୃନ୍ଦାଙ୍କ ସମ୍ଭାର ପକ୍ୱଫଳ
ଆପେ ଶ୍ରୀମତୀ ପରଷେ କୃଷ୍ଣ ଭୁକ୍ତେ ଶେଷେ ପ୍ରିୟା ଭୁଞ୍ଜେ ଘେନ ଆଳିକୁଳ ॥ ୫ ॥

ଅନ୍ତେ ତାମ୍ବୁଳ କର୍ପୁର ଭୁଞ୍ଜି ସାରି ପୁର ଗମନେ ଉତ୍ସୁକ ପ୍ରିୟତମା
ଆସ୍ୟେ ଚୁମ୍ବ ଦିଆଦେଇ ପ୍ରୀତି କୁଦାକୁହ୍ବ ଅନୁରାଗ ପ୍ରେମ ଅନୋପମା ॥ ୬ ॥

ଅଟେ ପଦର ବିପଦ ବିଷାଦର ପଦ ଆଗ ସେହ ଛୁଡ଼ ପଛେ ସୁଖୀ
ଅତି କଷ୍ଟେ ପୁରେ ମିଳି ସଙ୍ଗେ ଘେନ ଆଳି ଜଟିଳା ହରଷ ବଧୂ ଦେଖି ॥ ୭ ॥

ଆସି ଅଚଳର ତଳେ କୃଷ୍ଣ ସଖା ମେଳେ ଦେବ ଭୋଗ ନଦେଇ ମନ ତୋଷେ
ଅବଧାନ ହୋଇ ଦିନ ଭବନ ଗମନ ଶ୍ରୀ ଶ୍ୟାମସୁନ୍ଦର ଦେବ ଭାଷେ ॥ ୮ ॥

ଇତି ଶ୍ରୀ ଅନୁରାଗ କଳ୍ପଲତା ଅଷ୍ଟମ ସ୍ତବକ ପୋଷ୍ଠ ବିଂଶ କୁସୁମ ସମାପ୍ତ ।

— ତୃତୀୟ କୁସୁମ —

# ଆଦ୍ୟ ବିଭାଗ ବୋଲି

( ଗୁଣସାଗର ବାଣୀରେ )

ଆଷାଢ଼ ଶେଷରେ ବୃଷ୍ଟି ବିଶେଷରେ
ଶ୍ରାବଣେ ପ୍ରବଳ ଘନ
ଅନଙ୍ଗ ପ୍ରବଳେ ସଙ୍ଗ ନ ତେଜନ୍ତେ
କାମିନୀର କାମୀ ଜନ ।୧।।

ଅନ୍ଧ ତମସରେ କର୍ଣ୍ଣାଟ ଦେଶରେ
କେକା ବାଣୀ କଲ୍ଲ ଛନ୍ନ
ଅବାତ ଭବନେ ରସେ ନିଧୁବନେ
ଦମ୍ପତି ଅନବଚ୍ଛିନ୍ନ’ । ୨ ।

ଆକର୍ଷଣରେ କେଶ ଧାରଣରେ
ସୁଖୀ କେବଳ ବାଳକା
ଅବକାଶ ନାହିଁ ବନ୍ଧନକୁ ତହିଁ
ପତନ ଫୁଲ ମାଳକା ।। ୩ ।।

ଅଟ୍ଟାଳିକା ପରେ ରାମା ଉଜ୍ଜ୍ୱଳରେ
କାନ୍ତ କୋଳେ ଥିଲ୍ଲ ବସି
ଅଙ୍ଗେ ଚନ୍ଦ୍ର ଜଡ଼ି ଶୁଣି ଘଡ଼ଘଡ଼ି
ଅନାବୃତେ ରତେ ରସି ।। ୪ ।।

---

୧ । (କ) ଅନବଚ୍ଛିନ
(ଗ) ଅନବଚ୍ଛିନ

ଅସନ୍ନ କଠିନ ଉଚ୍ଚ ପୀନ ସ୍ତନ
ମରଦନେ ସୁଖୀ ବାଳା
ଅକ୍ଷି ମୁକୁଳିତ କରଇ ମୁଦ୍ରିତ
ଚଳନ ପର୍ଯ୍ୟଙ୍କେ କଳା ।୫।

ଆଲୋକ କାଳିକା କୋଳେ ବକାଳି (ମାଳି)କା
କଳଙ୍କରେ ନବ ବାଳୀ
ଆସିବେ ଅଙ୍କରେ କାନ୍ତ କ ଛୋଡ଼ରେ
ବରଚିବେ କାମ କେଳି ॥ ୬ ॥

ଅଭିମତ ପ୍ରୌଢ଼ା କଲ୍ପିବେଳେ ଗାଢ଼ା
ମିଳି କାମେ ହୋଇ ମତ୍ତ
ଅବସନେ ରକ୍ଷି ପରସନ ମୁଖୀ
କଣ୍ଠ ଆଶ୍ଳେଷରେ ରତ ॥ ୭ ॥

ଅବଧି ବଳିଲେ ବଧିବ ପ୍ରବଳେ
ମନସିଜ ପାଞ୍ଚ ଜାଣି
ଆସେ ବରଷାରେ କର୍ଦ୍ଦମ ପଥରେ
ମହାବୃଷ୍ଟି ପୁଂସମଣି ॥ ୮ ॥

ଅର୍ଦ୍ଧଚନ୍ଦ୍ର ଦାନେ ଉରଜ ଈଶାନେ
ଦୃଢ଼ବ କରେ କାମନା
ଅବଧେ ପ୍ରଦୋଷ ଦେଖି ରମା ତୋଷ
ସୁରସେ ହେଲେ ପ୍ରମନା ।୯॥

ଅବଲୋକ ନଭ ବଦ୍ୟୁଘନେ ଶୋଭ
କେ ରମା ଗୁଞ୍ଜରାତରେ
ଅମ୍ବେଶ୍ୱର ପାଶେ ଘନେ ଦାସୀ ପେଷେ
ମଦନ ଅନାସୃତରେ ।୧୦॥

ଅଭିମତ ତାର ଥିଲା ଆସିବାର
ସେତେକାଳେ ସନ୍ଦେଶ ଶୁଣି
ଆସେ ସଖା ମେଳ ଚେଳ ସେ ଚପଳ
ଜନ୍ମାଇଁ ଆନନ୍ଦ ଶ୍ରେଣୀ ।୧୧।

ଅମ୍ଭିତ ବିରହା — ଗୃହେଁ ପ୍ରିୟ ଯୋଷା
କେରଳରେ ପ୍ରୀତି ବଢ଼
ଆରୋହି ଅଙ୍କାଳ — ରଙ୍ଗେ ପଣା ଖେଳି
ଚୁମ୍ବ ଆଲିଙ୍ଗନ ଦେଇ ॥ ୧୨ ॥

ଅଗତ ମାଳଷ୍ଟ — ମାରୁତ ବହନ୍ତି
ଡାକଇ କାଳ କଣ୍ଟକ
ଅନାସ୍ତ କାମେ — ରତେ ରସି ପ୍ରେମେ
ପ୍ରଣ୍ଡକେ ବନ୍ଧ କଣ୍ଟକ ॥ ୧୩ ॥

ଅବଲୋକନକୁ — କରଇ ଘନକୁ
ଉତ୍ତରେ ମାଳବ ରାମା
ଆସି କୁତୂହଳେ — ଫଟୁଁ ପନ୍ତ ଖେଳେ
ଆଲିଙ୍ଗନ ପ୍ରୀତି ସୀମା ॥ ୧୪ ॥

ଅଳପ ରସନା — କର୍ଣ୍ଣରେ ରସନା-
ଶୋଖିର କଲ୍ପ ଶୃଜନ
ଅଙ୍ଗ ସୀତ୍କାରେ — ମଦନ ହକାରେ
ଆରମ୍ଭିଲେ ମଧୁବନ ॥ ୧୫ ॥

ଅଧମୁଖେ ରଠ — ଢଅନ୍ତେ କରଟ
ବଙ୍ଗ ଦେଶର ଯୁବତୀ
ଆମ୍ରେଶ୍ୱର କୋଳ — ତେଜନ୍ତେ ଚପଳ
ସ୍ନେହକାଳେ ବୃଷ୍ଟି ହତନ୍ତି ॥ ୧୬ ॥

ଆରୋହାଇ ଅଙ୍କେ — ନାୟକ ନାଗରଙ୍କ
ବୋଲେ ହରି ଦେଲା ଘନ
ଆରମ୍ଭି ଶୃଙ୍ଗାର — ନ ତେଜ ଅଗାର
କଟିରେ ଛନ୍ଦ ଜଘନ ॥ ୧୭ ॥

ଆତୁର ଶ୍ରୀପତି — ଅଭେଟ ଶ୍ରୀମତୀ
ଦୁଃଖେ ବଞ୍ଚେ ଷଡ଼ନନ
ଆଗତରେ ଜୀବ — ବାର ମଣେ ଜୀବ
ମୃତ୍ୟୁ ପିଣ୍ଡେ ଆଲିଙ୍ଗନ ॥ ୧୮ ॥

ଅଙ୍ଗନା ରତନ ରତ୍ନାକର ମନ
କୃଷ୍ଣଚନ୍ଦ୍ରେ ଉଚ୍ଛୁଳିତ
ଆନନ୍ଦ ସଂଭ୍ରମ ଆଳିଙ୍ଗନ ପ୍ରେମ
ଉଭୟର ପ୍ରକଳିତ ।। ୧୯ ।।

ଅନୁରାଗ ବାଣୀ ରଚନା ତୋ ବାଣୀ
କର ସାଣା ବାଣୀ ଜିତ
ଅନଙ୍ଗ ବଇରୀ ଶପଥ କରନ୍ତି
କୁନ୍ତଳା ଜାବ ରଞ୍ଜିତ ।। ୨୦ ।।

ଆସନ ମନରେ ଲେଖା ନୟନରେ
ସ୍ୱପ୍ନ ଶୟନରେ ଜନା
ପ୍ରାଣ ଥିଲେ ଶିବ ନଷ୍ଟେ ଜନାଶିବ
ଉରଜ ଶିବ ନଯାନା ।। ୨୧ ।।

ଅଶେଷ କୀର୍ତ୍ତିନ ଶ୍ରବଣ ରଚନ
ବେଣୀର ଯତନ ଗର୍ବ
ଅଣୁ ପରମାଣ ବେଣୀ ପରିମାଣ
ଯେନ ପରମାଣ ଜବ ।। ୨୨ ।।

ଅଧର ମଧୁରେ ସ୍ୱ ବର୍ଣ୍ଣ ବନ୍ଧୁରେ
ରସନା ମଧୁରେ ବୁଡ଼ି
ଅଗାଧ ରସରେ ସିନ୍ଧୁ ସରସରେ
ବୁଡ଼ା ବଶେଷରେ ସ୍ପୃଷ୍ଟ ।। ୨୩ ।।

ଆଳତସ୍ନ ହାସେ ବୋଲନ୍ତି ଯାହା ସେ
କହ୍ଲଲ ହର ଉଚିତ
ଅଘ ଅଜଗର ବିଷ କାଳୀୟର
ନ ବାଧେ ଯାକୁ କଣ୍ଠତ ।। ୨୪ ।।

ଅଗ୍ନି ପରସନ କର ଦରଶନ
ଧୂମ୍ରଗଳ ବୃନ୍ଦାବନୁ
ଆଣିଲ ସେ ନନ୍ଦ ବୃନ୍ଦଣ ସାନନ୍ଦ
ମନେ କରୁଣ ଭବନୁ ।। ୨୫ ।।

ଅଷ୍ଟ ଜାଙ୍ଗଳକ — ଯେ ବନ୍ଧ୍ୟା କୁତୁକ
ଅଗ୍ନି ଜଳ ପ୍ରମୁ ଆଦ
ଅଛୁ ସର୍ବ ଜଣା — ଦେଖି ଦେଖୁ ବଣା
ହେବୁ କ ଯେ ପ୍ରିୟବାଧା । ୨୬ ।

ଆଗେ ଗୋପେଶ୍ୱର — ବନ୍ଧିଥିଲେ ଶିର
ଯାହା ନାମ ଚନ୍ଦ୍ରେ ଲେଖି
ଅବନତେ ରାଧା — ସ୍ୱପ୍ନରେ ବାଧା
ଚେତନଲେ ଯାହା ନରେଖି ॥ ୨୭ ॥

ଅଦ୍ୟ ନୋହିବ — କପାଇଁ ସେ ଶିର
ଶପଥକୁ ତୁମ୍ଭେ କର
ଆଜ ବନ୍ଧ ଟିରେ — ମହାନୁରାଗରେ
ପ୍ରିୟାକୁ ବୃନ୍ଦ ଶ୍ରୀହରି ॥ ୨୮ ॥

ଯେ ଅଷ୍ଟାକ୍ଷର ପ୍ରାନ୍ତ ଯମକ —

ଅବଗା ହତରେ — କେବା କଣ୍ଠତରେ
ସୁହମଣି ବନାଶିବ
ଅନୁକମ୍ପା ହୀନ — ହୋଇଲେ ମଦନ
ସୁରମଣି ବନାଶିବ ॥ ୨୯ ॥

ଅତି ସୁଖ ପଦ — ସାଜତ ଯେ ପଦ
କମଳ ରାଗ ବେଶରେ
ଆନ ନାହିଁ ଧନ — ଆନନରେ ଧ୍ୟାନ
କମଳ ରାଗ ବେଶରେ ॥ ୩୦ ॥

ଅଙ୍ଗ ଚତୁରକୁ — ପିଧାନ ହେଉକୁ
କାମ କଳା ବସନରେ
ଅବଲୋକନରେ — ଲେଖି ନୟନରେ
କାମକଳା ବଶ ନରେ ॥ ୩୧ ॥

ଅଙ୍ଗନା ମୋ ଠାରେ — କରୁଣା ଲୋକରେ
କ ଆଦର କରିଧନ

ଆସି ଯେ କାଳରେ                    ଚନ୍ଦ୍ର ବନ୍ଧୁଳରେ
    ଜ ଆଦର ବରଧନ ॥ ୩୨ ॥

ଆଗତ ଯେ କାଳ                    ପ୍ରିୟା ବନା କାଳ
    ନଭରସା ଜୀବନରେ
ଅଚ୍ଛିଦ୍ରରେ ପାତ                    ପୂରତ ସଂଜାତ[1]
    ନ ଭରସା ଜୀବନରେ ॥ ୩୩ ॥

ଅଙ୍ଗ ଯେ ଭୂଜନା                    କରିବେ ଲଲନା
    ଅତିରକ୍ତ ସରଣୀରେ
ଅକଳିତ ଶମା                    ଚୀରତ ସୁଷମା
    ଅନ୍ତରକ୍ତ ସରଣୀରେ ॥ ୩୪ ॥

ଅନଳ ସୁବାସେ                    ଘର ବନ୍ଧୁ ଆସେ
    ଘନାଘନ ପରିଧିରେ
ଆଦ୍ୟନ୍ତ ସୋମରେ                    ମନ୍ଦ୍ରେ ସୁଷମରେ[2]
    ଘନାଘନ ପରିଧିରେ ॥ ୩୫ ॥

ଅମ୍ବୁଦେ ଅବାଧା                    ଲୁଚି ରମେ ସୁଧା
    କର ନକ୍ଷତ୍ର ମାଳାରେ
ଅଚ୍ଛି ଗୁମ୍ଫି ଧନ                    ଜରଜ ଶୋଭନ
    କର ନକ୍ଷତ୍ର ମାଳାରେ ॥ ୩୬ ॥

ଅମ୍ବୁବାହ ଘୋର                    ଧ୍ୱନି ଶୁଣି ସୁର-
    ତରଙ୍ଗିଣୀ ଭଙ୍ଗମାନ
ଅଧିକରେ ଜାତ                    କଲେ ଅବିରତ
    ତରଙ୍ଗିଣୀ ଭଙ୍ଗମାନ ॥ ୩୭ ॥

ଆଶ୍ଳେଷେ ବପତ                    ହୋଇଯେ ଦେବ ଛନ୍ଦ
    ଦରମୁଖ ହା ରବରେ

---

୧। ସଂଘାତ (ପୋଥିପାଠ)

୨। ସୁସମରେ ( ,, )

ଅର୍ପଣରେ ଶର
ପିଣ୍ଡ ମନ୍ତ୍ରେ ହର
ପରମୁଖ ହାରବରେ ॥ ୭୮ ॥

ଆକାଶ ପ୍ରେପର
ଗୋବର୍ଦ୍ଧନ ଗିରି
ସ୍ତରେ ରତ କାମ କେଳି
ଆଲୋକ ରଚନ
କଙ୍କଣ ଘଟନ
ମୌଗ୍ଧ୍ୟ ସ୍ୱବେ ପୃଚ୍ଛେ ବାଳୀ ॥ ୭୯ ॥

ଅଙ୍ଗନା ମାନରେ
ଭରେ ନୟନରେ
କଙ୍କଣ ବୋଲନ୍ତି ବୁଧ
ଅସମ୍ଭା ବଚ ସ୍ୱେ
କଣ୍ଠବ ନଷ୍ଟପ୍ରେ
ମୋ ମାନସ ନୋହେ ବୋଧ ॥ ୮୦ ॥

ଅତ୍ୟୁତ ଭଷଣ
ଅଶ୍ରୁ ତାକୁ ଜାଣ
ସେ ନୋହିବାକୁ ଜନନ
ଅଭିଷେକ କରେ
ନତ୍ୱା ମୁଁ ଶଙ୍କରେ
ହେମ ଚମ୍ପା କରି ଦାନ ॥ ୮୧ ॥

ଅମ୍ବୁକଣା ଚେବେ
ଜଣା ହେଲା ସ୍ୱେବେ
ଅମ୍ବୁଜ ଆନନ୍ଦ ଭଟେ
ଆଳସ୍ୟକୁ ଦନ
ଶେଷରେ ଗମନ
କୃଷ୍ଣ ଅବରୋହ ଆସେ ॥ ୮୨ ॥

ଆଗତ ଶ୍ରାବଣ
ପୂର୍ଣ୍ଣିମା ରକ୍ଷଣ
ଗର୍ଗ ଉପଦେଶ ମତେ
ଅଚରିଲେ ନନ୍ଦ
ବିଶେଷ ଆନନ୍ଦ
ଗନ୍ଥା ବାନ୍ଧି ଯଥୋଚିତେ ॥ ୮୩ ॥

ଅଟେ ବଳଦେବ
ଯେଣୁ ବସୁଦେବ
ସୁତ ସେ ତେଣୁ ଗୃପତ
ଅବମାରେ ବଳ-
ରାମ ରୂପେ ବାଳ
ଉଲ୍ଲଣଶାସ୍ତ୍ରୀ ସ୍ଥାପିତ ॥ ୮୪ ॥

ଅନନ୍ତ ଫଣା ଶିରେ[1] ବସ୍ତ୍ର[2] ଅଳଙ୍କାରେ
ବିପ୍ର ପୂଜେ ଉପଗୃରେ
ଆଣି ବସ୍ତ୍ର ଯେତେକ ଲଙ୍ଘାଇଲେ ଲୋକ
ଜୟ ଜୟ ଧ୍ୱନି ସ୍ଫୁରେ ।। ୪୫ ।।

ଅବମୀ ଧାରଣ ଯେଣୁ ସେ କାରଣ
ତୋଷ ଅବମୀ ପୂଜନେ
ଆଦର ବାଦ୍ୟରେ ଯତ୍ନ ଆଦରରେ
ଗନ୍ଧାଙ୍କୁ[3] ଭେଟିଲେ ଜନେ ।। ୪୬ ।।

ଆରୋହଇ ସିଂହ କାଳିକା ବିଦେହ
ସପକ୍ଷରେ ଉଦ୍ଭବରେ
ଅଧିକ ଗର୍ଜନ କି ବରଷା ଜନ
ଜଳ ସ୍ଥଳ ଉଦ୍ଭବରେ ।। ୪୭ ।।

ଆଗତ ବେଦ୍ୱଣୀ ଅଷ୍ଟମୀକି ଜାଣି
ରାଧା ଉତ୍କଣ୍ଠିତା ମତି
ଅନେକ ଯୁବତୀ ମେଳେ କ୍ରୀଡ଼ା ଖ୍ୟାତି
ଦେଖିବା କୃଷ୍ଣ ମୂରତି ।। ୪୮ ।।

ଆଣେ ନନ୍ଦ ନିମ- ନ୍ତ୍ରଣ ଦେଇ ପ୍ରେମ
ବନ୍ଧୁ ବୃଷଭାନୁ ବାଦ
ଅତି ପ୍ରୀତି ମୂଦେ ରାଧାଙ୍କୁ ଯଶୋଦେ
ନିଯୋଗେ ପାକ ସମ୍ବାଦ ।। ୪୯ ।।

ଆଭରଣ ବାସ କୃଷ୍ଣ ନବ ବେଶ
ଦ୍ୱିପ୍ର ପୂଜାସନେ ବସି
ଅଛନ୍ତି ଜଟିଳା ଯେ ଗୋପ ମଣ୍ଡଳା
ଦ୍ୱିଜ ବୃନ୍ଦା ପୂର୍ଣ୍ଣମାସୀ ।। ୫୦ ।।

---

୧ । (କ) ଶିରେ
୨ । (କ) ବସ୍ତ୍ର
୩ । (ଗ) ଗନ୍ଧା

ଅର୍ଘ୍ୟ ଦେବାବେଳେ — ଶ୍ରୀମତୀର ଚଞ୍ଚଳ
ଅପାଙ୍ଗେ ନେତ୍ର କୁରଙ୍ଗୀ
ଅଚ୍ୟୁତର ଦୃଷ୍ଟି — ଲଭେ ସୁଖ ସୃଷ୍ଟି
ଅବଲୋକନେ ବରାଙ୍ଗୀ ॥ ୫୧ ॥

ଅଶନ ଉତ୍ତମ — କରି ହୃଷ୍ଟମନ
ବରଚ ଦରଦ୍ରା ଖେଳ
ଆବାସେ ଗମନ — ରତ୍ନ ସମ୍ପ୍ରଦନ
ଲଭି ଆଭରଣ ଚେଳ ॥ ୫୨ ॥

ଅବଦାତ ପକ୍ଷେ — ରାଧା ଜନ୍ମ ଲକ୍ଷେ
ଅଷ୍ଟମୀରେ ବୃଷଭାନୁ
ଆତ୍ମୀୟ ବାନ୍ଧବ — ଶୁଣାଇଲେ ସର୍ବ
ନନ୍ଦ ଘେନ ଗଲେ ସୂନୁ ॥ ୫୩ ॥

ଅବଲୋକ ମାତା — ମଣ୍ଡି ଆତ୍ମମାତା
କୃଷ୍ଣ ଜାମାତାରେ ସ୍ନେହ
ଅନୁତାପ ଚିନ୍ତା — କଳହାନ୍ତରିତା
ପରି ରେ ହୋଇଲେ ସେହ ॥ ୫୪ ॥

ଅବସ୍ଥିତ ଗୃହ — ମେଳେ ଗୃହସ୍ଥ ଗୋଷ୍ଠ
ମତ୍ତ କୃଷ୍ଣ ଦରଶନେ
ଅବଲମ୍ବ ପାଇ — ନମିତ୍ର ଆସଇ
ଦୃଷ୍ଟି ସୁଖ ରହେ ମନେ ॥ ୫୫ ॥

ଆସ୍ୟ ପରସନ — ଲଭି ସନମାନ
ବନ୍ଧୁ ଚମ୍ପୁ ଗୃହେ ଗଲେ
ଅଟେ ଶ୍ୱଶୁରର — ଗୃହ ସ୍ୱର୍ଗସାର
କୃଷ୍ଣ ଦେଖି ବନ୍ଧୁ ବୋଲେ ॥ ୫୬ ॥

ଅଗ୍ରଜ ସେ ଜୀବ — ବାରେ ଘେନ ସଙ୍ଗ
ବାଳକ ଆରମ୍ଭି ଖେଳ
ଅବମାଣ ରାମ — ସେ ପୁରୁଷୋତ୍ତମ
ପାଞ୍ଚ ହେଲେ ନଗାପାଳ ॥ ୫୭ ॥

ଆନ କେ ସର୍ଜିବ ଅଦ୍ଭୁତ ପଶୁ ଘୋର  
ଧର୍ଷଣ ରଙ୍ଗେ ବହଳ  
ଆସି ବ୍ୟୋମାସୁର କଇତବେ ଘୋର  
ମେଷ ଛଡ଼ା ନେଲା ହରି । ୫୮ ।।

ଅଚଳ ଖୋଲ଼ରେ ନେଇ ସଙ୍ଗଭରେ  
ଦ୍ୱାରେ ଦେଇ ମହା ଶୀଳ  
ଅବଶେଷ ରାଜା କହୁବାରୁଁ ରାଜା  
ବୋଲେ ଦେବ ନଗପାଳ ।। ୫୯ ।।

ଅଚ୍ୟୁତ ବନ୍ଧରେ ଅଗ୍ରଜ ସହରେ  
ଜାଣି ଶ୍ରୀମନ୍ତ ବିରସ  
ଆଳ ବୋଧେ ଭଣି ଉପାୟକୁ ବଞ୍ଚି  
ଆସିବେ କୃଷ୍ଣ ଅବଶ୍ୟ ।। ୬୦ ।।

ଆଗତ ପ୍ରେ କାଟିଲ ଆମ୍ଭେଶ୍ୱର ହେଲେ  
କହିଲେ ଉପାୟ ବଳେ  
ଆସିଲୁଁ ମୋ ସଖି ତୁମ୍ଭଙ୍କୁ ନ ଦେଖି  
ଅଧୀର ମତ୍ତ ଚରଳେ ।। ୬୧ ।।

ଅଦ୍ରିପୁରେ ଲୀଳା ଦ୍ୱୈପର ହେଲା  
ଆସନ୍ନ ଦିନ ଶେଷରେ  
ଅଳୀକ ବଚନ ଶୁଣି ଦୈତ୍ୟବାଳ  
ଧରି ଦେଲେ ନରେଶରେ ।। ୬୨ ।।

ଅବଧ୍ୟରେ ବାଧା ଭେଟିକୁ ଅବାଧା  
ମନାସି କ ପ୍ରେକ୍ଷ ଶୁଭ  
ଅମୃତ ପାଣି ଅର୍ଚ୍ଚନ ପ୍ରେ ଆଣି  
ବ୍ୟୋମକେଶ ତରି ଶୋଭ ।। ୬୩ ।।

---

୧ । (କ) ଶଠବ

ଅଟେ ପଶୁ ଶ୍ରେଣୀ    ପଶୁବତ ଶିଶୁ
ନାଶ ନୃପ ଆଜ୍ଞା ପାଇ
ଅସୁରଙ୍କୁ ମାରି    ବାଳକ ଈଶ୍ୱର
ଗୋକୁଳେ ପ୍ରବେଶ ହୋଇ ॥ ୭୪ ॥

ଆଖଣ୍ଡଳ ଯଜ୍ଞ    ପୂଜା ସହସ୍ରାକ୍ଷ
ସମ୍ଭାର କରି ଲୋକନ
ଆମ୍ଭେ ତ ଗୋପାଳ    ଇନ୍ଦ୍ର କିଁ ଭୂପାଳ
କହିଲେ ନନ୍ଦ ନନ୍ଦନ ॥ ୭୫ ॥

ଅଧୀନତା କେହି    ହେବା ସମ ହୋଇ
ଯିବା ଗୋ-ଧନ ପୂଜନେ
ଅବନୀ ଭୂତଳେ    ଇନ୍ଦ୍ର ଉପଗ୍ରହେ
ଅର୍ଚ୍ଚନ କୃଷ୍ଣ ବଚନେ ॥ ୭୬ ॥

ଅଚଳ ରୂପିଣ    ଶ୍ରୀକୃଷ୍ଣ ଆପଣ
ବୋଇଲେ ମୁଁ ବ୍ରଜ ରକ୍ଷଣ
ଅତି ଲମ୍ଫ କରି    ଭକ୍ଷି ଗିରି ଶିରେ
ଯେ ଉପାସ୍ୟ ନ ଭକ୍ଷଣ ॥ ୭୭ ॥

ଅନ୍ନ ତ ସୁବର୍ଣ୍ଣେ    ଶୀଳପାତ ତୃର୍ଣ୍ଣେ
ଗିରିର ଶିର କୋମଳେ
ଆପଦ ପଡ଼ିଲେ    ଯେଉଁ ମନ୍ତ୍ର ବଳେ
ଚିର ଉପାଡ଼ିବ ହେଲେ ॥ ୭୮ ॥

ଅଭୟକୁ ଶୁଣି    ସେ ଗୋପାଳ ଶ୍ରେଣୀ
ଉତ୍ସବାନ୍ତେ ମିଳେ ପୁରେ
ଆଖିର ମଣ୍ଡଳ    ନାଶେ ଆଖଣ୍ଡଳ
ବସେ ସୁର ଗଜ ପରେ ॥ ୭୯ ॥

ଆଜ ମୋର ଜନ୍ମ    ହତେ କୃଷ୍ଣ ଷଙ୍ଗ
ହେବ ବ୍ରଜେ ହୋଇ ଛନ
ଆଣି ପୟୋଧର    ଯୋଡ଼ାଇ ଅମ୍ବର
ଆଶ୍ଚର୍ଯ୍ୟ ହେଲା ଲୋକନ ॥ ୮୦ ॥

ଅଟେ ଶତମନ୍ୟୁ ଜାତ ଶତମନ୍ୟୁ
ବ୍ରଜ ନାଶକୁ ବରଷେ
ଅରି ବାସବର ଗିରି ପୂଜାବାର
ଫଳ ବ୍ରଜବାସୀ ଘଟେ ।। ୬୧ ।।

ଆର୍ଦ୍ର ଗୋକୁଳରେ ବପ୍ସ ମେଘରେ
ମନ୍ତ୍ର ପଢ଼ି ଟେକ ଶୈଳ
ଅନୃତ ନୋହେତ ପିତାଙ୍କ ଭଷିତ
କହ୍ନ ଉପାଡ଼ ଅଚଳ ।। ୬୨ ।।

ଅଭିମତ ପାଇ ଇନ୍ଦ୍ର ଭୋଗ ଦେଇ
ଅଙ୍କିତ ରାଧା ଚରଣ
ଆଲୋଚନା ଚିତ୍ତେ କୁତୁକେ ଯେମନ୍ତେ
ପ୍ରିୟା ଉରଜ ଧାରଣ ।। ୬୩ ।।

ଅନ୍ନରେ ସଂଭୃତ କରି ଗୃହ ବନ୍ଧୁ
ବହ୍ର ସୁରଭି ସନ୍ତତେ
ଆତପତ୍ର ଗିରି ଚଳେ ରହେ ପୂରି
ସୁଖେ ବ୍ରଜବାସୀ ସେତେ ।। ୬୪ ।।

ଅନ୍ତକା! ନିମିତ୍ତ ପାକ ବିରଚିତ
ଯଶୋଦା ଦିଅନ୍ତି ଅନ୍ନ
ଅର୍ଦ୍ଧ ବାମ କରେ କୃଷ୍ଣ ହସିକରେ
ଦକ୍ଷିଣ କରେ ଅଶନ ।। ୬୫ ।।

ଊର୍ଦ୍ଧ୍ୱ ନାଦ ସାଥ ସଖା ପ୍ରେମ ନିମିତ୍ତ
ଗିରି ଧରି ଅନ୍ନ ଭୁଞ୍ଜେ
ଅଭିନବ ଘାସ ସୁରଭି ଅଶେଷ
ଚରିବାରେ ମନ ରଞ୍ଜେ ।। ୬୬ ।।

ଅନିଳ ପ୍ରଚଣ୍ଡ ଧାରା ହସ୍ତି ଶୁଣ୍ଡ
ଇନ୍ଦ୍ର ବଜ୍ର ମାରେ ରୋଷେ
ଅଙ୍କିତ ଗୋବିନ୍ଦ ପାଦ ପଦ୍ମବୃନ୍ଦ
ଦେଖି ସେ ଲାଜେ ନ ଆସେ ।। ୬୭ ।।

ଅମର୍ଷ ସହାୟ ବଳରେ ପ୍ରଳୟ-
କାଳରେ ସୁମେରୁ ଯଥା
ଅଧିକ ବର୍ଦ୍ଧନ ହେଲା ଗୋବର୍ଦ୍ଧନ
କୃଷ୍ଣ ବଳ ପାଇ ତଥା ।। ୭୮ ।।

ଅଭ୍ର ମାତଙ୍ଗରେ ବାଜନ୍ତେ ବେଗରେ
ଇନ୍ଦ୍ର କନ୍ଧରୁ ପତନ
ଅମ୍ବୁହୀନ ଘନ ବୃଷ୍ଟି ସାତଦନ
ଅନ୍ତେ ଦୁର୍ବଳ[1] ପବନ ।। ୭୯ ।।

ଆକାଶ ନିର୍ମଳ ଉଡୁ ରଶ୍ମି ଜାଳ
ନଭ ଅବନୀରେ ପୂର
ଆଶ୍ରରେ ନର୍ତ୍ତିତ ଯଥା ସ୍ଥାନ ସ୍ଥିତ
ଗିରି କଲେ ଦେବ ହରି ।। ୮୦ ।।

ଅଧିକ ମହାକ୍ଷ ସ୍ଥିତ ସହସ୍ରାକ୍ଷ
ସୁର ପଥରେ ବର୍ତ୍ତିଷ୍ଠ
ଅଚ୍ୟୁତ ଆଲୋକ ଅର୍ଥରେ ଗୋଲୋକ
ତେଜ ଆଗତ ସୁରଭି ।। ୮୧ ।।

ଅଭୟକୁ ଦେଇ କୃଷ୍ଣଙ୍କୁ ଭେଟାଇ
ଗାବ ଚରନ୍ତେ ପ୍ରେକାନ୍ତେ
ଆନମ୍ର ମୁକୁଟ ନମେ ସୁରଗଣ
କୃଷ୍ଣ ପାଦ ପଦ୍ମକାନ୍ତେ ।। ୮୨ ।।

ଅଭିଷେକ କୁମ୍ଭି- ଗଣ ଯେ ଆରମ୍ଭି
ହେମ କୁମ୍ଭେ ତୀର୍ଥ ଜଳେ
ଅନୁଚର ଦେବେ ନିଜ ସେବା ସେବେ
ଆଭରଣ ଗନ୍ଧ ମାଳେ ।। ୮୩ ।।

---

୧ । ଦୁର୍ବଳ (ପୋଥିପାଠ)

ପ୍ରକାରାନ୍ତରେ ଶୃଙ୍ଖଳା ଚନ୍ଦ୍ରବନ୍ଧ—

ଅନବଦ୍ୟଚମାସ୍ୟ[1] ଲୋକ ଭଜନୀୟ
ଚରଣେ ବନ୍ଦନ୍ତୁ ଜନ
ଅନବରତରେ ପଞ୍ଚାଗ୍ନି ରୂପରେ
କର ପ୍ରାଣୀ ଭୁକ୍ତ ଅନ୍ନ ।। ୮୪ ।

ଆଖଣ୍ଡଳ ସ୍ତୁତି ଶୁଣନ୍ତେ ଶ୍ରୀପତି
ବର ଦେଲ ପରସନେ
ଅପରାଧ ଯମ ସେ ଗୋବିନ୍ଦ ନାମ
ଦେଇ ଗତ ସ୍ୱ ଭବନେ ।। ୮୫ ।।

ଆପଣେ ସୁରଭି ଅତି ତୋଷ ଲଭି
ଅଭିଷେକ କ୍ଷୀରଧାରେ
ଆପଦନ୍ତୁଁ ଗାଇ ରକ୍ଷା କଲ ସାଇ
ସ୍ତୁତି ରଚେ ଗୋ-ମୂତ୍ରରେ ।। ୮୬ ।।

ଗୋ-ମୂତ୍ର ଛନ୍ଦ—

ଅଘହର କର କ୍ଷମ୍ୟ ହାସକର
ପୁଣ୍ୟ ଜନ ରବ ହିଦ
ଅଘଦଉ କର କ୍ଷମ୍ୟ ହାସକର
ପୁଣ୍ୟ ଜନଙ୍କ ବରଦ ।। ୮୭ ।।

ଅନୁରାଗ ଲଭି ଗୋଲୋକେ ସୁରଭି
ହରଷରେ ପରବେଶ
ଆଶ୍ରୟ ପ୍ରବର ଶ୍ରୀ ଶ୍ୟାମସୁନ୍ଦର
ଦେବର ରାଧା ଜୀବେଶ ।। ୮୮ ।।

---

୧ । (କ) ଅନବଚନୀୟ

— ତୃତୀୟ କୁସୁମ —

॥ ଦ୍ୱିତୀୟ ବିଭାଗ ବୋଲି ଲେଖନ ॥

# ଶାରଦ ଋତୁ

(ଯଶୋବନ୍ତ ଦାସଙ୍କ ଫଗୁଆ ସ୍ୱର ବୋଲି ବୃତ୍ତେ)

ଅନ୍ତ ବରଷା ଶରଦ ସମାଗମ
ଅଭ୍ର ପଟଳ ଜରନ୍ତ ନାସ୍ତି ସମ ॥ ୧ ॥

ଅଶେଷରେ ଘନ ରସରେ ବଞ୍ଚିତ
ଅନଦ କ ବିଦ୍ୟୁକାନ୍ତ ଅପହୃତ ॥ ୨ ॥

ଅର୍କ କରକୁ ପ୍ରସାରି ଆଲିଙ୍ଗନ
ଅମ୍ଭୋଜମା ଆଶା ନାସ୍ତି ପରସନ ॥ ୩ ॥

ଛଳ —

ଆସ୍ତୂର୍ଣ୍ଣ ବିଦ୍ୟା କୁହୁକ ଚତୁ ଠାରେ
ଅଛ କଲ ଶମ୍ବରକୁ ପ୍ରକାଶରେ ॥ ୪ ॥

ଆପଗା ଦ୍ୱିକୂଳ ଘାଟରେ ରଞ୍ଜିତ
ଅନ୍ତର ଝଟିପିରୁ ଉଜ୍ଜ୍ୱଳେ ସ୍ଥିତ ॥ ୫ ॥

ଅକୂପାରେ ଅଭିସାର ବନ୍ଧୁଢରେ
ଆକୁଳରେ ଚନୁ ଚନୁଡ଼ାକୁ ଧରେ ॥ ୬ ॥

ଅଲଭ୍ୟରୁ ଘନରସ ବରଦରେ
ଅଭ୍ରେ ଭ୍ରମି ଚାତକ ଧନକୁ ହରେ ॥ ୭ ॥

ଅନ୍ତର ତପସ୍ୱୀ ମାନସରୁ ହଂସ
ଆଗ ୨ ସେପରି ମାନସରୁ ହଂସ ॥ ୮ ॥

ଅରଣ୍ୟର ମଣି ବେଣ କୁସୁମରେ
ଅଳ ନାୟକ ଆଗତ କୁସୁମରେ ।। ୯ ।।

ଅଗସ୍ତି କୋରକ ରୂପ ମାର କରେ
ଅଳ ଗୁଣ ଦେଲା କାମୀ ମାରକରେ ।। ୧୦ ।।

ଆଶୁଗ ଜାତ ତମକ ଯୁତ ପାଣି
ଆଦ୍ୟେ ପ୍ରାବୃଟରେ ଦେଇଥିଲା ପାଣି ।। ୧୧ ।।

ଆକଳ୍ପ ସ୍ୱେ କନ୍ୟା ନଶି ବରଣକୁ
ଅମୃତ କରର କର ଗ୍ରହଣକୁ ।। ୧୨ ।।

ଅବତଂସ ସ୍ୱେ ନମିତ ପଦ୍ମବନ
ଆବଳେସୁ ଆରବ୍ଧା ତାଟଙ୍କ ଯୋଗ ।। ୧୩ ।।

ଅଗ୍ନି ରେଜ୍ୱଣୀ ବେଶର ନଥ ନାକେ
ଅରୁଣ ରୁଚିର ସ୍ୱାନ୍ତଂ[1] ସୁନ୍ତଳକେ ।। ୧୪ ।।

ଅଟେ ବୁଧ ମନ୍ଦ ମାରକତ ବାଳ
ଆଶୁଜାତ ଗୁଚ୍ଛ ମୋତି ମଲ୍ଲିକାଳ ।। ୧୫ ।।

ଆମଣ୍ଡନ ମୂଳ ଗଳେ ପୃଷ୍ଟ ମାଳ'[2]
ଅଙ୍ଗୁ ହସ୍ତେ ଚନ୍ଦା ସୁବଳସୁ ଝଳ ।। ୧୬ ।।

ଆଢ୍ୟ ରତ୍ନପଦ କୁଚ କଞ୍ଚୁକର
ଅଟେ ରଜତ ଜର ଝୁମ୍ପା ଉତର ।। ୧୭ ।।

ଅମ୍ବର ତାରକଳକ ପିନ୍ଧ ଧୀର
ଆଗତ ବଧୂ ଉଜ୍ଜ୍ୱଳ ରସେ ଚୋର ।। ୧୮ ।।

ଆଶ୍ଳେଷରେ ଶୁଚ ସିନ୍ଧୁ ଉଚ୍ଛୁଳତ
ଇତି ପରହାସେ ହାସେଁ କ ଲଳତ ।। ୧୯ ।।

---

୧ । ଶ୍ୱଁଢ (ପୋଥିପାଠ)

୨ । (କ) 'ମାଳ' ପଦ ନାହିଁ ।

ଛନ୍ଦ —

ଉଦ୍ଭୂତ କ୍ଷଣରେ କାମ ଦର୍ପ କରେ
ଅଧିକ ସମୃଦ୍ଧ ମିଳ ସପକ୍ଷରେ ॥ ୨୦ ॥

ଆଶ୍ୱିନ ପୂର୍ଣ୍ଣିମା କୁମାର ଉତ୍ସବ
ଆନନ୍ଦେ ଖେଳେ କପର୍ଦ ଜନ ସର୍ବ ॥ ୨୧ ॥

ଅଧିକ ସୁବେଶ କାମ ଉତ୍ସାହରେ
ଅଟ୍ଟାଳରେ ରାଧା ମାଧବ ବିହରେ ॥ ୨୧ ॥

ଆଲିଙ୍ଗନ ଚୁମ୍ବ ହୋଡ଼ କର ମୂଳ
ଆରମ୍ଭିଲେ ରହସ୍ୟ କପର୍ଦ ଖେଳ ॥ ୨୩ ॥

ଅଷ୍ଟସଖୀ ବୃନ୍ଦା ସମ ଦେହବନ୍ତ
ଆଚରେ ତଥାପି ରାଧା ପକ୍ଷପାତ ॥ ୨୪ ॥

ଆଶ୍ଲେ ଭୁଜ ବୋଲେ ଉପାଡ଼ିଲ ଚିର
ଆଶ୍ଲେଷ କେନ୍ଦ୍ର ଶିଖର ସୁକୁମାର ॥ ୨୫ ॥

ଅଳିକଟେ କୃଷ୍ଣ ବୋଲେ ଦାନ୍ତ ଭେଦ
ଉନ୍ମୋଚନା ଭୁଜବନ୍ଧେ ଦପେ ମୂଦ ॥ ୨୬ ॥

ଅଦ୍ଭି ଉପାଡ଼ିଲୁଁ ଅଭ୍ୟାସରୁ କର
ଅନୁଦନେ ରାଧା କୁଚ ଚିରି ଧର ॥ ୨୭ ॥

ଆଳି ବୋଲନ୍ତି ବନ୍ଧୁକ ମଧୁକରେ
ଅମକରନ୍ଦ ଚୁମ୍ବନ ମଧୁକରେ ॥ ୨୮ ॥

ଅଧୋକ୍ଷଜ ବୋଲେ ହେଜ କରେ ପାନ
ଅଳ ଅର୍ଥେ ଯାହା କର ସଂଚୟନ ॥ ୨୯ ॥

ଆସ୍ୟେ ଆସ୍ୟ ଦେଇ ଭୁଜ ଛନ୍ଦାଛନ୍ଦ
ଅବଲୋକ ଶୁକ ଶାରୀ ବଦାବଦ ॥ ୩୦ ॥

ଆଜ ସ୍ୱେକ ସଖୀ ଯୋଗେ କୃଷ୍ଣ ଚମ୍
ଉତ୍ତ ରାସ କରେ ରାଧା ମୁଖ ସୋମ ॥ ୩୧ ॥

ଅଜ୍ଞା ବୃନ୍ଦାର ମୂକତ ବାକ୍ୟ ଗତେ
ଅଧୋକ୍ଷଜ ରାଧା ମୁଦ ସିନ୍ଧୁ ବଢ଼େ ॥ ୩୨ ॥*

ଆନନ୍ଦିତ କାଳେ କୃଷ୍ଣ ଚିତ୍ତ ଜାଣି
ଅପେ କହନ୍ତି ଶ୍ରୀମତୀ ମଞ୍ଜୁ ବାଣୀ ॥ ୩୩ ॥

ଅଭିନବ ବ୍ରଜ କନ୍ୟା ଅଭିମତ
ଅଭିରତେ ଅନୁଗ୍ରହ ସନମତ ॥ ୩୪ ॥

ଅବଲୋକ ନୀଳ ଘନ ଛବି କରି
ଅପେକ୍ଷତେ ଘନରସ ବ୍ରଜନାରୀ ॥ ୩୫ ॥

ଅପବାଦ ବୋଲେ ପ୍ରୀତି ସୁଧା ହରି
ଅବକାଶ ଅନ୍ୟ ରସେ କି ବିହରି ॥ ୩୬ ॥

ଆରମ୍ଭିବା ରସ ପ୍ରେମ ଶରଦରେ
ଅପହତ ହିଂସା ମାର ଶରଦରେ ॥ ୩୭ ॥

ଆନନ୍ଦ ବଳି ବେଚକ ଯେ ବାଞ୍ଛିତ
ଅଗଦକାର କଳ୍ପଲ୍ପ ପରି ହିତ ॥ ୩୮ ॥

ଅଚ୍ୟୁତ ବୋଧେ ଯେ ତବେ ସୁଚ୍ଛେଦ
ଆମ୍ଭେ ସେହି ବିଷୟେ ତେବେର ମୁଦ ॥ ୩୯ ॥

ଅବରୁଦ୍ଧ ରସ କେଳି ବୃନ୍ଦକେଣୀ
ଅଚରିବା କାର୍ତ୍ତିକ ପୂର୍ଣ୍ଣିମା ନିଶି ॥ ୪୦ ॥

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଆଦରଣ ହ୍ରଦ ମେର ତେର ଭାବ
ରହେ ଦୂରେ ଅବକାଶ ନାହିଁ ଆନ ପ୍ରେମ

---

* ଶ୍ଳୋକ—

ଯଥା ଦେବୋ ବିମୁକ୍ତୋସି କୃଷ୍ଣବଦନସଂକଟାତ୍
ତଥାହଂ ଦେବୋ ନାଥ ଦୂରଦୁଃଖ ବିମୋଚୟେ ॥ (ପୋଥିପାଠ)

ଅଙ୍ଗ କୈସା ଭଇ ଭିନ୍ନ ଉଭୟ
ଯେକ ଜୀବନ ଇଚ୍ଛା ଶିବ ଭବାନୀର ସମ ଗୋ । ଘୋଷା ।
କି ଆରେ ସମା,
ଅଛି ନ ଅଣଇ ଶୋଭା ଦୃହୁଁ ଦୃହୁଁ
ମନଲୋଭା ଗୁଣ ଗୁଣି ନ ଅଣଇ ଯାମ ଗୋ ।। ୧ ।।

## —ଉତ୍କଣ୍ଠା ବୋଲି—

ଆଳସ୍ୟକୁ ଗତ ଜାଣି ଅଧମୁଖ
ଆଶ୍ରିର କୃପାଶ୍ରି ପରସନ ମୁଖ ।। ୪୧ ।।

ଅବଧି ଦିନ କାର୍ତ୍ତିକ ପୂର୍ଣ୍ଣମାସୀ
ଅଗାର ଭିତରେ ଗାର ଲେଖି ତୋଷି ।। ୪୨ ।।

ଅନୁଦିନ ଉତକଣ୍ଠା ଉତ୍ସାହ ଯେ
ଅତି ବୃଦ୍ଧି ଚନ୍ଦ୍ରକଳା ସଙ୍ଗେ ଭଜେ ।। ୪୩ ।।

ଅପି ପୂର୍ଣ୍ଣ ପୂର୍ଣ୍ଣିମାରେ ଏ ଉଭୟ
ଅଶେଷରେ କଲ ଉତକଣ୍ଠା ଚୟ ।। ୪୪ ।।

ଅନଙ୍ଗଭୂତ ପ୍ରବଳେ ଛନ୍ନ ମନ୍ତ
ଅଙ୍ଗ ବୃଦ୍ଧି ପାଶୋରଲେ ସେ ଯୁବକ୍ଷ ।। ୪୫ ।।

ଅତ୍ୟନ୍ତ ଅଙ୍ଗ ସଙ୍ଗରେ ରଖି ଚିତ୍ତ
ଅଶ୍ରୁ ପୁଲକ ଜୃମ୍ଭାରେ ପ୍ରପୂରିତ ।। ୪୬ ।।

ଅଧ ଭେଗ ଦଣ୍ଡରେ ଯେ ରତ-ଈଶ
ଆକାର ପ୍ରଦର ମଧ୍ୟ ସମାଶ୍ଳେଷ ।। ୪୭ ।।

ଯୁକ୍ତ ଯମକ—

ଆନ ପ୍ରସଙ୍ଗ ନୋହିଲେ ମିହକର
ଅସୁଖ ମଣନ୍ତି ଦେଖି ମିହ କର ।। ୪୮ ।।

ଆରମ୍ଭିଲେ ସୁତ ହୋଇ ଦିନକର
ଆପଣା ପଦବୀ ଦେଇ ଦିନ କର ।। ୪୯ ।।

ଅଶରେ ଦାନ୍ତ ଅସନ୍ତି କୁମୁଦରେ
ଅଶରେ ରସାନ୍ତ ଆମ୍ବଙ୍କୁ ମୁଦରେ ।। ୫୦ ।।

ଅର୍କଦାରକୁ କଳନ୍ତି ତରୁଣରେ
ଆକାର ଗୁପ୍ତି ନୋହେ ଆଚରଣରେ ।। ୫୧ ।।

ଆପୀଡ଼ିତ ହେବାରୁ ସୁମନ ଶରେ
ଅଞ୍ଜଳି କ ସଂଲ୍ଲେଷିତ ସୁମନସରେ ।। ୫୨ ।।

ଆଶା କର ମନସିଜ କ୍ଷଣ ଯୁଗ
ଆରୂଢ଼ତରେ ମଣନ୍ତି କ୍ଷଣ ଯୁଗ ।। ୫୩ ।।

ଅସ୍ତାଚଳେ ରବି ଛବି କୋକନଦ
ଆକୁଳିତ ଦେଖି ରକ୍ତ କୋକନଦ ।। ୫୪ ।।

ଆପ୍ରସ୍ଥିତ ହୋଇ ସୁର ତରଙ୍ଗରେ
ଅଭିଳାଷୀ କାମୀ ସୁରତ ରଙ୍ଗରେ ।। ୫୫ ।।

ଅଟେ ବାରୁଣୀ ରଙ୍ଗରୁ ଆନ ନକ
ଅନ୍ତ ତାପ ଦେଲା ପଦ୍ମ ଆନନଙ୍କ ।। ୫୬ ।।

ଆଖଣ୍ଡଳ ଦିଗ ଶୋଭା ନଶାକରେ
ଅଦେହ ବିଶ୍ୱଜୟ ମନୀଷା[୧] କରେ ।। ୫୭ ।।

ଅଶ୍ୱ ଯୁଗ ପଦ୍ମରାଗ ହାରକରେ
ଅମୃତ କର ଷ୍ଟୁଟ ମିହିର କରେ ।। ୫୮ ।।

ପାଞ୍ଚ ବେନି କରେ କୋପେ ତର୍ଜମାରେ
ଅଚ୍ଛି ପିଙ୍ଗି କାମୀ ପଡ଼େ ତର୍ଜମାରେ ।। ୫୯ ।।

ଅବଦାତ ରଙ୍ଗ ବେନି ପୁଷ୍କରକୁ
ଆଶା ଦନ୍ତୀ ଟେକି ଧରେ ପୁଷ୍କରକୁ ।। ୬୦ ।।

ଉର୍ଭିକ ବେନି କଟଣୀ ଉତପନ
ଅରୁଣ ଶୁକ୍ଳ ରୂପେ ବଧୂ ତପନ ।। ୬୧ ।।

---

୧ । ମନସା (ପୋଥିପାଠ)

ଅଟେ ସନ୍ଧ୍ୟା କାଳ ଗତ ବର୍ଣ୍ଣବସ୍ତୁ
ଅମୃତ କରର ଅର୍ପିତ ବର୍ଣ୍ଣବସ୍ତୁ ॥ ୭୨ ॥

ଅନ୍ଧକାର ରଚନକୁ ସଞ୍ଜବୁକେ
ଅଣି ବନ୍ଦାପନା କଟକେ କଉତୁକେ ॥ ୭୩ ॥

ଆରମ୍ଭିଲେ ଖେଳ ଫଗୁ ଚନ୍ଦ୍ରରଙ୍ଗେ
ଆଶାବନ୍ଧୁ ମିଳ ରଙ୍ଗ ଚନ୍ଦ୍ର ର ଗେ ॥ ୭୪ ॥

ଆସେ କୃଷ୍ଣ ଗାବ ମେଳେ ଅୟନରେ
ଅତି ସୁଖ ଦେଇ ଗୋପୀ ନୟନରେ ॥ ୭୫ ॥

— ଗୀତ —

(ଗଉଣ୍ଡ ସଂଗେଣ ଗୀପ୍ରତେ)

ଆଙ୍ଗମେ ଗୋଧୂଳି ମକରନ୍ଦ କମଳୀ ମୁଖ ମଣ୍ଡି କାହ୍ନୁ[1] ବନୁ ଆଓ୍ୱେ ।
ଆସର ବାଳକ ବତୁଆ ପାଳକ ସାଥୋ ମାଥେ ଚୂଳ ଶୋଭା ପାଓ୍ୱେ ॥ ଘୋଷା ॥
ଅବ ଦେଖୋ ସଖୀ ବଂଶର ବାଓ୍ୱେ ଅତନୁ ତନୁବନ୍ତ ଗୀତ ଗାଓ୍ୱେ ॥ ୧ ॥
ଅପାଙ୍ଗ ଚନ୍ଦ୍ର ଆର ପାର ଭଇ ଉଆର ମାର ମାର ଆକାର ବନାଓ୍ୱେ
ଅତି କୃପା[2] ହାସ ଅଧର ପୀୟୂଷ ଧାର ବାର ଧୀରେ ବରସାଓ୍ୱେ ॥ ୨ ॥
ଅଟେ ମନ ଫେର ମେର ବଲହାର ଅବଲୋକ ଧୀର ଦୂର ଜାଓ୍ୱେ ।
ଅଭିନବ ନାଗର କାମରସ ସାଗର ବାଳଟକ କୋମଳେ ପରମାଓ୍ୱେ ॥ ୩ ॥

— ଚନ୍ଦ୍ରୋଦୟ ବୋଲି —

ଅମ୍ବୁ ଶ୍ରେମାଳ ଧାରେ କୁଚ କୁମ୍ଭ
ଅଟେ ଭ୍ରୁତୁ ଦୁବା ଦଧି ହାସ ନଶୋଭ ॥ ୭୬ ॥

---

୧ । କାହ୍ନୁ (ପୋଥିପାଠ)

୨ । କୃପା ( ,, )

ଆରକ୍ତ କ ବାଳ ରବି ଆଲୋକରେ
ଅକ୍ଷି ମୀନ ଗତି ଝଂପି ପ୍ରେ ଟକରେ ॥ ୬୭ ॥

ଶ୍ଳେଷ—

ଅର୍ଜୁନ କର ସ୍ୱେକାଳେ ଘର୍ମ୍ମମୟ
ଅପ୍ରସନ୍ନ ଦ୍ୱିଜ ଯମଦଗ୍ନି ଷୟ ॥ ୬୮ ॥

ଅମ୍ଭୋଜମା ବନ ମନ୍ଥୁ ପୃଷ୍ଠ ଧନ୍ୱୀ
ଅଙ୍କ ବ୍ୟାଜେ ପଙ୍କ ପ୍ରତି କରେ ଭ୍ରାନ୍ତି ॥ ୬୯ ॥

ଅଭ୍ର ଅଟଣରେ ମିଳି ହରି କଟେ
ଅନ୍ଧତମ କରି ସ୍ୱଦାଗତ କଲେ ॥ ୭୦ ॥

ଅଙ୍କ ନୋହେ ନଖେ ରହେ ସେହି ଶ୍ୟାମ
ଆପତିତ ମୋତି ହାର ମନୋରମ ॥ ୭୧ ॥

ଅଟେ ବ୍ୟୋମକେଶ ନାମ ସେ ଈଶାନ
ଅମର ତରଙ୍ଗିଣୀର ଶୋଭେ ଫେନ ॥ ୭୨ ॥

ଆଜ ନଣୀ ବିଳାସିଣୀ ମଲ୍ଲିମାଳ
ଅଛି ରଖି ଚକା କରି ସେ ମଞ୍ଜୁଳ ॥ ୭୩ ॥

ଅଙ୍ଗେ ନୋହେ ଅବତଂସ ମାଟୋପୂର୍ଣ୍ଣ
ଅବଶେଷ ପିଙ୍ଗି ଦେଲ ତାର କୂଳ ॥ ୭୪ ॥

ଆତପତ୍ର ଶ୍ୱେତ ନୃପ ଦର୍ପକର
ଅଙ୍ଗ ମାଳ ବ୍ରହ୍ମା ଲମ୍ବି ରୁଚିକର ॥ ୭୫ ॥

ଆସ୍ୟ ଗନ୍ଧକାର ଚନ୍ଦ୍ର ଶୋଭା ବଳା
ଆଖି ପିଙ୍ଗଳ ଆରକ୍ତ ସନ୍ଧ୍ୟା ବାଳା ॥ ୭୬ ॥

ଅନ୍ୟ ନଗଜନ ଲିବାଇଛି ବଣ୍ଟା
ଅଙ୍ଗ ଛଟେ ସେହି ଧୂମ ମଧ୍ୟେ ଭ୍ରାନ୍ତି ॥ ୭୭ ॥

ଅଟେ ରଜତ ପର୍ବ କଟାହ ସୋମ
ଅତି ପୂରି ଉଜ୍ଜ୍ୱଳ ଅବନ ବ୍ୟୋମ ॥ ୭୮ ॥

ଆଁଖ ଭୃକେ ଖଞ୍ଜିରଭେ ପଦ୍ମ ଭ୍ରମେ
ଆସି ଭ୍ରସନାରେ ନେତ୍ର ବୃଥାଶ୍ରମେ ॥ ୭୯ ॥

ଅଭ୍ରେ ସ୍ଥିତ ବଧୂ ବଧୂ ତୃଷ୍ଣା ଗଣି
ଅଂଶୁଜାଳ ରନ୍ଧ୍ରେ ମଧ୍ୟପାତ ଆସି ॥ ୮୦ ॥

ଅନୃତ ଜେନାଡ଼େ କୋଣଦେ ଦେଜ ମନେ
ଅଟେ ପ୍ରେମ୍ବ ହେତୁ ଯତ୍ନ ଅନୁଦନେ ॥ ୮୧ ॥

ଅବଶା ଧୂଳ କର୍ପୂର ରଜ ସମ
ଅଳ କୁମୁଦମା କ ନ ଚନ୍ଦ୍ରି ଭ୍ରମ ॥ ୮୨ ॥

ଅବଦାତ ମଞ୍ଜୁଳ ଦେଖି ଚମାଳ
ଅଭିସାରିକା ଭ୍ରମେ ସଂକେତ ସ୍ଥଳ ॥ ୮୩ ॥

ଆଲମ୍ବିତ କେ ଉଦରେ ମାଣ୍ଡର ମାଳ
ଅଦଭୂତ ମଣ୍ଡେ ବଣେ ମୋତି ଭୂଳ ॥ ୮୪ ॥

ଅଭ୍ରେ ଯଥା ଯଥା ବୃଷ୍ଟି ସ୍ଥିତକର
ଅଙ୍ଗେ ତଥା ତଥା ବଳ ଦର୍ପନର ॥ ୮୫ ॥

ଅବଲମ୍ବକ ଇଚ୍ଛି କୃଷ୍ଣ ସଂସାରବ
ଅନଙ୍ଗଷ ମଣ୍ଡଣିରେ ବସେ ଦେବ ॥ ୮୬ ॥

ଆଦରଣ ବଚାନ ରଜତ ନର
ଅଂଶୁ ରଜ୍ଜୁରେ ଦୃଢେ ବନ୍ଧନ କର ॥ ୮୭ ॥

ଅଚ୍ଛ ଚାଷଳ ରଜତ ଜର ଟ୍ରେମା
ଅପଲକ ଝଲକରେ ଦ୍ରୁତ କର୍ମା ॥ ୮୮ ॥

ଅଟେ ଚେଲଙ୍ଗ ମଣ୍ଡଣି ଜ୍ୟୋତିଙ୍ଗ
ଅଙ୍ଗୀରସ କର ବୁଧ ମନ୍ଦ ବଙ୍ଗ ॥ ୮୯ ॥

ଅଶ୍ୱିନ୍ୟାଦ ରିଷ ଭିନ୍ନ ଭିନ୍ନ ରୂପେ
ଆମନ୍ତ୍ରଣରେ ସ୍ତମ୍ଭିତ ବାନ୍ତ କମେ ॥ ୯୦ ॥

ଅନିମିଷାନ୍ଦ ରଶ୍ମି କୁନ୍ତଳ ନାଟ
ଅଦଭୂତ ପ୍ରେମ ପ୍ରେମ ଲୁଟମ୍ଭ ତୁଟ ॥ ୯୧ ॥

ଅଜ୍ଞା ପୂର୍ଣ୍ଣମାସୀଙ୍କର ଯେ ବିଧାନେ
ଅର୍କ ଚନ୍ଦ୍ରାଦ୍ୟ ରହେ ସାବଧାନେ ॥ ୯୨ ॥

ଆପେ ବୃନ୍ଦାଦେବୀ ରହେ ଜାଗ୍ରତରେ
ଅରଣ୍ୟ ଶୋଧନୀ ଧୀର ମାରୁତରେ ॥ ୯୩ ॥

ଆଚ୍ଛାଦିତ ପୁଷ୍ପ ଦଳ ସମନ୍ତତ
ଅଟେ ପଥର କୁସୁମ ରସପାତ ॥ ୯୪ ॥

ଅନୋକୃହ ଲତା ପୋଷ୍ଟ ପ୍ରବାଳରେ
ଆମଣ୍ଡିନ ପୁଷ୍ପ ଫଳ ପ୍ରବାଳରେ ॥ ୯୫ ॥

ଅଚ୍ଛି ମଣ୍ଡି ସୁରତ ବିତାନ କୁଞ୍ଜ
ଅଧେ କଣଳସୁ ତଳ୍ପ ପୁଷ୍ପ ପୁଞ୍ଜ ॥ ୯୬ ॥

ଅର୍ଦ୍ଧ କୋଟି ତିନକୋଟି ତୀର୍ଥ ଶ୍ରଣୀ
ଅର୍କକାରେ ରହେ ଭିନ ପୃଷ୍ଠ ଆସି ॥ ୯୭ ॥

ଅମ୍ବୁଜ କୁମୁଦ ଉତ୍ପଳ ବେନ
ଅଟେ ତରଙ୍ଗ ଝୁମା କହ୍ଲାର ଫେନ ॥ ୯୮ ॥

ଆଦରଣ[1] ବାଡ଼ି ବୃନ୍ଦାବନ ଗୃହେ
ଅଙ୍ଗେ ନାନା ବର୍ଣ୍ଣ ମୀନା ରଚ ଶୋହେ[2] ॥ ୯୯ ॥

ଅଟେ ମାଳ ଛୁଟ ଜବନିକା କି ସେ
ଅଛି ବନ୍ଧନ ଡୋର ସୁରନ୍ତ ସବେ ॥ ୧୦୦ ॥

ଅଳି ମୀନ ମକର କର୍କଟ ଶ୍ରଣୀ
ଆଦତ୍ୟ ଯା[3] ଭେଦେ ରହେ ସର୍ବେ ଆସି ॥ ୧୦୧ ॥

ଅମ୍ବୁ କୁକ୍କୁଟ କୋଯଷ୍ଟି ହଂସ କ୍ରୋଞ୍ଚ
ଅବସ୍ଥିତ ରତ୍ନ ଧ୍ୱନ ଶିଖୀ[4] ପାଞ୍ଚ ॥ ୧୦୨ ॥

---

୧ । ଆଦରସ (ପୋଥିପାଠ)
୨ । ଶୋହେ ( ,, )
୩ । ଜା ( ,, )
୪ । ସ୍ଥି ( ,, )

ଆସେ ଗୋବିନ୍ଦ ବନ୍ଧୁ ସୁବଳ ମେଳେ
ଅଛୁ ସୁଧା ବେଦୀ କଳ୍ପତରୁ ମୂଳେ ॥ ୧୦୩ ॥

ଆପେ ତ୍ରିଭଙ୍ଗୀ ଛନ୍ଦରେ ହୋଇ ଉଭା
ଅଙ୍ଗେ କାମ ପୀଡ଼େ ଦେଖି ବନ ଶୋଭା ॥ ୧୦୪ ॥

ଅନିଳ ଧୀରେ ଗ୍ରହଇ ପୁଷ୍ପବାସ
ଅବଲୋକ ସେ ବ୍ୟାକୋଶ ଛଳେ ହାସ ॥୧୦୫॥

ଆଲିଙ୍ଗିତ ଶଶୀ କରେ ହୋଇ ନିଶି
ଆନନ୍ଦିତରେ ଉଜ୍ଜ୍ୱଳ ଛଳେ ହସି ॥୧୦୬॥

ଅଳି ଭ୍ରମି ନ ଚାହଇ କୁମୁଦିନୀ
ଅତି ହାସତା ସ୍ୱଚ୍ଛ ହେତୁରେ ରଜନୀ ॥୧୦୭॥

ଅବଲୋକ ଉଦ୍ଦୀପନ କାମେ ମତ୍ତ
ଆରମ୍ଭିଲେ ବଂଶୀ କଳେ ମଞ୍ଜୁ ଗୀତ ॥୧୦୮॥

— ଗୀତ —

( ଶ୍ରୀ ରାଗେଣ ଗୀୟତେ )

ଆସ ଆସ ନବ ବାଳ ଆରମ୍ଭିବା ବନେ କେଳି
କାମ ସଂଗ୍ରାମକୁ ହୁଅ ସଜ ଗୋ
ଅବଲମ୍ବେ ଆସ ଧୀର- ଗମନା ଅଙ୍ଗକୁ ଘର
ସୁଜଘନ ନିତମ୍ବ ଭରଜ ଗୋ ॥ ଘୋଷା ॥

ଆକାଶେ ଉଦିତ ଚନ୍ଦ୍ରମା ନ ଦେଖି ମୁଖ ସୁଷମା
କାନ୍ତିବନ୍ତ କଳଙ୍କେ ଅଙ୍କିତ ଗୋ
ଅବଲୋକନ କରାଅ ତା ମନୁ ମଦ ଭଙ୍ଗାଅ
ଦେଖି ହେବ ଅଶେଷ ଲଜ୍ଜିତ ଗୋ ॥ ୧ ॥

ଆଜ ରଣ ରଣ ରଣେ ରଣ ନୂପୁର ଚରଣେ
ପଞ୍ଚେଷୁକୁ ଶୁଣି ଦୂର ଯିବ ଗୋ
ଆଶୁ ପଣନ୍ତ ପତାକା ଉଡ଼ାଇ ଥିବ ବାଳିକା
କହଇ ଶ୍ୟାମସୁନ୍ଦର ଦେବ ଗୋ ॥ ୨ ॥

## — ଗୋପୀ ଆଗମନ ବୋଲି —

ଅଚର ଚରମ ଜଳେ ବଶୀଭୂତ
ଅମ୍ବୁ ପାଷାଣ ପାଷାଣ ଦ୍ରବୀଭୂତ ।।୧୦୯।।

ଅନ୍ତେ ଶବୁଥିଲେ ବ୍ରଜବାଳୀ ବସି
ଆସେ ସସଂଭ୍ରମେ ଶୁଣି କଳ ବଂଶୀ ।।୧୧୦।।

ଅଙ୍ଗ ସୁବେଶ କେ ମଣ୍ଡେ ଅଳଙ୍କାର
ଆତୁର ଜାତ ବିଭ୍ରମ ଅଳଙ୍କାର ।।୧୧୧।।

ଅଲକ୍ତ ଖଲେ ପାଦ ସିନ୍ଦୂରମୟୂ
ଆନ ବିଭୂଷଣ ସ୍ଥାନ ବିପର୍ଯ୍ୟୟ ।।୧୧୨।।

ଅଳଙ୍କାର ଯେ ବିକ୍ଷେପ କୁତୂହଳ
ଅଙ୍ଗେ ବିଚ୍ଛିତ୍ତିକ କେଶ୍ବ କଲେ ମୂଳ ।।୧୧୩।।

ଅନ୍ୟମାନେ ତେଜି ଗୃହ ବ୍ୟାପାରକୁ
ଆସେ ବଂଶୀ ନାଦେ ହୋଇ ଅତୁରକୁ ।।୧୧୪।।

ଅଭିମର୍ଦ୍ଦ ମଦନରେ ଯେ ବାଧିତା
ଆସେ ଲଜ୍ଜି କୁନ୍ତ ଚନ୍ଦ୍ରହାସ ଯେନ ।।୧୧୫।।

ଈକ୍ଷୁ ଚାଟଙ୍କ ଫଳକ ଭ୍ରୂତ୍ତ ଧନୁ
ଅପାଙ୍ଗ ବାଣ ସନ୍ଧାନେ କେ ସୁତନୁ ।।୧୧୬।।

ଅଟେ ଖାଇ ଜସ୍ମିତ କୁସୁମ ଗନ୍ଧ
ଅଚ୍ଛି ଜରଜ ବେନ ମୁଦ୍‌ଗର ଶୋଭ ।।୧୧୭।।

ଆବେଦଣ କର ଗତି ମତ୍ତଦନ୍ତୀ
ଅଭିଷେଣାନ ଅମ୍ବିକା ଗତି* ।।୧୧୮।।

---

* ଶ୍ଳୋକଃ—

ଯସ୍ତେନସ୍ୟାଭିଗମନମରୌ ତଦଭିଷେଣନମିତ୍ୟମରଃ ।
ଅନ୍ୱଂ ପୂର୍ବମନ୍ୱଂପୂର୍ବଶତ୍ୟମ୍ବିକା ଇତ୍ୟମରଃ ।। ° ।। (ପୋଥିପାଠ)

ଆଦ୍ୟ ମଦନ ମଦଗ୍ଧ ଶୀର ପାନ
ଆନକ ନାଦ ନୂପୁର ବର୍ତ୍ତମାନ ॥୧୧୯॥

ଆଶାରେ ଆସାରେଂ ବନ ଗନ୍ତ କରେ
ଅମ୍ବିକା ବନେ ଦେଖି ସେ ଅନୁସରେ ॥୧୨୦॥★

ଆମେ ଯୋଗମାୟା ଉପାଶ୍ରିତ ହର
ଅନ୍ତ ନନ୍ଦ୍ରିତ ଗୋପାଳଙ୍କ ବୁଦ୍ଧା ନାଶ ॥୧୨୧॥

ଅକଳ୍ପକ ବନ କୃଷ୍ଣ ରୂପ କରେ
ଅର୍କସୁତା ଦେଖି ବର୍ଣ୍ଣେ ରୂପକରେ ॥୧୨୨॥

ଆସି ବେଢ଼ିଲେ କୃଷ୍ଣଙ୍କୁ ଗୋପୀକୁଳ
ଆଖଣ୍ଡଳ ମାଳ ସ୍ୱର ହେମଶାଳ' ॥୧୨୩॥

ଆବେଷ୍ଟିତ ବର୍ହ୍ୟପୁଞ୍ଜ ଶ୍ୟାମଘନେ
ଅନ୍ତ ତରଳିତ ବର୍ହ୍ମି ଧୃତ ସେହ୍ନେ ॥୧୨୪

ଆଭରଣ ଦ୍ୱାଦଶରେ ସୁନେପଥ୍ୟ
ଅଟନ୍ତି ମନମଥ ମନ୍ମଥ ତଥ୍ୟ ॥୧୨୫॥

ଆସ୍ୟ ଚନ୍ଦ୍ରମା ପଶ୍ଚିମେ ଶୋଭା ଦଶେ
ଅମ୍ବିକା ବ୍ରତ ପରିପୂର୍ଣ୍ଣାରେ ଭାଷେ ॥ ୧୨୬ ॥

ଅଭିନବ କୁମାରୀ ନ ଡର ମନେ
ଆସ ସିଂହ ଶାର୍ଦ୍ଦୁଳ ଭୀଷଣ ବନେ ॥୧୨୭॥

ଆସି ମତେ ଯା ଭେଟିଲ ପ୍ରେ କୃଷ୍ଣେ
ଅବଲମ୍ବେ ଅନୁପଦେ ଗୃହେ ଚଳ ॥୧୨୮॥

ଆନମାନଙ୍କୁ ବୋଲନ୍ତି ନାସ୍ତି ଧର୍ମ
ଅମାୟାରେ ପତି ସେବା ବସ୍ତୁ ସମ ॥୧୨୯॥

---

★ ସ୍ୟାଦାସାରସ୍ତ୍ୱସାରଣୀତ୍ୟମରଃ ॥ (ପୋଥିପାଠ)

୧ । ଆଶାରେ (ପୋଥିପାଠ)

୨ । ସ୍ୱାଳ ( ,, )

ଆତ୍ମା ଅଧଃପାତ ପର ପୁଂସେ ପ୍ରୀତି
ଅଚିରେ ହେବ ସ୍ୱେଦନ ସ୍ଥିତି ପତି ॥୧୩୦॥

ଆଗତ ଯା ପ୍ରେକ୍ଷାବେଳେ ନାଶିତପ୍ୟ
ଅନ୍ତେ ଶଙ୍କା ଜାତ କଲା ବ୍ରଜେ ଭୟ ॥୧୩୧॥

ଅଟେ ଚନ୍ଦ୍ରୋଦୟ ଗିରି ବିରଚିତ
ଆସ୍ୟପଦ୍ମ ବାଳୀଙ୍କର ସଂକୋଚିତ ॥୧୩୨॥

ଅଶନ ପାତ କି କରି ବିଗ୍ରହଣା
ଅଗସ୍ତିର ନାମ କଲେ ସ୍ମରଣା ॥୧୩୩॥

ଅଶ୍ରୁ କଜ୍ଜ୍ୱଳ ମିଶ୍ରିତେ କୃତ ଶିବ
ଅତି ବିଷ ବ୍ୟାପିତ କି ଅବୟବ ॥୧୩୪॥

ଅଙ୍ଘ୍ରି ପଦ୍ମମଦ ଦେଖି ମୁଖଚନ୍ଦ୍ର
ଅରି ମାରି ମାରେ ପାଇ କାଳ ଛିଦ୍ର ॥୧୩୫॥

ଅବସର ପାଇଁ ଯେ ଉଚିତ ବାକ୍ୟ
ଅଜ୍ଞା ବୃନ୍ଦାଙ୍କର ଲଭି ପଢେ ଶୁକ ॥୧୩୬॥

ଅଟ ରସ ତରଙ୍ଗ ଲାବଣ୍ୟ ସିନ୍ଧୁ
ଆମନ୍ତ୍ରଣକୁ ଅଖିଷ୍ଟ ବ୍ରଜବଧୂ ॥୧୩୭॥

ଅନୁମତି ଅଷ୍ଟାତରେ କାର୍ତ୍ତିକାନ୍ତ
ଆସି ରୋହିଣୀ ପ୍ରତିପଦାରେ କାନ୍ତ ॥୧୩୮॥*

ଆଦ୍ୟେ କୁଳଶୀଳକୁ ପ୍ରେ କଲେ ଦଗ୍ଧ
ଅତି ତୋଷି ଯାଦବର ପତି ଚିତ୍ତ ॥୧୩୯॥×

---

ଶ୍ଳୋକଃ—

* ଅନୁମତ୍ୟାମଷ୍ଟତାସ୍ୱାଂ ପ୍ରତିପଦ୍ରୋହିଣୀ ଶଶୀ
ଯଦା ଭବତି ସଂଯୋଗଃ କାର୍ତ୍ତିକାନ୍ତେ ବିଶେଷତଃ ॥ (ପୋଥିପାଠ)

× ପାଷାଣଂ ତେ ମୟା ଦଗ୍ଧଂ ସନ୍ତୋଷଂ ପରିକଳ୍ପ୍ୟ ।
ହେଦେବିରସମୁତ୍ପନ୍ନେ କୃତୋ କାମ ଉପ୍ସଂକଶ । (ପୋଥିପାଠ)

ଆପେ କୃଷ୍ଣଚନ୍ଦ୍ର ଯେଣୁ ବର୍ତ୍ତ୍ୟମାନ
ଅର୍ଘ୍ୟ ନଧବନ ଅନ୍ତେ ସ୍ୱେଦ ଘେନ[୧]   ||୧୪୦||

ଅସନ୍ତୁଷ୍ଟ ବୃନ୍ଦାବନ ଦ୍ୱିଜରାଜ
ଅଚ୍ଛୁ ହେମକୁମ୍ଭ ଦାନ ଘେନ ଆଜ   ||୧୪୧||

ଅଦଦ୍ଭୁତ ବଚନରେ ହରି ତୋଷ
ଅଟସୀ ଦେବୀ ବୋଲେ ଶାରିକା ଘୋଷ   ||୧୪୨||

ଆପଗା ପ୍ରେ ସ୍ପର୍ଶ ସ୍ଫୁର ତରଙ୍ଗିଣୀ
ଅଳକା ଯମୁନା ଶୋଭେ କୃଷ୍ଣ ବେଣୀ   ||୧୪୩||

ଅଟେ ପ୍ରଶସ୍ତ ମଞ୍ଜୁଳା ସରସ୍ୱତୀ
ଆସ୍ୟ ପୁଷ୍କର ପ୍ରସ୍ପଂ ନର୍ମଦା ଗତି   ||୧୪୪||

ଅତି ମେଘ ଗମ୍ଭୀର ପ୍ରେ ବଂଶୀ କଳ
ଅମୃତ ପୂର୍ଣ୍ଣ ବରଷା ତରବଳ   ||୧୪୫||

ଆଶୁପତି ସଙ୍ଗମକୁ ଜ୍ୟାଙ୍ଗ ପ୍ରେ
ଅଚ୍ଛୁ ଶୁଣା କ ନଦୀ ଲେଉଟି ଯାପ୍ରେ   ||୧୪୬||

ଅଙ୍ଗ ପୁଲକ ଇ ଶୁକ ଶାରୀ ବାଣୀ
ଅଛନ୍ତି ଯେ ଚତୁର୍ବିଧ ଗୋପୀ ଶ୍ରେଣୀ   ||୧୪୭||

ଅତି ପ୍ରଗଲ୍‌ଭା ସେ ରାଜକନ୍ୟା ତାର
ଅଗ୍ରସର ହୋଇ[୨] କୃଷ୍ଣେ କହେ ଗିର   ||୧୪୮||

ଅନୁସର ଅମ୍ବର ଅପାଙ୍ଗ ପାତ
ଅମ୍ବୁଦ ପାଶାସ୍ତ୍ରକୁ ବୃତକ ବତ   ||୧୪୯||

ଆମ୍ଭ ମାନଙ୍କ ଚଦଯାତେ ବକ୍ଷ
ଅଙ୍ଗ ଆଭରଣ ଶୋଭା ପରତକ୍ଷ   ||୧୫୦||

---

୧। ଶ୍ଲୋକଃ--
ରୋହିଣୀ ପ୍ରତିପଚ୍ଛନ୍ତେ, ଅର୍ଘ୍ୟଦାନଂ ମହାଫଳମିତି ॥ (ପୋଥିପାଠ)

୨। (କ) ପୋଥିରେ 'ହୋଇ' ନାହିଁ ।

ଅଳତା ଲତା ଲେଖାରେ ଶସ୍ତକର
ଅରୁଣ କୋକନଦ ଯେବେ ହେ କର । ॥୧୫୧॥

ଆୟାସକୁ ହୋଇଥିଲ ଯେ ଦୁର୍ଲ୍ଲଭ
ଅନାୟାସରେ ଯେବେଟି ସେ ସୁଲଭ ॥୧୫୨॥

ଅବମାନିତ କରୁଛ ବନ୍ଧୁ ଗର୍ବ
ଅନଙ୍ଗ ପୀଡ଼ା କାଳରେ ଅପୂର୍ବ ॥୧୫୩॥

ଆମ୍ଭ ବିନା କେ ରଖିବ ଦେବ ଜଣା
ଆଜ ବଂଶୀ କରିଦେଲ ବୁଦ୍ଧି ବଣା ॥୧୫୪॥

ଅଚନ୍ତୁରେ ଅନାହୂତ କୃଷ୍ଣ ଶୁଣି
ଆପେ ନବୋଢ଼ କନ୍ୟା ଯେ କହନ୍ତି ବାଣୀ ॥୧୫୫॥

ଅବଲୋକ ମନ୍ମଥ ମନ୍ମଥ ଚ୍ୟୁତ
ଅଭିଳାଷୀ ହେବ ବରକେ ରତ ॥୧୫୬॥

ଅଙ୍ଘ୍ରି ପଦ୍ମ କିଂଜଳ୍କରେ ସମା ସ୍ତନ[1]
ଅତି ଗଜର ଛୁଟର ଛନ୍ଦ୍ୟମାନ ॥୧୫୭॥

ଅଙ୍ଘ୍ରି କୁଚ କୁଙ୍କୁମେ ବାରମସ୍ତୁ
ଆଜ ଧାସ୍ୟେ ଛୁଡ଼ିନାହିଁ ଯେ ସଂଶୟ ॥୧୫୮॥

ଅତିରେକ ତପ ବ୍ରତ ପୁଣ୍ୟ ଦଶା
ଅନୁଗ୍ରହ ଯୋଗ୍ୟ ହେବୁ ଅଛୁ ଆଶା[2] ॥୧୫୯॥

ଅଳ୍ପ କଠିନକୁ ଦେଖି ଭୟ ଯେବେ
ଅଛୁ ଶୁଣ ପ୍ରୀତି ବଶେ ଶୀଳ ଦ୍ରବେ ॥୧୬୦॥

ଅଛୁ ପ୍ରଭୁ ଅନୁଗ୍ରହ ନିଗ୍ରହର
ଅବ୍ରତ ବ୍ରତ ବ୍ରତ ଅବ୍ରତ କର ॥୧୬୧॥

---

୧ । ରମାସ୍ତନ (ପୋଥିପାଠ)

୨ । 'କ' ପୋଥିରେ ଏହି ଧାଡ଼ିଟି ନାହିଁ ।

ଅଭିନବରୂପ ବଚନେ ଚନ୍ଦ୍ରକାମ
ଅନୁରାଗେ ଷଡ଼ାରବେ ସୁଖତମ ॥୧୬୨॥

ଅଚ୍ୟୁତ ଏ ବଚନରେ ଦ୍ରବୀଭୂତ
ଅନୁଲାପ ପୁନ ମୁଗ୍ଧ କନ୍ୟାବ୍ରାତ ॥୧୬୩॥

ଆଜ ଶିକ୍ଷା ଦେଲ ଦୃଢ଼େ ପଣ୍ଡ ଭଜ
ଆମ୍ଭ ଅଭୀଷ୍ଟ ବରଣ ନନ୍ଦାତ୍ମଜ ॥୧୬୪॥

ହୃଷୀକେଶ ପୁନ ଗୋପୀନାଥ ନାମ
ଆଜଠାରୁ ଛାଡ଼ିବାକୁ ହେବ କ୍ଷମ ॥୧୬୫॥

ଅନୋଚିତ ବା ତେବେ ହୋଇବ କଥା
ଅର୍ଚ୍ଚନ ଦେବ ବ୍ରତ ନୋହିବ ବୃଥା ॥୧୬୬॥

ଆତ୍ମା ତୋଷ ହେଲେ ଅନ୍ନ ଉପହାରେ
ଆପ୍ୟାୟିତ ଇନ୍ଦ୍ରିୟ ନିକର କରେ ॥୧୬୭॥

ଅନ୍ନ ବିନା ଚନ୍ଦନାଦି ଉପଚାର
ଅଙ୍ଗ ଲେପନରେ ନୋହେ ହିତକର ॥୧୬୮॥

ଅଙ୍କୁରିତ ପ୍ରେମ ବୀଜ ସମ୍ପାଦନ
ଅମ୍ବରରେ ବିଜଦ୍ୟୁତି ନବଘନ ॥୧୬୯॥

ଅକ୍ଷି ମୀନରେ ବନ୍ଧ ଚଳନ ହୋଇ
ଆନନ୍ଦିତ କର ଘନରସ ଦେଇ ॥୧୭୦॥

ଅଚ୍ୟୁତ ଯେ କାମାତୁର ଯେ ବଚନେ
ଆଳାପିତ ପୁନ ଗୋପକନ୍ୟାମାନେ ॥୧୭୧॥

ଆମ୍ଭ ମାନସ ନିର୍ମଳ ଆଦରଣ
ଅନୁକ୍ଷଣେ ତବ ପ୍ରତିବିମ୍ବ ଦୃଶ୍ୟ ॥୧୭୨॥

ଅଗାରକୁ ଗଲେ ସେ ବିଶେଷ ସୁଖ
ଅପହୃତ କେ କରିବ ପଦ୍ମମୁଖ ॥୧୭୩॥

ଆଣିଅଛ ଆମ୍ଭ ମନ ଧନ ହରି
ଅଣ୍ଟିନାହିଁ ଯେ ଅଧିକ ଗୋପଶିରୀ ॥୧୭୪॥

ଅବଧାନ କଲେ ପିବୁଂ ନସଂଶୟ
ଅଣ୍ଟୁ ମୋହିଲେ ଭୃଙ୍ଗ ଆମ୍ବର ନ୍ୟାୟ ॥ ୧୭୫ ॥

ଆଣି ଗୋପୀ ହରଣୀ କ ବଂଶୀ କଳେ
ଆବେଷ୍ଟିତ କଲ ଦୃଢ ପ୍ରେମଜାଲେ ॥ ୧୭୬ ॥

ଅନଙ୍ଗର ଆଶୁଗେ କରାଅ ବଦ୍ଧ
ଅଭିନବ ବ୍ୟାଧ ମାତ୍ର କର ସିଦ୍ଧ ॥ ୧୭୭ ॥

ଅମୃତରୁ ରୁଚ ଗୋପକନ୍ୟା ଗିର
ଆନ କହନ୍ତ ବଦେଶୀ ଗ୍ରାମ୍ୟାଚାର ॥ ୧୭୮ ॥

ଅନୁସର ବନ୍ଦିବନୁ ପଦ୍ମପାଦ
ଆଶା ଭଙ୍ଗ ଦୋଷ ଜାଣ ଧର୍ମବିଦ ॥ ୧୭୯ ॥

ଆଶ୍ରିତରୁ ଦୋଷାକର ହେଲେ ଶଶୀ
ଆପେ ଶଙ୍କର ବନ୍ଦିଲେ ଶିରେ ରସି ॥ ୧୮୦ ॥

ଅମ୍ଳୁହ ମଳନ ପଙ୍କରୁ ଜାତ
ଅଳି ମନ ହରେ ବଣିକ ସୁକାନ୍ତ ॥ ୧୮୧ ॥

ଅନ୍ତଯେ ହରଷିତ କୃଷ୍ଣ ଶୁଣି
ଅଧୋକ୍ଷଜର ମେଘ ଗମ୍ଭୀର ବାଣୀ ॥ ୧୮୨ ॥

ଆପ୍ୟାୟିତ କଲ ପ୍ରେମ ବାଗ୍‌ମୃତେ
ଆଜ ବହର ସ୍ୱଇଚ୍ଛା ସୁଖମତେ ॥ ୧୮୩ ॥

ଆସେ ସ୍ୱେକାଳେ ଶ୍ରୀରାଧା ଚନ୍ଦ୍ରାବଳି
ଅପସର ମାର୍ଗ ଦେଲେ ଗୋପବାଳି ॥ ୧୮୪ ॥

ଅବଲୋକ ପ୍ରିତ ମୁଖ ପରସନେ
ଆନନ୍ଦିତ ପରସ୍ପର ଦରଶନେ ॥ ୧୮୫ ॥

ଅଚ୍ୟୁତର ବାମେ ରାଧାଦେବୀ ଶୋହେ
ଆସି ଦକ୍ଷିଣରେ ଚନ୍ଦ୍ରାବଳି ରହେ ॥ ୧୮୬ ॥

ଅବଲମ୍ବି ବେନି କାନ୍ଧ ବେନି କରେ
ଆଲିଙ୍ଗିତ କୃତ ମାଳ ତମାଳରେ ॥ ୧୮୭ ॥

ଅଷ୍ଟାପଦେ ଇନ୍ଦ୍ରନୀଳ ଦ୍ୱୀପସାର
ଆବେଷ୍ଟିତ ଗୋପୀ ଶୋଭା ଅକୂପାର ॥୧୮୮॥

ଅବୟବ ଶତ ବାଦ ହେମ ନଦ
ଅଛି ରସାଣି କୁଙ୍କୁମ ଝଳ ଶୋଭ ॥୧୮୯॥

ଅଧରୁ ତାମ୍ବୁଳ ବୋଳ ଉଦଗାର
ଅନୁରାଗ ଉଚ୍ଛୁଳନ୍ତି ପରକାର ॥୧୯୦॥

ଆନନ ବନ୍ଧେ ପିକ ପକାଇ ବାଳ
ଅତି କମାଇଣ ତାଟଙ୍କ ଝୁମ୍ପି ବାଳ ॥୧୯୧॥

ଅଳ୍ପହାସ ସେ ସମୟେ କରେ ବ୍ୟକ୍ତ
ଅତନୁର ଚନ୍ଦ୍ରହାସେ କାମୀରକ୍ତ ॥୧୯୨॥

ଅଟେ ମଦନ ମନ୍ଦର ମନ୍ତ୍ରୁ ଆଳ
ଅଷ୍ଟି ଖଣ୍ଡା ଝମକାଇ କି ଚଞ୍ଚଳ ॥୧୯୩॥

ଆପେ କରଜେ ମାଜେ କବରୀ ଖଣ୍ଡା
ଆଲୋକାଇ କାଢ଼ି ଖାପ ଫୁଲ ଧଣ୍ଡା ॥୧୯୪॥

ଅଛୁ କାଞ୍ଚୁଲି ଖାପେ ଖଡ୍ଗ ସ୍ତନ
ଅଳ୍ପ କାଢ଼ି ତା କରାଇ ବିଲୋକନ ॥୧୯୫॥

ଆଚ୍ଛାଦଇ ପୁନ ପାଣି ଦେଇ ଭଲେ
ଅତି ରମ୍ୟ ସୁହେମ ଫଳକ ଛଳେ ॥୧୯୬॥

ଅସିତ ଡୋରି ରଖିଅଛୁ ସୁତଳକ
ଆସି ଯତ୍ନରେ କରାଇ ଅବଲୋକ ॥୧୯୭॥

ଅବଳା ହୋଇ କି ବଳେ କରି ପାଞ୍ଚ
ଅଙ୍ଗେ ବାନ୍ଧିଛୁ କାମ ସାୟକ ପାଞ୍ଚ ॥୧୯୮॥*

---

* ଶ୍ଳୋକ—

କବରୀତିଲକଶ୍ଚୈବ ଦରହାସସ୍ତଥୈବଚ ।
ସ୍ତନଯୁଗପଦ୍ମେ ଚେ ପଞ୍ଚବାଣସ୍ୟ ସାୟକାଃ ॥
ଶରେ ଖଡ୍ଗେ ଚ ସାୟକଶ୍ଚର୍ମଣଃ ॥ ॰ ॥ (ପୋଥିପାଠ)

ଆସ୍ୟ ଦେଖାଇ ଚେନ କାହା ଚିରମଂରେ
ଅମୃତାଂଶୁ ଲୁଚନ୍ତି କି ତରମ୍ବନରେ ॥୧୯୯॥

ଅଙ୍ଗୁଳି ଚିରଜନନ ଚିବୁକରେ
ଅବଲୋକେ ଧରି ମଧ୍ୟ ସ୍ନେହ କରେ ॥୨୦୦॥

ଆନ କହେ ଭରି ଦେଇ ଉଲ୍ଲବଦ୍ୟ
ଅଂଘ୍ରି ରୁନ୍ଳ ବଜାଇ ନୂପୁର ବାଦ୍ୟ ॥୨୦୧॥

ଅଳସାଙ୍ଗୀ କେ ଜଙ୍ଘ କୁ ଛନ୍ଦେ କରି
ଅଞ୍ଚଳରେ ଉଡ଼େ କଙ୍କାସାଙ୍ଗ ଫେରି ॥୨୦୨॥

ଅତି ଲୋଲୁପ ଅଚ୍ୟୁତ ବେଳୁବେଳ
ଅକ୍ଷି ସନ୍ଧାନ ସମାନରେ ମଞ୍ଜୁଳ ॥୨୦୩॥

ଅବଲୋକେ ସ୍ନେହାମତେ ସଙ୍ଗ ମନେ
ଆସି ପରିବେଶ ହେଲେ ଫୁଲ ବନେ ॥୨୦୪॥

— ଗୀତ —

(ଗଉଡ଼ ରାଗେଣ ଗୀୟତେ)

ଅବଲୋକ ଆମ୍ଭଙ୍କୁ ଦେଖ ସ୍ନେ ଫୁଲ ହସେ
ଅଳରେ ମଧୁ ଚଖାଇ ମନେ ବଳସେ ॥ ଘୋଷା ॥

ଅଟେ ସ୍ନେ ମଧୁପ ମଧୁବନ୍ତ ପୁଷ୍ପ ଆସି ସଙ୍ଗ ସ୍ନେହା ସଙ୍ଗେ
ଆଗନ୍ତୁ ମଦନ ମଦ୍ୟ କରି ପାନ ଜ୍ଞାନନାହିଁ ମୋର ଅଙ୍ଗେ ॥୧॥

ଅଇ ଅଇ ସ୍ନେହ ରସେ କଣ ନୋହେ ମତ୍ତ
ଅସ୍ଥିର ପ୍ରୀତି ସ୍ନେ ଭୃଙ୍ଗ ଚଞ୍ଚଳ ଜାତି ॥ ୨ ॥

ଅଧିକେ କାତର କରି ଦେଉଅଛି ଘ୍ରାତ
ଅନଙ୍ଗ ସ୍ୱଭାବ କହେ ବୃନ୍ଦାମା ସତ୍ତ ॥ ୩ ॥

## — ଫୁଲ ତୋଳା ବୋଲି —

ଅଳି ସୁମନସ ଗନ୍ଧ ଦେଖି ସୁଖେ
ଆସି ଚୁମ୍ବନ ଦସ୍ତେ କେ କାହା ମୁଖେ ॥୨୦୫॥

ଅନୋକୁହରେ କେ ଦେଖି ଲତା ଛନ୍ଦ
ଆଲିଙ୍ଗନ କେ କାହାକୁ ଭୁଜେ ବାନ୍ଧି ॥୨୦୬॥

ଅନ ଉରଜେ ଉରଜ କରେ ସମ
ଅନ୍ୟୋନ୍ୟରେ ପୀଡ଼ି ଜାତ କରେ କାମ ॥୨୦୭॥

ଆଣି ଶ୍ରୀଫଳ କେ କୁଚ ସଙ୍ଗେ ଭୁଳେ
ଅଛୁ ହାର ସେ ବପୁଲେ ସୁମଞ୍ଜୁଳେ ॥୨୦୮॥

ଆସି ଯୁଗଳ କେ କୁଞ୍ଜେ ଫୁଲ ତୋଳି
ଅତନୁମତେ ଉତ୍ସନ ସ୍ବେକ ବାଳି ॥୨୦୯॥

ଅଭ୍ୟାସ ଇଚ୍ଛି ସ୍ୱେକ ପୁରୁଷାଯିତ
ଆରୋହ କଦମ୍ବ ଗୃଳ ଗଜ ଧୃତ ॥୨୧୦॥

ଆଉଥରେ କେ ଫେଡ଼ ବାନ୍ଧିଇ ମାତ
ଅବକ୍ଷଣ ଦେଖେ ସ୍ମର ସର ଛତ ॥୨୧୧॥

ଅତୃପ୍ତି ସେବନ ଧନ ପରକାରେ
ଅଙ୍ଗ ରୋମାଞ୍ଚ ବକାର ସୀତକାରେ ॥୨୧୨॥

ଅପଣାର ମୁଖ ଦେଖେ ଆଦରଣେ
ଅଙ୍ଗ ଚନ୍ଦ୍ରର କଳଙ୍କ ହାସେ ରସେ ॥୨୧୩॥

ଆସ୍ୟ ଜମାଇ ତୋଳେ କେ ଫୁଲମାନ
ଅଛୁ ବାଳ ଟୁମ୍ବି ହୋସ୍ତେ କମ୍ପମାନ ॥୨୧୪॥

ଅଣ୍ଟିରୁ କେ ଛଡ଼ାଇ ପଳାଇଯାଇ
ଆଲୋକେ ସେ ଅଙ୍ଗୁଳି ଚବୁକେ ଦେଇ ॥୨୧୫॥

ଛଳ ଶ୍ଳେଷ—

ଅନା ପୁନାଗରେ ଶୋଭେ କନଆର
ଅଟେ ପାଣି ଗ୍ରହ ବର କନଆର ॥୨୧୬॥

ଆବେଷ୍ଟିତ ବରଜାତି କଦମ୍ବ ପୁଷ୍ପେ
ଅଗ୍ରେ କନକ ଯେ ଯଉତୁକ ବପୁଷ୍ପେ ॥୨୧୭॥

ଆଜ ବଗଢ ଦାଡ଼ିମେ ବୋଲେ ମଲ୍ଲି
ଅଛୁ ଛୁରଅନା ଶୁଣି ଆନ ଛଳ ॥୨୧୮॥

ଆରେ ଅଛୁ କ କଉତ ନାଗେଶ୍ୱର
ଆଶ୍ରେ କଲ୍ଲିଣି ବୋଲେ କେ ଗନ୍ଧୁଡ଼ର ॥୨୧୯॥

ଅନ୍ୟାନରେ କେ ବୋଇଲ ଗଣିକା ଶୋଭେ
ଅନା କେ ବୋଲଇ ମୂଳ ବସୁ ଲଭେ ॥୨୨୦॥

ଅତି ମୁକ୍ତ କାନ୍ତ୍ରେ ଶୋଭେ କରବୀର
ଅଛୁ କଞ୍ଚୁକେ ବୋଲେ କର୍ମା ଦର ॥୨୨୧॥

ଅଶୋକ ପୁଷ୍ପ ଦେଖ ବୋଲେ ନଅଳରେ
ଆନ ବୋଲେ ସନ୍ଧ୍ୟରେ ଆବଳରେ ॥୨୨୨॥

ଅନ୍ୟୋରେ ପୁଷ୍ପପରି ଶ୍ଳେଷ ଛଳ
ଆଳାପିତ ବିରଚିତ ଫୁଲମାଳ ॥୨୨୩॥

ଆସି ଶ୍ରୀରାଧିକା ଚନ୍ଦ୍ରାବଳି ପାଳି
ଆଦି ସର୍ବେ କୃଷ୍ଣ ଗଳେ ଦେଲେ ମାଳ ॥୨୨୪॥

ଆଖଣ୍ଡଳ ମାଳ କାମ ପ୍ରତିମାରେ
ଅରୁଣାଦି ରତ୍ନ ମୀନା ସୁଷମାରେ ॥୨୨୫॥

ଆରମ୍ଭିଲେ ରାସ ଗୋପୀ ମଣ୍ଡଳରେ
ଆନକାଦି ବାଦ୍ୟ ରାଗ କେଦାରରେ ॥୨୨୬॥

— ଗୀତ —

(କେଦାର ରାଗେଣ ଗୀୟତେ)

ଉଠେ କାମ ସୂତ୍ରଧାର ନାଟକ ନାଟ ବେଭାର
ରାଗ ତାଳମାନ ପ୍ରବର୍ତ୍ତାଇ ଯେ,

ଆଧାର କୁଚ ମର୍ଦ୍ଦନ କର୍କିଣି ସ୍ୱର ମାଦନ
କଣ୍ଠ ବୀଣା ରାଗ ଜନମାଇଁ ଯେ,
ଅଇ ଅଇ, ॥୧॥

ଅନିଳ ମନ୍ଦ ଗନ୍ଧରେ ବଇର ଅନୁବନ୍ଧରେ
କାମବାଣ ସଙ୍ଗେ ପୀଡ଼ା ଦେଇ ଯେ,
ଅରୁଣ ଅଧରେ ଚନ୍ଦ୍ର- ହାସର ସୁଷମା ଚନ୍ଦ୍
ଅବଲୋକ ଷୀଣକୁ ଭଜଇ ଯେ,
ଅଇ ଅଇ ॥ ୨ ॥

## — ରାସ ବୋଲି —

ଅମ୍ବୁବାହ କାନ୍ତି ବିଦ୍ୟୁ ପୀତାମ୍ବର
ଆଳାପ ସ୍ୱର ଘନ ଘୋଷ ଗମ୍ଭୀର ॥ ୨୨୭ ॥

ଆସ୍ୱାଦ ମତ୍ତ ମୟୂର ଦେଖି ନାଚ
ଅଟେ ମଧୁର ଗୀତ ସେ କେକା ରଚ ॥ ୨୨୮ ॥

ଅଲମ୍ବିତ ବେଣୀ ସ୍ୱେ ଚନ୍ଦ୍ରିକା ଚଳେ
ଅଳ୍ପ ହାସ ମାଳତୀ ଅଧର ଦଳେ ॥ ୨୨୯ ॥

ଅନ୍ତରସ୍ଥ କମ୍ପରୁ ସ୍ୱେ ହୋସ୍ତୁ ପ୍ରଶ୍ନେ
ଆଜ ରସିଲେ ହରଜ ଶମ୍ଭୁ ନୃତ୍ୟେ ॥ ୨୩୦ ॥

ଅମର ନଦୀ ଧାର ମୌକ୍ତିକ ହାର
ଆନ୍ଦୋଳନରେ କଲ୍ଲୋଳ ପରକାର ॥ ୨୩୧ ॥

ଆବୃତ ଉମ୍ବରୁ ମଧ୍ୟ କିଙ୍କିଣୀ
ଅଧୂତ ନେତ୍ର ଭୁଜଙ୍ଗ ଅଙ୍ଗ ବେଣୀ ॥ ୨୩୨ ॥

ଅଟେ ରଜସ କାନ୍ତିରେ ବିଦ୍ୟମାନ
ଆସ୍ୟ ଚନ୍ଦ୍ରମା ସତ୍ତ୍ୱରେ ଭାସମାନ ॥ ୨୩୩ ॥

ଅଳି ହଂସ କାମ ଚଟିମା ସଙ୍ଗ
ଅବଲମ୍ବ ବିନା କୃଷ୍ଣ ମନ ମଙ୍ଗେ ॥ ୨୩୪ ॥

ଅଙ୍ଗୁଳି ଟେକି ହସ୍ତକ ପରମାଣ
ଅଚଳୁ କି ସାଜେ ଚମ୍ପା ଫୁଲ ବାଣ ||୧୩୫||

ଅଙ୍ଘ୍ରି ତଳେ ମରକତ ନୂପୁରରେ
ଅଳି ମୁଖର କି ସ୍ଥଳ କମଳରେ ||୧୩୬||

ଅଙ୍ଗନା ମଣ୍ଡଳ ମଧ୍ୟେ ଭକ୍ତ ହରି
ଅଳି ଭ୍ରମଣ ପରି ନର୍ତ୍ତନ କରି ||୧୩୭||

ଅଟେ କାମ କୁମ୍ଭକାର ଚକ୍ରବତ
ଆପେ କୁଚ କୁମ୍ଭ କରେ ନିରମିତ ||୧୩୮||

ଆବେଷ୍ଟିତ ଚମ୍ପା ଶାଖୀ କୁସୁମିତ
ଅଛି ଏକ ତମାଳ କମ୍ପାଇ ବାତ ||୧୩୯||

ଅଳିଭୃଙ୍ଗ ପିକ ଦେଖି ନୃତ୍ୟ ଗାନ
ଅବସ୍ଥିତ କେ ସ୍ତବକରେ କେ ମଣ୍ଡନ ||୧୪୦||

ଅଷ୍ଟ ସାତ୍ତ୍ୱିକେ ଗୋପୀ ନ ପାରେ ଚଳି
ଆପେ ଶ୍ରୀରାଧିକା ଭୃଙ୍ଗବଦ୍ୟା ପାଳି ||୧୪୧||

ଆମ୍ରେଶ୍ୱର ସ୍ୱରମାଗେ ରଚି ରାଗ
ଅନ୍ତେ କୃଷ୍ଣ ରାଗ ବ୍ୟକ୍ତ ଓଷ୍ଠେ ରାଗ ||୧୪୨||

ଅଧୋକ୍ଷଜ ଯୋଗମାୟା ଉପାଶ୍ରିତ
ଅନନ୍ତ ଶକ୍ତିରେ ବହୁ ରୂପ ଜାତ ||୧୪୩||

ଅର୍କ ଏକ ଯଥା ବହୁ ଘଟେ ଦୃଶ୍ୟ
ଅଙ୍ଗନା କେ ଏକ କୃଷ୍ଣ ପରକାଶ ||୧୪୪||

ଅଚ୍ୟୁତ ଦୁଇକେ ଗୋପୀ ଦୁଇ ଦୁଇ
ଅଟବୀ ପୂର୍ଣ୍ଣ ରାସରେ ରସମୟୀ ||୧୪୫||

ଆପଣ ପାଖକେ କେ ଗୋପୀ ଆରପାଖେ
ଅନ୍ୟେ ସର୍ବେ ପାଶ୍ୱେ ହରି ମତେ ଦେଖେ ||୧୪୬||

ଅବସ୍ଥିତ ଯେ ରାଧିକା ରଣ ବାମେ
ଅପସବ୍ୟେ ଚନ୍ଦ୍ରାବଳୀ ଗଣ ରମ୍ୟେ ||୧୪୭||

ଆପଗା କି ରାସସ୍ଥଳ ହେମ କଞ୍ଜେ
ଅଙ୍କ ଯୁଗ୍ମରେ ସ୍ଥେ ଯୁଗ ଯୁଗ ଖଞ୍ଜେ ।।୨୪୮।।

ଅଟେ ବିକଚ କେତକୀ ବନ୍ଧୁଦଳ
ଆସି ଭୃଙ୍ଗ ଯୁଗ୍ମକୁ ଯୁଗ ଯୁଗଳ ।।୨୪୯।।

ଆଦ୍ୟେ ଯମୁନା ମାରାଗ ଆବରଣ
ଅଟେ ଦ୍ୱିତୀୟ ପୁଳିନ ମୋତିଗଣ ।।୨୫୦।।

ଅଟେ ବା ପ୍ରବାଳରେ ତୃତୀୟ ଯୋଗ
ଅବସ୍ଥିତ ବେଦେ ରସ ପକ୍ଷୀମୃଗ ।।୨୫୧।।

ଅଛି ପଞ୍ଚମେ ଅମର ପରିଷଦ
ଆବେଷ୍ଟିତ ଷଷ୍ଠେ ବୃନ୍ଦ ପାରିଷଦ ।।୨୫୨।।

ଆବରଣ ସପ୍ତମେ ଗୋପୀ ଗୋପାଳ
ଅଷ୍ଟମରେ ରାଧା ମାଧବ ଯୁଗଳ ।।୨୫୩।।

ଅଟେ ପତିବ୍ରତା ତଦଭାବମୟୀ
ଅବଲୋକ ଯୁଗ୍ମ ରାସ ସୁଖ ପାଇ ।।୨୫୪।।

ଅଙ୍ଗ ସ୍ୱେଦ ନାଭି ରନ୍ଧ୍ର ପଙ୍କେ ପଡ଼ି
ଦୃଷ୍ଟି କୁରଙ୍ଗୀ ଆସି ନ ପାରେ ଜଡ଼ି ।।୨୫୫।।

ଆସ୍ୟ ଚନ୍ଦ୍ରମା ସୁଷମା ସୁଧା ପିଇ
ଅତି ଲୋଲୁପ କୃଷ୍ଣ ଚକୋର ହୋଇ ।।୨୫୬।।*

ଆନନରେ ଶ୍ରମ ସ୍ୱେଦ ବିନ୍ଦୁ ବୃନ୍ଦ
ଅମ୍ବୁରୁହରୁ ଗଳିତ ମକରନ୍ଦ ।।୨୫୭।

ଅଞ୍ଚଳରେ ବାଆ ବିଞ୍ଚି ପରସ୍ପରେ
ଆରମ୍ଭିଲେ କେଳି ଛନ୍ଦ ହରଷରେ ।।୨୫୮।।

---

* ଜ୍ୟୋତ୍ସ୍ନାପାନ ଚକୋରାଣାମିତି କବିକଲ୍ପଲତାୟାମ୍ ।। (ପୋଥିପାଠ)

## — ଗୀତ —

(କେଦାର ରାଗେଣ ଗୀୟତେ)

ଅମ୍ଭୋଜନୀ ନବ୍ୟା ଦ୍ୱେଷ୍ଟି ଦେଖ ଶଠଭୃଙ୍ଗ
ଅଧିକ ମୁଦେ କୁମୁଦେ ରତେ ରତରଙ୍ଗ ।
ଅନ୍ତେ ନ ରଖଇ ଲେଶେ ସେ ମାଲତୀ ପ୍ରୀତି
ଆନନ୍ଦରେ ବଞ୍ଚଇ ଗଣିକା ଭୋଗେ ମାତି । ଘୋଷା ।

ଆଲୋଚନା ଓଇ ଗୁନ ପୁରୁଷର କର
ଅନବରତରେ ସଖୀ ମନଦୁଃଖ ମୋର ।। ୧ ।।

## — ସୁରତ ବୋଲି —

ଅଙ୍ଗ ସଙ୍ଗମ ଅନ୍ୟୋନ୍ୟ ସମ୍ମୁଖରେ
ଆଲିଙ୍ଗନ ସ୍ପୃଷ୍ଟ କହ ରତି ଖରେ[1] ।।୨୫୯।।

ଅଙ୍ଗୁ କେ ପୀଡ଼ିତ ଆଲିଙ୍ଗନ ମତେ
ଅଙ୍ଗ ନର୍ତ୍ତର ପୀଡ଼ନ ପ୍ରକାଶିତେ[2] ।।୨୬୦।।

ଅଣି ବେନ ପାଣି କଣ୍ଠ ଆଲିଙ୍ଗିତ
ଅଗ୍ର ସ୍ତନେ ତାଡ଼ନ[3] ବନ୍ଧକ ଖ୍ୟାତ ।।୨୬୧।।

---

ଶ୍ଲୋକଃ—

୧ । ସମ୍ମୁଖେ କାମିକାମିନ୍ୟୋରନ୍ୟୋନ୍ୟମଙ୍ଗସଙ୍ଗମଃ
ସ୍ପୃଷ୍ଟକାଲିଙ୍ଗନଂ ଖ୍ୟାତଂ ରତଂ ସୁଖବର୍ଦ୍ଧନମ୍ ।।
ଇତି ସ୍ମରଦୀପିକାୟାମ୍ ।। ° ।। (ପୋଥିପାଠ)

୨ । ପ୍ରକାଶିତାସ୍ତୁ କାନ୍ତାସ୍ତୁ ନିର୍ଭରଂ ତୃଙ୍ଗପୀଡ଼ନଂ
ପୀଡ଼ିତାଲିଙ୍ଗନଂ ପ୍ରୋକ୍ତଂ ସ୍ମରଶାସ୍ତ୍ରବିଚକ୍ଷଣୈ ।। (ପୋଥିପାଠ)

୩ । (କ) ପୀଡ଼ନ

୪ । ଭୁଜାଭ୍ୟାଂ କଣ୍ଠମାଶ୍ଲିଷ୍ୟ ବଲତୋ ରସିକୋଥ୍ୟତ
ଯଦ୍ୱାଡ଼ନସ୍ତନାଗ୍ରେଣ ସଂଶ୍ଲେଷୋ ବନ୍ଧକୋଚ୍ୟତେ ।
ଇତି ସ୍ମରଦୀପିକାୟାମ୍ ।। (ପୋଥିପାଠ)

ଅଙ୍ଗେ ଅଙ୍ଗରାସ ରସେ ଘରଷଣ
ଆଲିଙ୍ଗନ ଦୃଷ୍ଟ ପ୍ରେମ ବିଚକ୍ଷଣ ।।୧୭୨।।*

ଅଷ୍ଟ ପୁନ କୂର୍ମୋପଗୂହନାଦରେ
ଅର୍କ ସଂଖ୍ୟା ପ୍ରେମ ଭକ୍ତ ସଂସଦରେ ।।୧୭୩।।

ଅନ୍ଧକାର କୁଞ୍ଜେ କେ ନଂବୋଡା ରତି
ଅଦ୍ଭୁଶତ୍ତ' ବରାଙ୍ଗ ହରଷ ମତି ।।୧୭୪।।

ଅଚ୍ଛିଦ୍ର କୁଞ୍ଜ ଛୁଇ ଚନ୍ଦ୍ରକର
ଅଙ୍ଗ ହେମକୁ ଶୋଭା ଛୁଟେ ଅମ୍ବର ।।୧୭୫।।

ଅତନୁ ଗେହ ହେମ ପଦକେ ପଡ଼ି
ଅଚ୍ଛିନ୍ନଁ ସମା ରଜତ ରତ୍ନେ ଜଡ଼ି ।।୧୭୬।।

ଅତି ଚନ୍ଦ୍ରକରେ ରତି ବିରଚିତ
ଅଷ୍ଟି ପଦ୍ମକରେ ଲାଜେ ସଂକୋଚିତ ।।୧୭୭।।
ଆଶିତ୍ଥ କେ ନେନେ ଚଞ୍ଚଳ ଭୃଙ୍ଗୁରା
ଆସି ସାଧନ ମଦନ କଳ୍ପ ପର ।।୧୭୮।।

ଅଚ୍ଛି ଉଦ୍ୟାନରେ କୁଟ ହେମ କୁମ୍ଭ
ଅମୃତ ପୂର୍ଣ୍ଣ କି ଚନ୍ଦ୍ରକରେ ଶୋଭ ।।୧୭୯।।
ଅମର ଗିରି ହେଲା କି କଇଳାସ
ଆଜ ଶମ୍ଭୁ କ୍ଷୀରୋଦ୍ଧି ସ୍ନାନ ଉଲ୍ଲାସ ।।୧୮୦।।
ଅରଣ୍ୟ ସୁରତ କୁଞ୍ଜ ସ୍ନେହ ପର
ଅନେକ ପକ୍ଷୀ କୂଜିତ କଣ୍ଠେ ପୂର ।।୧୮୧।।

ଅତି କମ୍ପାଇ ରମ୍ଭା ଜଘନ ଦୃଢ଼
ଆମ୍ରେଶ୍ୱର କଟୀ ସିଂହ କରେ ବନ୍ଦୀ ।।୧୮୨।।

---

* ଶ୍ଲୋକଃ—

ଅନ୍ଧକାରେଚ ଯାହାଙ୍ଗେ ଚିରକାଲାଙ୍ଗଘର୍ଷଣମ୍
ତଦ୍ଦୃଷ୍ଟ୍ୟାଲିଙ୍ଗନଂ ପ୍ରୋକ୍ତଂ ପ୍ରେମବୃଦ୍ଧିକରଂ ପରମ୍ ।।
ଇତି ସ୍ମରଦୀପିକାୟାମ୍ ।। ୦ ।। (ପୋଥିପାଠ)

ଆସ୍ୟ ଦ୍ୱିଜଗଣେ ହୋଏ୍ଟ ଚୁମ୍ବଦାନ
ଅଟେ ଦକ୍ଷିଣା ଉଲଟ ରତି ମାନ ||୨୭୩||

ଅନ୍ତ ସେ ସ୍ୱସ ଏ୍ଟ ରତି ସ୍ୱସ ଭ୍ରଷ୍ଟ
ଆଲମ୍ବିତ ବେଣୀ ନାସାମଣି ନାଷ୍ଟ ||୨୭୪||

ଅତ୍ତ ରଣିତ କଙ୍କଣୀ ଉହୁଁ ଗୀତ
ଅଟେ ପ୍ରଗଲ୍‌ଭା କେ କରେ ନଖ କ୍ଷତ ||୨୭୫||

ଅନୁମାନ କର୍ଣ୍ଣ ଫୁଙ୍କିବା ଏ୍ଟ ହୋଏ୍ଟ
ଆଜ୍ଞା କାମରତି ବୀଜମନ୍ତ୍ର ଦଏ୍ଟ ||୨୭୬||

ଅଙ୍ଗ ସନ୍ଦ୍ବଳିତ ମଦନ ସଦନକୁ
ଅଣ୍ଟି ଦେଲା ମାପ ଫୁଲ ଶୋଭନକୁ ||୨୭୭||

ଶ୍ଳୋକଃ—
ଶଶପ୍ଳୁତଂ ମଣ୍ଡଳକଂ ମୟୂରପଦାର୍ଦ୍ଧଚନ୍ଦ୍ରୋତ୍ପଳକଂଶ୍ଚ ରେଖା;
ଅଷ୍ଟୌ ତଥା ବ୍ୟାଘ୍ରପଦଂ ବଦନ୍ତି ନଖବ୍ରଣା ଉତ୍ପଳପତ୍ରକଞ୍ଚ ।

ଶଶପ୍ଳୁତ ଲକ୍ଷଣ—

ଅଙ୍କେ ଆରୋହାଇ ପ୍ରେମ ପ୍ରକଳିତ
ଅସ୍ପୃଷ୍ଟ କର ଦର ବଦଳିତ ||୨୭୮||

ଅତ୍ତ ମୂନ ଚଞ୍ଚ ନଖେ ଶଶପ୍ଳୁତ
ଆଣ୍ଠୁ ସ୍ତନେ ଜଘନେ ଚରମେ କ୍ଷତ ||୨୭୯||

ଅଙ୍ଗ୍ରି ପରେ କକ୍ଷ ସ୍ଫିଚ ପାର୍ଶ୍ୱରେ
ଅନମିଷ-ନେତ୍ରୀ ମଜ୍ଜେ ହରଷରେ ||୨୮୦||

ମଣ୍ଡଳକ ଲକ୍ଷଣ—

ଆଦ୍ୟ ରତେ ମଦନରେ ହୋଇ ମତ୍ତ
ଅଙ୍ଗେ ତିନ ନଖେ ମଣ୍ଡଳକ କ୍ଷତ ||୨୮୧||

ଅଚଳ କୁଚେ ନତମ୍ବେ ଶଙ୍ଖ କଣ୍ଠୁ
ଅବସ୍ଥିତ ତଳ ନାଭି ଉପକଣ୍ଠେ ||୨୮୨||

ମୟୂର ପଦ ଲକ୍ଷଣ—

ଅପଦ୍ମୁତ କଲ୍ପବେଳେ ସୁବସନ
ଅଙ୍ଗେ ମୟୂର ପଦରେ କ୍ଷତ ଦାନ ॥୨୮୩॥

ଅଙ୍ଗୁଳି କନଷ୍ଟ କ୍ଷତ ଭଲେ ସ୍ତନେ
ଆନ ଚତୁର ଅଙ୍ଗୁଳି ସଂସ୍ଥାନେ ॥୨୮୪॥

ଅର୍ଦ୍ଧଚନ୍ଦ୍ର ଲକ୍ଷଣ—

ଅଛୁ ଉସ୍ତନେ କେ କୁଚ ରମଣୀୟ
ଅଷ୍ଟାପଦ ମସ୍ତ ପୂଟି ଶମ୍ଭୁ ଦ୍ୱୟ ॥୨୮୫॥

ଅର୍ଦ୍ଧଚନ୍ଦ୍ର ଦାନ କରି ନଖ ଛନ୍ଦେ
ଅଦ୍ଭୁତ ସିଦ୍ଧ କମ୍ବୁ କଣ୍ଠେ କନ୍ଦେ ॥୨୮୬॥

ଭ୍ରମରକ ଲକ୍ଷଣ—

ଅବଲୋକ କୁଚ କୁମ୍ଭ ସୁପ୍ରକଟକ
ଅଙ୍କୁଶ ଘାତ ସେ ବ୍ୟାଜ ଭ୍ରମରକ ॥୨୮୭॥

ଅଙ୍ଗୁଳି ସମାନ ପଞ୍ଚ ନଖ ମୁନେ
ଆଣି କ୍ଷତ ଦନ୍ତ ଗଣ୍ଡ ଓଷ୍ଠ ସ୍ତନେ ॥୨୮୮॥

ରେଖା ଲକ୍ଷଣ—

ଅଛୁ ରେଖା ପୃଷ୍ଠେ କାମ ହେମ ପ୍ରଭା
ଆଲମ୍ବିତ ଶୋଣ ପୁଷ୍ପମାଳ ଶୋଭା ॥୨୮୯॥

ଅବଲୋକେ ପ୍ରବାଳ ଲଗୁଡ଼ ନାସା
ଅଛୁ କୁଚ ଭଲ ଡକାରେ ନରସ ॥୨୯୦॥

ବ୍ୟାଘ୍ରପଦ ଲକ୍ଷଣ—

ଅଦ୍ଭି କୁଚ କାମ କେଳି ବନ ଭାତ
ଅତ ବ୍ୟକତରେ ବ୍ୟାଘ୍ରପଦ ସ୍ଥିତ ॥୨୯୧॥

ଅଧିକରେ ବନ୍ଧ ହୋଡ଼ ଦନ୍ତ ଭୁଲ
ଅଛୁ ଉରୁ କୁଚ ପୃଷ୍ଠ ଶ୍ରୋଣିତଳ ॥୨୯୨॥

